VOL. XLIX No. 3 UTKAL PRASANGA Regd. No. O-05/92
Licence No. C.R.N.P. 5—Licensed to post without Pre-Payment



କଟକ ଜିଲ୍ଲା ହିନ୍ଦ୍ କୁଷ୍ଠ ନିବାରଣ ସଙ୍ଘ ଶାଖାର ସଭାପତି କଟକ ଜିଲ୍ଲାପାଳ ରଘୁନାଥ ମିଶ୍ର କୁଷ୍ଠ ରୋଗରୁ ମୁକ୍ତିଲାଭ କରିଥିବା ରୋଗୀମାନଙ୍କ କଲ୍ୟାଣମୂଳକ କାର୍ଯ୍ୟକ୍ରମ ପାଇଁ ରାଜଭବନଠାରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କ ହସ୍ତରେ ୨,୪୧,୦୭୫ ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି ।



ଭୁବନେଶ୍ୱର ବ୍ରହ୍ମେଶ୍ୱର ପାଟଣାଠାରେ ନଗରପାଳିକାର ଏକ ଚିକିତ୍ସାଳୟକୁ ପୂର୍ତ୍ତ, ଗୃହ ନିର୍ମାଣ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଉଦ୍‌ଘାଟନ କରୁଛନ୍ତି । ଭୁବନେଶ୍ୱର ନଗରପାଳ ଶ୍ରୀମତୀ କିରଣବାଳା ମଙ୍ଗରାଜ ଉପସ୍ଥିତ ଅଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-753010

# ଉତ୍କଳ ପ୍ରସଙ୍ଗ

୪୯ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ ୧୯୧୪ ଶକାବ୍ଦ ନଭେମ୍ବର ୧୯୯୨

## ସମ୍ପାଦକ ମଣ୍ଡଳୀ





**ପ୍ରଚ୍ଛଦପଟ୍ଟ**
ଯୋଜନା ଓ କଳା ପ୍ରସ୍ତୁତି ବିଭାଗ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦

**ପ୍ରକାଶନ**
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

**ମୁଦ୍ରଣ**
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦
(ଫୋଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଯୋଜନା ଓ ଅନ୍ୟାନ୍ୟ ସରକାରୀ ନୀତିର ସମ୍ପର୍କିତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସମ୍ପର୍କିତ ଆଲୋଚନାରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟରେ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୁଖ୍ୟ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ସେଥିରୁ ପ୍ରକାଶ ପାଉଥିଲେ ମଧ୍ୟ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ବୋଇତ ବନ୍ଦାଣ ଓ ଓଡ଼ିଆ ଜାତିର ଗର୍ବିତ ପରମ୍ପରା



● ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ

ଓଡ଼ିଶାର ନୌବାଣିଜ୍ୟ କଥା କହିଲେ ଆଜି ଯିମିତି ସ୍ୱପ୍ନଭଳି ଲାଗୁଛି । "ସାଧବ ପୁଅ " ବୁଢ଼ିମା କାହାଣିର ସାଧବ ପୁଅ ହୋଇ ରହିଯାଇଛି । ରାଜା, ମନ୍ତ୍ରୀ, କଟୁଆଳ ଓ ସାଧବ, ଆଉ ସହଚର ତାଙ୍କର ପକ୍ଷିରାଜ ଘୋଡ଼ା । ସମସ୍ତେ ସେଇ ସାଧବ ପୁଅକୁ ଜାଣନ୍ତି । କିନ୍ତୁ ଓଡ଼ିଶା ମାଟିର ସାଧବ ପୁଅ, ଯିଏ ନୀଳ ସମୁଦ୍ରର ବକ୍ଷ ଭେଦକରି ବାଣିଜ୍ୟ ପୋତ ନେଇ ବିଦେଶକୁ ଯାଉଥିଲା, ସେଠାରେ ବେପାର କରି ଦେଶକୁ ଧନରତ୍ନ ବୋହି ଆଣି ପାରୁଥିଲା, ସେ ଗଲା କୁଆଡ଼େ ? ଶିଳ୍ପ, କଳା ସଂସ୍କୃତିର ମହାନ ଭୂଖଣ୍ଡ, ଓଡ଼ିଶାର ସଭ୍ୟତାକୁ ବିଦେଶରେ ଯିଏ ସଂପ୍ରସାରିତ କରୁଥିଲା, ସେ ସାଧବ ପୁଅ କାହିଁ ? କ'ଣ ରାଜା ପୁଅ ସାଥିରେ ପକ୍ଷୀରାଜ ଘୋଡ଼ା ଛୁଟାଇ ଓଡ଼ିଶା ଛାଡ଼ି ଚାଲିଗଲା ନା' ଓଡ଼ିଶା ମାଟିରେ ସବୁଦିନ ପାଇଁ ତାର ମୃତ୍ୟୁ ହୋଇଗଲା ! ଭାଗ୍ୟର କି ବିଡ଼ମ୍ବନା ! ଆଜି ଓଡ଼ିଶାର ଲୋକଙ୍କୁ ଏକଥା କହିଲେ କାହାର ବିଶ୍ୱାସ ଆସେନା । ଦାରିଦ୍ର୍ୟ ଓ କ୍ଷୁଧାର ତାଡ଼ନାରେ ଆର୍ତ୍ତ ଚିତ୍କାର କରୁଥିବା ଗୋଟିଏ ଜାତିକୁ ଏ'କଥା ଶୁଣାଇଲେ ସେ ଏହା ଏକ କଳ୍ପନା–ବିଳାସ ବୋଲି ଭାବିବା ସ୍ୱାଭାବିକ୍ । କୁଆଡ଼େ ଗଲା ସେ ବିଭବ, ଧନ, ରତ୍ନ, ଅମାପ ସମ୍ପଦ ! କାର୍ତ୍ତିକ ପୂର୍ଣ୍ଣିମା ଦିନ ସକାଳେ କଦଳୀ–ପଟୁକା ନାଆ ଭସାଇ ଆମେ କେବଳ ସେ ସ୍ମୃତିକୁ ବଞ୍ଚାଇ ରଖିଛୁ ।

ଚିଲିକା ବକ୍ଷରେ ଆଜି ମତ୍ସ୍ୟଜୀବିଙ୍କର ନୌକାମାନ ଦେଖିବାକୁ ମିଳେ । ଏବେ କେତେକ ମଟର–ଲଞ୍ଚ୍ ଚିଲିକା ଭିତରେ ଯାତାୟତ କରୁଛି, ମାଛ ମାରିବା ପାଇଁ କିମ୍ବା ଯାତ୍ରୀମାନଙ୍କୁ ନିବା–ଆଣିବା କରିବା ପାଇଁ । କିନ୍ତୁ ବାଣିଜ୍ୟ **ଲକ୍ଷ୍ମୀ** ଓଡ଼ିଆ ଜାତିକୁ ସତେ ଯେମିତି ସବୁଦିନ ପାଇଁ ଛାଡ଼ି ଚାଲିଯାଇଛନ୍ତି । ଏଇ ଅବକାଶରେ ଓଡ଼ିଆ ଜାତିର ଅତୀତ ଇତିହାସର ପୃଷ୍ଠା ଓଲଟାଇବାକୁ ପଡୁଛି । ଏହା ଆଉ ଆଈ ମା କାହାଣୀ ନୁହେଁ, ନିଛକ ସତ୍ୟ, ଓଡ଼ିଆ ଜାତିର ମହାନ ଇତିହାସ ।

ଆମେ କ'ଣ କେବଳ ଗୋଟିଏ ବଣିକ ସୌଦାଗରର ଜାତି ଥିଲୁ ନା' ଆମର ଆଉ କିଛି ମହତ୍ୱ ଥିଲା । ଏଇ ଓଡ଼ିଆ ପୁଅ ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିର ତିଆରି କରିଛି । ମନ୍ଦିର ମାଳିନୀ ଓଡ଼ିଶାର ଶିଳ୍ପ କଳା ଦେଖି ପୃଥିବୀର ଲୋକେ ଚକିତ ହୋଇଥିଲେ । ଖଣ୍ଡଗିରି, ଧୌଳିଗିରି, ରତ୍ନଗିରି ଓ ଲଳିତଗିରି ବକ୍ଷରେ ଧାରଣ କରୁଥିବା ଉତ୍କଳୀୟ ଶିଳ୍ପିର ଅପୂର୍ବ ଶିଳ୍ପକଳା ଚାତୁରୀ ଏ ଜାତିର ପୁରାତନ ସଭ୍ୟତାକୁ ବିଶ୍ୱ ବିଦିତ କରିଛି । ପୃଥିବୀ ଆସୁଛି ଆମ ଦୁଆରକୁ, ଆବିଷ୍କାର କରିବା ପାଇଁ, ଆମେ କ'ଣ ? କସ୍ତୁରୀ ମୃଗଭଳି ଆମେ କିନ୍ତୁ ଜାଣିପାରୁନାହୁଁ ଆମ ନାଭିମୂଳରେ କେତେ ମୂଲ୍ୟବାନ ପଦାର୍ଥ ରହିଛି ।

କାଳର କରାଳ ଗତି ଭିତରେ ଆମର ସର୍ବସ୍ୱ ଯାଇଛି । ଆମେ କେବଳ ସମ୍ପଳହୀନ ହୋଇନାହୁଁ, ମନର ସାହାସ, ସଂକଳ୍ପ ଓ ଆତ୍ମବିଶ୍ୱାସ ଯାହାଥିଲା, ଓଡ଼ିଆ ଜାତିର ଶ୍ରେଷ୍ଠ ସମ୍ପଦ ତାକୁ ଆମେ ହରାଇ ବସିଛୁ । ଓଡ଼ିଶାର ଏ ଦୁରାବସ୍ଥା ପାଇଁ କିଏ ଦାୟୀ, ସେ ସମ୍ପର୍କରେ ଆଲୋଚନା ନକଲେ ଏ ନିବନ୍ଧ ଅପୂର୍ଣ୍ଣ ରହିଯିବ ।

ଓଡ଼ିଆ ଥିଲା ଏଇ ଦୁର୍ଦ୍ଧାନ୍ତ ବୀର ଜାତି । ଶହ ଶହ ବର୍ଷ ଧରି ଏ ଜାତିର ରାଜଛତ୍ର ଥିଲା ଉନ୍ନତ, ଅଚଞ୍ଚଳ । ଯୁଦ୍ଧ ଅଭିଯାନ ବେଳେ ପାଇକ ପୁଅର ରଣ ହୁଙ୍କାରରେ ମେଦିନୀ କମ୍ପି ଉଠୁଥିଲା, ଶତ୍ରୁ ଛାତିରେ ଛାନିଆ ପଶୁଥିଲା କଳିଙ୍ଗ ସାମ୍ରାଜ୍ୟ କେତେ ସମୃଦ୍ଧ, କେତେ ଶକ୍ତିଶାଳୀ ତା' କେବଳ ଇତିହାସ ପଢ଼ିଲେ ଜଣା ପଡ଼ିବ । ଦୂର ଅତୀତକୁ ଯିବାକୁ ପଡ଼ିବ ନାହିଁ । ଅଭିଭୂକ୍ତ କାଳାନ୍ତକ ମହାନ ସମ୍ରାଟ ମହାମେଘ ବାହାନ ଖାରବେଳ କିମ୍ବା ଦିଗ୍ବିଜୟୀ କପିଳେନ୍ଦ୍ର ଯାହାଙ୍କ ନାଁ ଶୁଣିଲେ ସମଗ୍ର ଭାରତବର୍ଷ ଥରହରି କମ୍ପି ଉଠୁଥିଲା, ତାଙ୍କ କଥା ନକହି ମୁଁ ନିକଟ ଅତୀତର ଏକ ଗଙ୍ଗାବୋଳା ଇତିହାସ କହିବି ।

୧୮୧୭ ମସିହା ପାଇକ ବିଦ୍ରୋହର ନିଆଁ ଖୋର୍ଦ୍ଧା, ବାଣପୁର ଓ ଘୁମୁସରରେ ଜଳିଉଠି ସମଗ୍ର ଓଡ଼ିଶାକୁ ବ୍ୟାପିଗଲା । ସମଗ୍ର ଭାରତବର୍ଷ ସେତେବେଳକୁ ଇଂରେଜ ରାଜଶକ୍ତି ଦ୍ୱାରା ପରାଜିତ ହୋଇ ତାଙ୍କର ଶାସନାଧୀନ ହୋଇଥାଏ । ଖୋରଧା, ବାଣପୁରର ବଣ–ପାହାଡ଼ କନ୍ଦରା ପାଇକ ତଲୁଆରର ଝନ୍ ଝନ୍କାର ଶବ୍ଦରେ ପ୍ରକମ୍ପିତ ହୋଇ ଉଠିଲା । ଇଂରେଜର ଦାସତ୍ୱ ସ୍ୱୀକାର କରି ପ୍ରକମ୍ପିତ ହୋଇ ଉଠିଲା । ଇଂରେଜର ଦାସତ୍ୱ ସ୍ୱୀକାର କରି ଜନନୀ ଜନ୍ମ ମାଟିର ହାତରେ ବେଡ଼ି ପିନ୍ଧାଇବା ଅପେକ୍ଷା ମରଣ ଯେ ଶ୍ରେୟସ୍କର ଏକଥା ଓଡ଼ିଆ ମାଟିର ଆବାଳ ବୃଦ୍ଧ ବନିତା ବୁକ ନିର୍ଘୋଷ କଣ୍ଠରେ ଘୋଷଣା କଲେ । ପ୍ରତି ଘରୁ ଢାଲ ତଲୁଆର ଧରି ବାହାରି ପଡ଼ିଲେ ପାଇକ ବୀରମାନେ ବେପାରୀ ଫିରିଙ୍ଗୀ ଜାତି ସହିତ ଲଢ଼େଇ କରିବା ପାଇଁ । ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ, ଦଳପତିଙ୍କର ସେନାପତି,

ାଇକମାନଙ୍କ ପାଖରେ ସେ ଥିଲେ ବକ୍ସି ମହାରାଜା, ତାଙ୍କର ାକରାରେ ପାଇକ ଜୁକ ଗର୍ଜି ଉଠିଲେ । ଫିରିଙ୍ଗି ପଲଟଣଙ୍କୁ ିପାତ କରି, ମାତୃଭୂମିକୁ ମୁକ୍ତ କରିବା ପାଇଁ ସେ ନେଲା ଆଗ୍ନେୟ ପଥ । ମହାନ ବିପ୍ଳବୀ ନେତା ଗଜପତିଙ୍କର କୁଳ ପୁରୋହିତ, ୀତ୍ତୀ ଜୟୀ ରାଜଗୁରୁ ବ୍ୟାପକ ପାଇଁ ବକ୍ସିଙ୍କ ସହ ଯୋଜନା ପ୍ରସ୍ତୁତ ଲେ । କୃତିବାସ ପାଟଶାଣୀ, ଦୀନବନ୍ଧୁ ସାମନ୍ତରାୟ ମହାପାତ୍ର, ାଶରଥି ରାଉତରାୟ, ପିଣ୍ଡିକ ବାହୁବଳେନ୍ଦ୍ର, ଚନ୍ଦ୍ର ବିଶୋଇ ପ୍ରମୁଖ ୁଦକ୍ଷ ସେନାପତିଗଣ ପାଇକମାନଙ୍କୁ ସଙ୍ଗଠିତ କରି ଇଂରେଜ ାହିନୀ ସହିତ ବିଭିନ୍ନ ରଣାଙ୍ଗନରେ ଯୁଦ୍ଧରେ ବ୍ୟାପୃତ ହେଲେ ଓ ହୁ ସ୍ଥାନରେ ବିଜୟ ବୈଜୟନ୍ତୀ ଉଡାଇଲେ । ଇଂରେଜ ାଜଶକ୍ତି ପ୍ରମାଦ ଗଣିଲା । ଐତିହାସିକ ପାଇକ ବିଦ୍ରୋହ ଏକ ଣ ସଂଗ୍ରାମରେ ପରିଣତ ହେଲା । ଲଢେଇ ଗ୍ଲିଲା ଦୀର୍ଘ ୧୭ ର୍ଷ କାଳ । ଶେଷରେ ନିଜ ମାଟିର ବିଶ୍ୱାସଘାତକମାନେ ଇଂରେଜ ଶାସନ କର୍ତ୍ତାଙ୍କୁ ବହୁଗୁପ୍ତ ତଥ୍ୟ ଯୋଗାଇ ଦେବା ଫଳରେ ପାଇକ ମାନଙ୍କର ପରାଜୟ ହେଲା । ଜଣ ଜଣ ୁଖ୍ୟ ସେନାପତିମାନେ ଫାସି, କଳାପାଣି ଭଳି ଦଣ୍ଡରେ ଦଣ୍ଡିତ ହେଲେ । ପାଇକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଗ୍ଲିଲା । ସେମାନଙ୍କର ଯାଗିରି ଜମି ଓ ଖଣ୍ଡା-ତଲ୍‌ୱାର ସବୁ ଡ଼ାଇ ନିଆଗଲା । ଇଂରେଜ ସରକାର ଭାବିଲେ ଯେ, ଏଦୁର୍ଦ୍ଧାନ୍ତ ମର କୁଶଳୀ ଜାତିକୁ ଅର୍ଥନୈତିକ କ୍ଷେତ୍ରରେ ପୁରାପୁରି ପଙ୍ଗୁ କରି ଦେଲେ, ଏମାନେ ପୁଣି ବିଦ୍ରୋହ କରିବେ । ଗ୍ଲିଲା ଅକଥନୀୟ ଦମନ ଲୀଳା । ଭାରତ ବର୍ଷର ସ୍ୱାଧୀନତାର ଶେଷ ଦୀପ-ଶିଖା ବୀର ଓଡ଼ିଶାର ଦର୍ପିତ ମାଟି ଉପରେ ସବୁଦିନ ପାଇଁ ଲିଭିଗଲା ।

ଇଂରେଜ ସରକାରଙ୍କ ଚକ୍ରାନ୍ତ ଓ କ୍ରମାଗତ ଅତ୍ୟାଚାର ଫଳରେ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ଅଣ୍ଟା ଭାଙ୍ଗିଗଲା । ସେ ହେଲା ନିଃସ୍ୱ, ଦରିଦ୍ର । ମନର ବଳ, ହୃଦୟର ସାହାସ ଓ କଠୋର ସଙ୍କଳ୍ପ ସମେ ତା'ଠାରୁ ଦୁରେଇଗଲା । ଫଳରେ ତା'ର ସାମରିକ ଶକ୍ତି କଳା-ବାଣିଜ୍ୟ ସବୁ ନିଷ୍ପ୍ରଭ ହୋଇ ପଡ଼ିଲା । ଓଡ଼ିଆ ଜାତିର ଗରିମାମୟ ଇତିହାସର ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ପାଇକମାନଙ୍କର ରଣ ଦୁନ୍ଦୁଭି ସ୍ତିମିତ ହୋଇଗଲା । ଚିଲିକା ତଟ ଓ ବକ୍ଷରେ ଶ୍ମଶାନର ଶାନ୍ତି ବିରାଜିଲା । ଓଡ଼ିଆ ବୋଇତ, ସାଧବପୁଅ, ସାଧବ ବୋହୂର ବୋଇତ ବନ୍ଦାଣ, ସବୁ ସ୍ୱପ୍ନ ହୋଇଗଲା । ସର୍ବଗ୍ରାସୀ କାଳର କରାଳ ଗର୍ଭରେ ଏ ଦିଗ୍‌ବିଜୟୀ ଜାତିର ଐତିହ୍ୟ ପରମ୍ପରା ସ୍ୱାଭିମାନ ସାମରିକ ଶକ୍ତି, ରଣ କୌଶଳ ଶିଳ୍ପ, କଳା, ବାଣିଜ୍ୟ ସବୁ ଲୀନ ହୋଇଗଲା । ଅତୀତର ସେ ଗୌରବ ଓ ପରମ୍ପରାକୁ ସ୍ମରଣ କରି ଓଡ଼ିଶାର ଯୁବକ ସଂଗ୍ରାମ କରିବ ଓ ଓଡ଼ିଶାକୁ ଏକ ସମୃଦ୍ଧ ଓଡ଼ିଶାରେ ପରିଣତ କରିବ ଏଇ ବିଶ୍ୱାସ ଓ ଭରସା ରଖି ଆମେ ବୋଇତ ବନ୍ଦାଣ ଉତ୍ସବ ପାଳନ କରୁଛୁ ।

---

ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ, ଓଡ଼ିଶା,
ଭୁବନେଶ୍ୱର ।



ପାରାଦ୍ୱୀପଠାରେ ପ୍ରତି ବର୍ଷ ବୋଇତ ବନ୍ଦାଣ ଉତ୍ସବରେ ବ୍ୟବହୃତ ସୁସଜ୍ଜିତ ବୋଇତ ଓ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ କଟକ ଗଡ଼ଗଡ଼ିଆ ଘାଟଠାରେ ଡଙ୍ଗା ଭସାଣ ।



# ପାଷାଣ ରସ

● ଶ୍ରୀ ଶରତ କୁମାର କର

ଆମେ ସର୍ବହରା—
ସଭ୍ୟତାର ଭାରବାହୀ ପଶୁ ।
ମେଷ ସମ ସରଳତା
ଗର୍ଦ୍ଦଭର ନିରୀହତା ନେଇ
ଜୀବନଟା ନେଉଛୁ ଚଳେଇ ।
ପ୍ରତିଦିନ ଖାଉ ଚାବୁକ୍ ପ୍ରହାର
ଆମେ ଗଧିଆର୍
ଜାନୁଆର୍ ।

ଚାବୁକ ପ୍ରହାର ଅଙ୍ଗେ
ନେଉଛୁ ନିଭେଇ
ଆମେ ମରୁଛୁ 'ଜୀବନ' ପାଇଁ
ପୁଣି ଜୀଇଛୁ 'ମରଣ' ପାଇଁ ।

* * *

ଆମରି ଅସ୍ଥିରେ ଗଢ଼ା
ସଭ୍ୟତାର ସିଢ଼ି
ଆମରି ରକ୍ତରେ ଆରକ୍ତ ଏ ପିଢ଼ି
ଆମରି ମାଂସର ପଲସ୍ତରାରେ
ଚିକ୍କଣ ହେଉଛି
ସମାଜର ସ୍ତମ୍ଭ ।
ସଭ୍ୟତାର ମୂଳଦୁଆ
ଆମଠୁଁ ଆରମ୍ଭ ।

ଆମେଇ ବୋହିଛୁ ଇଟା
ଆମେଇ ହୋଇଛୁ ଇଟା
ଗୋଡ଼ି, ଚୂନ, ପଥର ।
ଆମେଇ
ସିମେଣ୍ଟ ହୋଇ
ଜମାଟ ବାନ୍ଧିଛୁ
କାନ୍ଥବାଡ଼ ଛାତର
ଭିତର ବାହାର ।
ଆମେ ମୂଳଦୁଆ
ଆମେ ଚଟାଣ ।

ଆମେ କଡ଼ି ବର୍ଗା
କବ୍‌ଜା ଖିଲାଣ ।
ଆମେ ଖଳା ବାଡ଼ି
ଖାଦାନ୍ ବାଗାନ୍ ।
ଆମେ ପ୍ରାଚୀରଟ
ଆମେ ଦ୍ୱାର ।
ଆମର କିନ୍ତୁ ଚିହ୍ନବର୍ଣ୍ଣ ନାହିଁ
ଆମେ ଶୂନ୍ୟତାର
ହା ହା କା ର ।

* * *

ଆମେ ବସ୍ତୁ
ଆମେ ପଣ୍ୟ
ଆମେ ଦ୍ରବ୍ୟ
ନିହାତି ନଗଣ୍ୟ ।
ଆମେ ଅଣୁ, ରେଣୁ ଆଉ ରଜ
ଆମେ ପରମାଣୁ ବୀଜ ।
ଆମର ବିସ୍ଫୋରଣ
ମୁକ୍ତିର ଦିନେ
ଟିକିଏବି
ପ୍ରତିଷ୍ଠିତ ପୃଷ୍ଠଭୂମି ସୁଦ୍ଧା
ଯିବ ସବୁ
ଭାଙ୍ଗି ରୁଜି
ସଭ୍ୟତା, ସମାଜ
ଶିଳ୍ପ ଓ ବାଣିଜ୍ୟ ।

ଆମେ ଯଦି ହୁଙ୍କାର ଦେବୁ
ଥରିଯିବ ମୂଳଦୁଆ
ହଲିଯିବ ଛାତ
ଅମର ମର୍ମର ସୌଧ
ହେବ ନିମିଷକେ
ଧ୍ୱସ୍ତ ଓ ବିଧ୍ୱସ୍ତ ।

ଇତିହାସର ସ୍ମୃତି ପାଇଁ
ସନ୍ତକ କିଛି ଦେଇ

ମାଟିର ସନ୍ତାନ ଆମେ
ମାଟିରେ ମିଳେଇଯିବୁ
ସଙ୍ଗେ ନେଇ ଚୁଛା ମାଟି
ଆମ ଭିଟାମାଟି
ସୁନ୍ଦୁ ଦୁବ୍ବ
ଆଉ ଭିଅ ମାଟି ।

ଆମେ ସର୍ବହରା
ସର୍ବଂସହା
ସର୍ବଗ୍ରାସୀ ମାଟି ।

* * *

ପ୍ରାକ୍ ଐତିହାସିକ
ପୁରାତନ ପ୍ରସ୍ତର ଯୁଗର
ବହୁ ପୂର୍ବୁ ସୃଷ୍ଟି ଆମର
ବ୍ରହ୍ମାଣ୍ଡ ଭୂଗୋଳେ ଖ୍ୟାତ
ଉତପ୍ତ ଆଗ୍ନେୟ ପିଣ୍ଡ ଆମେ
ଶୀତଳତା ଗଢ଼ିଛି ଆମକୁ
ନିର୍ମମ କଠିନ
ଶିଳା ଓ ପାଷାଣ ।
ଶିଳାନ୍ୟାସର ରୂପାନ୍ତରେ
ଗଢ଼ିଛୁ ଧରିତ୍ରୀ ।
ଆଗ୍ନେୟ ଉଦ୍‌ଗୀରଣ କଲେ
ଭୂମିକମ୍ପ ହେବ
ଧରଣୀ ଫାଟିବ
ପ୍ରକମ୍ପିତ ହେବ ପୃଥ୍ୱୀ ।

* * *

ଦେଖି ନାହିଁ
ସେ ପ୍ରଳୟ ସଂହାର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର
ହେବେ ଏକାକାର ।
ପ୍ରଳୟ ଜଳରେ
ବହ୍ନିର ରେଖା ଟାଣି
ରଚି ବି ପାରିବ
ଅଛ କେହି ?
ମାର୍କଣ୍ଡେୟ ଋଷି ?

ଆଉ ଏକ ନୂତନ ସୃଷ୍ଟିର
ନୂଆ ଶିଳାଲିପି
ନୂତନ ସ୍ୱାକ୍ଷର
ନବ ଜାତକର

* * *

ଇତିହାସର ସ୍ତୂପୀକୃତ
ଖବର କବର ପରେ
ପୁଣି ଆସିଛି ଆଜି
ସେଇ ପୁରୁଣା ଖବର—
"ଲାଞ୍ଛିତ ବାରମ୍ବାର
ପାଇନାହିଁ ଅଧିକାର
ବର୍ଣ୍ଣହୀନ, ଦଳିତ, ନିଷ୍ପେଷିତ ।
କେତେ କୋଟି ଏବେ ବି ଅଭୁକ୍ତ ।
ବନ୍ୟା, ମହାମାରୀ, କ୍ଷୁଧା,
ବ୍ୟାଧି ପ୍ରପୀଡ଼ିତ ।
ଶୋଷଣ, ଅସାମ୍ୟ
ଏବେ ବି ଜାଗ୍ରତ ।
ସାମ୍ୟବାଦ ଗଣତନ୍ତ୍ର
ଆଉ ଜାତୀୟକରଣ
ସବୁ ଖାଲି
ଭଣ୍ଡାମୀର ପୁନାମକରଣ ।

ଚନ୍ଦ୍ର ବକ୍ଷ—
ଆପୋଲୋ ଏଗାର
ଛୁଇଁଛି ଅବଶ୍ୟ;
କୁଡ଼ିଆର ଚନ୍ଦ୍ରମୁଖୀ କିନ୍ତୁ
ବୋହିଗଲେ ସମସ୍ତ କଳଙ୍କ ।"

ତଥାପି କରିନୁ ବିପ୍ଳବ
ତଥାପି ହୋଇନି ପ୍ରଳୟ
ଆସନ୍ନ ସ୍ୱାର୍ଣୀ ଆସନ୍ନପ୍ରୁଷ୍ଟ ବିପ୍ଳବୀର ଦଳ
ଆମ ପାଇଁ ଧରିଛନ୍ତି ସଂଗ୍ରାମର ସୁର୍
ଇନ୍‌କିଲାବ୍—ଜିନ୍ଦାବାଦ୍ ।

---

ସଂସ୍କୃତି ମନ୍ତ୍ରୀ,
ଓଡ଼ିଶା, ଭୁବନେଶ୍ୱର ।

# ବାଲିଦ୍ୱୀପର କବିତା



● ଡଃ ପ୍ରସନ୍ନ କୁମାର ପାଟଶାଣୀ

କିଏ ବା ମନେ ରଖିଚି
କେତେ ଦିନ ତଳେ କେତେ ବା ତାରିଖ, ମସିହାର ତଳେ
ଆସିଥିଲା ଦିନେ ଓଡ଼ିଆ ସାଧବ
ସମୁଦ୍ରର ନୀଳିମାରେ ଧରି ବାଲିଦ୍ୱୀପ
ଲବଙ୍ଗର ଦେହ ଓ ଗୋଲମରିଚର ଆଖି ଦେଖି
ଭୁଲିଥିଲା ଗାଆଁ
ଜହ୍ନର ଗାଧୁଆ ବେଳ , କଇଁ ପାଖୁଡ଼ା
ସ୍ନିଗ୍ଧତାରେ ଡାକିଥିଲା ଢେଉ
ଜାଣି ନଥିଲା ବେଳ ଗଡ଼ିଯାଏ କଥା କହୁ କହୁ ।
ଅନେକ ଲବଙ୍ଗଲତା ଗୁରେଇ ହୋଇ ଯାଇଥିଲେ
ଜୀବନର ଖପରରେ ଡଙ୍କ ପରି ଯଉବନ
ଲଟେଇ ଥିଲା ନିର୍ଜନ ଉପତ୍ୟକାରେ ଜହ୍ନର କିରଣ
ଡାଲଚିନି ବନରେ ଛନ ଛନ ମନ
ସୌଦାଗର ଯାଇଥିଲା ଭୁଲି
କେତେ ବୋଇତର ଛିଡ଼ା ଦଉଡ଼ି
ବାଲିଦ୍ୱୀପକୁ ଧରିଥିଲା ଭିଡ଼ି ।
ଯେଉଁଠି ଦେଖିବ ଖାଲି ଗଣେଶଙ୍କ ମୂର୍ତ୍ତି
ଧୂଳି ହାତୀଦାନ୍ତ ଓ ବିଶାଳ ବିଶାଳ କାନ
ଖାନଦାନି ପେଟ, ତା' ଉପରେ ସାପର ପଇତା
ଗଳାରେ ନୀଳ ।
ସବୁଅରଣ୍ୟରେ ରହେନା ହାତୀ
ସବୁ ଜଳରେ ଶାଳ୍ମଳି ରହେନା
ସବୁ ଗଛରେ ଡିଏଁନା ପାତି
ସବୁ ଦେଉଳରେ ବାଜେନା କାହାଳୀ
ସବୁ ସହରରେ ଜଳେନା ଦୀପାଳି
ସବୁ ପୋଖରୀରେ ଫୁଟେନା ପଦ୍ମ
ସବୁ ଘାସରେ ସଅପ ହୁଏନା
ସବୁ ସମୁଦ୍ରରେ ନଙ୍ଗର ପାଏନା
ସବୁ କପାଳରେ ଭାଗ୍ୟ ନଥାଏ, କୁକର୍ମୀକୁ ଅଭିଶାପ ।
ଓଡ଼ିଆଙ୍କ ବାରମାସେ ତେର ଯାତ ପରି
ଓଷା, ପୁନିଅଁ, ଯାତରାରେ ଭରା ଏଇ ଦ୍ୱୀପ
ଦେଉଳରେ ପୂଜା ହୁଏ
ଗଣେଶ, କାର୍ତ୍ତିକ, ଦୁର୍ଗା, ବ୍ରହ୍ମା, ବିଷ୍ଣୁ, ଶିବଙ୍କ ନାଁରେ
ମନ୍ଦିରରେ ନଥାନ୍ତି ମୂର୍ତ୍ତିର ଠାକୁର ।
ଧୂଳି ବୈଶାଖୀ ଝାଞ୍ଜି ପବନ ନାହିଁ ତ ଏଠି
ଦେଉଳର ନାଁ ଗୁମ୍ଫି କହନ୍ତି
ଗୁମେନ୍ ଆଗୁନ୍‌ର ପାହାଡ଼ ତଳେ
କେତେ ଯୁଗ ତଳେ ନିହାଣ ଖୋଦିତ
କୁଟିକମର ବୈଶାଖୀ ମନ୍ଦିର
କୋଣାରକ କଳା, ଓଡ଼ିଆ କୀରତି
କାଞ୍ଚରେ ଝଳେ ।
ଗୁମେନ୍ ଆଗୁନ୍ ପର୍ବତ ଗୁହା
ଉର୍ଦ୍ଧ୍ୱରୁ ଗ୍ରହିଲେ ଜଣାଯାଏ ସତେ
ତୁଣର ଓଠକୁ କାମୁଡ଼ି ଧରିଚି ନୀଳ ଆକାଶ
ଭସା ମେଘ ଖଣ୍ଡ ପାଲଟୁଚି ଏଠି ଭଙ୍ଗା ନବାତ ।
ଏଠି ଆଗ୍ନେୟଗିରିର ଲାଭାରେ ଉର୍ବର ହୋଇଚି ମାଟି
ସାରା ପୃଥିବୀର ପର୍ଯ୍ୟଟକ ଦଳ ଏଇଠି ଠୁଳ
ଦୂରୁ ଦିଶିଯାଏ ଅଗ୍ନେୟଗିରିର ମୃତ ଗହ୍ୱର ।

XXXX XXXX XXXX

ସବୁ ଦ୍ୱୀପ ଯଦି ଭୁଷ୍ଣ ହୁଏ
ବାଲିଦ୍ୱୀପ ! ତୁ ତା'ର ମୟୁର ଚୂଳ
କେତେ ପାହାଡ଼ର ଟୀଖ ଅବା ନଈର ବାଙ୍କ
ଗଣିପାରେ ନାହିଁ ଆଗ୍ନେୟଗିରିର ମୁଖ ।
ପ୍ରତିଟି ଆଗ୍ନେୟଗିରିର ମୁଖ ତେଲା କରେଇ
ଯା ଭିତରେ ପକ୍ଷୀ ପରି ମେଘମାନେ ଛାଣି ହୋଇ ଯାଉଛନ୍ତି
ପବନର ପିଠା ପାଟିଆରେ ସେକି ହେଉଛନ୍ତି ଚକୁଳି ପରି
ସମସ୍ତ ନାହିଁ ବିନ୍ଧ ଗଣିବାରେ ।

---

ସାଧାରଣ ଅଭିଯୋଗ ଓ
ପେନ୍‌ସନ୍ ବିଭାଗ ମନ୍ତ୍ରୀ, ଓଡ଼ିଶା,
ଭୁବନେଶ୍ୱର ।

# ପ୍ରାଚୁର୍ଯ୍ୟଭରା ଓଡ଼ିଶାର ଶିଳ୍ପ ଓ ସରକାରଙ୍କ ନୂତନ ଶିଳ୍ପ ନୀତି



● ଶ୍ରୀ ଯାଦବ ମାଝୀ

ଆଧୁନିକ ଓଡ଼ିଶା ପୁରାତନ ଉତ୍କଳ ପ୍ରଦେଶର ନାମାନ୍ତର ମାତ୍ର । କଳା-ଭାସ୍କର୍ଯ୍ୟ, ଶିଳ୍ପ-ସ୍ଥପତି ତଥା ଅଭିନବ କାରୀଗରୀ କୌଶଳର ପଟାନ୍ତର ବିହୀନ ସ୍ୱକୀୟ ପ୍ରତିଷ୍ଠା ହେତୁ ଏହି ରାଜ୍ୟର ନାମ ଉତ୍କଳ ଥିଲା ବୋଲି ବହୁ ବିଶିଷ୍ଟ ଐତିହାସିକ /ଗବେଷକ ଯେଉଁ ମୂଲ୍ୟବାନ ମତାମତ ଦେଇଛନ୍ତି ସେହି ମତାମତ ସପକ୍ଷରେ ସେମାନଙ୍କ ତଥ୍ୟ ମୂଳକ ଯୁକ୍ତି ତଥା ଏହି ଭୂଖଣ୍ଡର ଅଧିବାସୀମାନଙ୍କର ପ୍ରାଚୀନ ଗୌରବ-ଗାରିମାରେ ଭରିମନ୍ତ ଐତିହ୍ୟ ଭାରତବର୍ଷ କାହିଁକି ସମଗ୍ର ପୃଥିବୀରେ ଏ ଯାବତ୍ ଐତିହାସିକ କିମ୍ବଦନ୍ତୀରେ ଆମମାନଙ୍କ ପାଇଁ କାଳକାଳକୁ ରହିଯିବ । ସମୟର ଆବର୍ତ୍ତମାନ ସ୍ରୋତରେ ଏ ଜାତିର ଐତିହ୍ୟ ଗାରିମା ଆଜି ପରିରାଇଜ କାହାଣୀ ପରି ମନେ ହୋଇ ପାରେ ମାତ୍ର ସତ୍ୟ ସମ୍ଭବ ଐତିହାସିକ ତଥ୍ୟ ବାସ୍ତବରେ ଆମର ତଥା ଆମମାନଙ୍କ ଉତ୍ତର ଦାୟାଦ ମାନଙ୍କ ପାଇଁ ଯଥାର୍ଥରେ ପ୍ରଣିଧାନ ଯୋଗ୍ୟ । ଏ ଜାତି ଦିନେ ଶୌର୍ଯ୍ୟ, ବୀର୍ଯ୍ୟ ଓ ପ୍ରାଚୁର୍ଯ୍ୟରେ ସମଗ୍ର ଭାରତବର୍ଷରେ ଅଗ୍ରଗଣ୍ୟ ଥିଲା କୃଷି, ଶିଳ୍ପ, ପଶୁପାଳନପରି ଗୋଷ୍ଠୀଗତ ପେସା ସହିତ ସୂକ୍ଷ୍ମାତିସୂକ୍ଷ୍ମ କାରିଗରୀ ନିପୁଣତା ଓ ଶିଳ୍ପ ଭାସ୍କର୍ଯ୍ୟ ପରି ବ୍ୟକ୍ତି ବିଶେଷଙ୍କ ନିପୁଣ ସୃଷ୍ଟି ସାଧନ ଏକଦା ଏ ରାଜ୍ୟକୁ ପ୍ରଶଂସାଭିଭୂତ କରିଥିଲା । ଅଦ୍ୱିତୀୟ ଥିଲା ଏ ରାଜ୍ୟର ଗାରିମା, ଅତୁଳନ ଥିଲା ଏ ଜାତିର ଗାରିମା ।

ପ୍ରାଚୀନ ଭାରତବର୍ଷର ଏକ ଶିଳ୍ପ ସମୃଦ୍ଧ ରାଜ୍ୟ ରୂପେ ଆମ ରାଜ୍ୟର ଦେଦୀପ୍ୟମାନ ଐତିହ୍ୟ ଆଜି କେବଳ ସ୍ମୃତିସ୍ମରଣର ପାଥେୟ ମାତ୍ର । କାହିଁ ଗଲା ସେ ଅତୁଳା ଅତୀତର ସମୃଦ୍ଧ ବାସ୍ତବତା ଯାହା ଆଜି କର୍ପୂର ଗନ୍ଧ ହଜାଇଦେଲା ପରେ ଏ ଭୂଖଣ୍ଡରେ ବିରାଜମାନ ସେହି ବାସହୀନ ଅତୀତ କେବଳ ସ୍ମୃତି ମନ୍ଥନ ନିମନ୍ତେ । ଦିନ ଥିଲା ଏ ରାଜ୍ୟର ତନ୍ତ-ଜୀବି ତାର ଅପୂର୍ବ ତନ୍ତ କଳାରେ ସାଧନାର ଅନ୍ତରଙ୍ଗ ମୁହୂର୍ତ୍ତମାନଙ୍କୁ ଜଡାଇ ଦେଇ ସୃଷ୍ଟି କରୁଥିଲା ମନମୋହନକାରୀ, ଆଶ୍ଚର୍ଯ୍ୟ ଚକିତ କଳାପରି ବହୁ ମୂଲ୍ୟବାନ ଅଙ୍ଗବାସ, ଝୀନବାସ, ପାଟ ବସ୍ତ୍ର, ମଠ-ମନ୍ଦିର ଓ ସାଧାରଣ ଭାବେ ଘର ସଜାସଜି ରୂପେ ବ୍ୟବହୃତ ସୂତା, ଟସର, ପାଟ ତଥା ରଙ୍ଗ ବେରଙ୍ଗର ଚାନ୍ଦୁଆ ସାମିଆନା ଇତ୍ୟାଦି ଇତ୍ୟାଦି ଯାହା ଦୃଷ୍ଟ କଷ୍ଟରେ ତା'ର ସ୍ୱୟଂ-ସମ୍ପୂର୍ଣ୍ଣ ସିଦ୍ଧ ବୋଲି ଦିଗ-ବିଦିଗ ପ୍ରସିଦ୍ଧି ଲାଭ କରିଥଲା । ଅତୀତର ସେହି ବହୁ ଚର୍ଚ୍ଚିତ ଐତିହାସିକ ଗାଥା ଏବେବି ମନରେ ସହସ୍ରବାର ପ୍ରଶ୍ନ ଆଣେ ଯେ, କିପରି ଭାବେ ଅତି ସୂକ୍ଷ୍ମ ପାଟ ଲୁଗା ବାଉଁଶ ନଳୀ, ଶାମୁକାଖୋଳରେ ଏ ରାଜ୍ୟର ତତ୍କାଳୀନ ରାଜା ମହାରାଜାମାନେ ଭେଟି ସ୍ୱରୂପ ପଠାଇ ସମସାମୟିକ ସମୃଦ୍ଧ ରାଜ୍ୟଶ୍ରୀ ଭୋଗ କରୁଥିବା ଚୀନ୍, ତିବ୍ବତ, ସିଂହଳ, ନେପାଳ ଆଦି ରାଜ୍ୟର ସମ୍ରାଟମାନଙ୍କୁ ହତ ଚକିତ କରି ପକାଇ ପାରିଥିଲେ । ଏବେବି ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରର ପାଟ ଲୁଗା, ସମ୍ବଲପୁରର ତନ୍ତ-ସ୍ଥପତିର ସମ୍ବଲପୁରୀ ଲୁଗା ତଥା ଅନ୍ୟାନ୍ୟ ଅଞ୍ଚଳର ଭିନ୍ନ ଭିନ୍ନ ଅଙ୍ଗବାସ ଉପରେ ସ୍ୱାତନ୍ତ୍ର୍ୟବଜାୟ ରଖିଥିବା ତନ୍ତ ଜୀବିଙ୍କ ତନ୍ତ-କୁହୁକ ସମଗ୍ର ଭାରତ ଭୂ-ଖଣ୍ଡ କାହିଁକି ବିଦେଶର ଅନେକ ସମୃଦ୍ଧ ଅଞ୍ଚଳର ଅଧିବାସୀଙ୍କୁ ମଧ୍ୟ ଆକର୍ଷିତ କରି ରହିଛି । ପିପିଲିର ଚାନ୍ଦୁଆ ଶିଳ୍ପ ଯାହାର ଅତୀତ ପ୍ରସିଦ୍ଧି କୌଣସି ପ୍ରକାରେ ଭୁଲିବାର ନୁହେଁ । ସୁଖର କଥା ଆଜି ମଧ୍ୟ ତା'ର ସେହି ପ୍ରଶସ୍ତିରେ ମ୍ଳାନତା ଆସି ନାହିଁ । ଅପର ପକ୍ଷେ ଦେଶ ବିଦେଶରେ ଏହା ସ୍ୱକୀୟ ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । କଂସା ପିତ୍ତଳର ବାସନ-କୁସନ ଶିଳ୍ପ ଏ ରାଜ୍ୟର ଏକ ନିଜସ୍ୱ ଶୈଳୀର ଶାହକା । ଘର-କରଣା ସାମଗ୍ରୀ, ବାସନ-କୁସନ ତଥା ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ସୃଜନା ଭିତରେ ଏ ଶିଳ୍ପର ଶିଳ୍ପୀ ଅବଶ୍ୟ ନୁହେଁ । ତା'ର କଳା-କୌଶଳ, ସାଧନାର ଅଦ୍ଭୁତ ସ୍ପର୍ଶରେ ପ୍ରସ୍ତୁତ ବିଭିନ୍ନ ପଶୁ-ପକ୍ଷୀଙ୍କ ଅବୟବ, ଘଣ୍ଟ-ଘଣ୍ଟା ଇତ୍ୟାଦିର ଅତୁଳ ସୌନ୍ଦର୍ଯ୍ୟ ଅନୁଭବୀଙ୍କୁ ଅନେକ ସମୟରେ ବାସ୍ତବ ଦୁନିଆରୁ ଦୂରେଇ ନିଏ । ବେଲଗୁଣ୍ଠା ଅଞ୍ଚଳରେ ପିତ୍ତଳରେ ତିଆରି ହେଉଥିବା ବିଶେଷ କରି ବିଭିନ୍ନ ପ୍ରକାର ମାଛର ଆକୃତି ଆଞ୍ଚଳିକ ସ୍ତରରୁ ଉନ୍ନୀତ ହୋଇ ଦିନ ଥିଲା ସମଗ୍ର ଭାରତ ବର୍ଷରେ ସମ୍ମୋହନ ସୃଷ୍ଟି କରିପାରିଥିଲା । ପୁରୀ ଜିଲ୍ଲାର କଣ୍ଟିଲୋ ଅଞ୍ଚଳ କଂସାଜାତ ଘଣ୍ଟ- ଘଣ୍ଟା ସାମଗ୍ରୀ ତିଆରୀ ନିମନ୍ତେ ଏକ ଗୌରବମୟ ସ୍ଥାନ ଦାବୀ କରେ । ଯାହାର ପଟାନ୍ତର ମଧ୍ୟ ନଥିଲା । ରୂପା ତାରକସି କାମ ଓଡ଼ିଶାର ବହୁ ପୁରାତନ କଟକ ସହରର ନିଜସ୍ୱ ଆଭିଜାତ୍ୟର ସାକ୍ଷ୍ୟର ବହନ କରେ । ଯାହାର ପରିମାର୍ଜିତ ସଂସ୍କରଣ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ କଳାପରେ ଦିନେ ଏହା ସମଗ୍ର ଦେଶରେ ସୁଖ୍ୟାତି ଅର୍ଜନ କରିପାରିଥିଲା । ଏବେବି ଦେଶ-ବିଦେଶରେ ଏହାର ଖ୍ୟାତି

କ୍ଷତି ଭଣା ହୋଇନାହିଁ । ଚମଡ଼ା ଶିଳ୍ପକୁ ନୂତନ ବୈଜ୍ଞାନିକ ଜ୍ଞାନ ଉପଯୋଗରେ ଆନ୍ତର୍ଜାତିକ ସ୍ତରଭୁକ୍ତ କରି ଏହି ରାଜ୍ୟର କର୍ମୀକାରମାନଙ୍କୁ ଦେଶ- ବିଦେଶରେ ସ୍ୱତନ୍ତ୍ର ଭାବେ ପରିଚିତ କରାଇବାର ଦୁଃସାଧ୍ୟ ପ୍ରୟାସ ଯାହା ଦିନେ ଉତ୍କଳ ଗୌରବ ମଧୁସୂଦନ କରିଥିଲେ; ଇତିହାସ ତା'ର ମୂକସାକ୍ଷୀ । ଏତଦ୍ ଭିନ୍ନ ସାଧାରଣ ସ୍ତରରେ ରାଜ୍ୟରୁ ଉପଲବ୍ଧ ଅନେକ ସାମଗ୍ରୀକୁ ନେଇ ଏବେ ଆମେ କହୁଥିବା କୁଟୀରଶିଳ୍ପ ପରି ଶିଳ୍ପ ଓ ଶିଳ୍ପୀ ରାଜ୍ୟର ନିଜସ୍ୱ ପ୍ରତିଷ୍ଠାକୁ ବହୁଦିନ ଧରି ଊର୍ଦ୍ଧ୍ୱଗାମୀ କରି ରଖିଥିଲେ । ଏହି ପରିପ୍ରେକ୍ଷୀରେ କଦାଜାତ ଶିଳ୍ପ (ପାପୋଛ, ଗାଲିଚା), କାଠ ଶିଳ୍ପ (କାଠ ଖୋଦେଇ ମୂର୍ତ୍ତି, ଅନ୍ୟାନ୍ୟ ଗୃହ ସଜାଇବା ସାମଗ୍ରୀ), ପଥର ଶିଳ୍ପ (ଖେଡ଼ି ତଥା ଅନ୍ୟାନ୍ୟ ପଥର ତିଆରି ମୂର୍ତ୍ତି ଓ ଗୃହ ସଜାଇବା ଉପଯୋଗୀ ସାମଗ୍ରୀ) ଆଦିର ଉଦାହରଣ ପ୍ରଣୁଯ୍ୟ ଅଟେ ।

ତେବେ ଅତୀତ ଓ ବର୍ତ୍ତମାନର ଓଡ଼ିଶା ବା ଉତ୍କଳ ହେଉ ଏହାର ଶିଳ୍ପ, ଶିଳ୍ପୀ, ଶିଳ୍ପକଳା ଓ ସମ୍ଭାବନାମୟ ପ୍ରାଚୁର୍ଯ୍ୟ ଉପରେ ଆଲୋକପାତ କଲେ ଆମକୁ ଅହେତୁକ ହତାଶାରେ ଜର୍ଜରିତ ହେବାକୁ ହୁଏ । ଅତୀତର ଦୃପ୍ତ ଇତିହାସ ଓ ସୁପ୍ତ ବର୍ତ୍ତମାନର ତୁଳନାତ୍ମକ ବିଚାର ବୋଧରେ ମୁଁ କାହିଁକି ପ୍ରତ୍ୟେକ ଓଡ଼ିଶାବାସୀ ଯେ ନିଶ୍ଚିତ ଭାବେ ବର୍ତ୍ତମାନ ଅପେକ୍ଷା ଅତୀତକୁ ନେଇ ତୃପ୍ତି ଅନୁଭବ କରିବା ସହିତ ଭବିଷ୍ୟତର ରୂପରେଖ ସମ୍ବନ୍ଧରେ କଳ୍ପନା କରିବାକୁ ଭୁଲୁ ନଥିବେ । କଳ୍ପନାର ବାସ୍ତବ ରୂପାୟନ ନିମନ୍ତେ ଆମ ସରକାର ପ୍ରତିଶ୍ରୁତିବଦ୍ଧ ଓ ଅନନ୍ୟ ପ୍ରତିଭାର ଅଧିକାରୀ ଏ ମାଟିର ବରପୁତ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନିରବଚ୍ଛିନ୍ନ ସାଧନା ଓ ଉଦ୍ୟମ ଏକ ସମ୍ଭାବନାମୟ ଶିଳ୍ପ-ସମୃଦ୍ଧ ନୂତନ ଓଡ଼ିଶା ଗଠନ କରିବା ଦିଗରେ ଶପଥ ବ୍ରତୀ । ମୁଖ୍ୟମନ୍ତ୍ରୀଙ୍କ ନିଷ୍ଠା ପ୍ରତିଫଳିତ ହୋଇଛି ରାଜ୍ୟରେ ନୂତନ ଭାବେ ଶିଳ୍ପ ପ୍ରସାର ଉପରେ ଗୁରୁତ୍ୱ ଦେଇ ପ୍ରଚଳିତ ଶିଳ୍ପନୀତିରେ କେତେକ ପରିବର୍ତ୍ତନ କରି ଚଳିତବର୍ଷ ଅଗଷ୍ଟ ମାସରେ ଏକ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଶିଳ୍ପନୀତିର ଅବତାରଣା କରିବାରେ । ଯାହାକି ରାଜ୍ୟରେ ନୂତନ ଶିଳ୍ପ ପ୍ରତିଷ୍ଠା କରିବାର କ୍ଷେତ୍ର ପ୍ରସସ୍ତ କରିବା ସଙ୍ଗେ ସଙ୍ଗେ ଚାଲୁରହିଥିବା ଶିଳ୍ପଗୁଡିକର ଅଭିବୃଦ୍ଧିରେ ମଧ୍ୟ ସହାୟକ ହେବ । ପରିବର୍ତ୍ତିତ ଅବସ୍ଥାରେ ପାରମ୍ପରିକ ଉପଲବ୍ଧ କଞ୍ଚାମାଲ ଯଥା-ଲୁହାପଥର, ମାଙ୍ଗାନିଜ, କୋଇଲା, ବକ୍ସାଇଟ୍, ଗ୍ରାନାଇଟ୍ ଶ୍ରେଣୀଭୁକ୍ତ ପଥରପରି ପ୍ରମୁଖ ଖଣିଜ ସାମଗ୍ରୀ, ଜଙ୍ଗଲଜାତ ସାମଗ୍ରୀ, କୃଷିଲବ୍ଧ ସାମଗ୍ରୀ, କୃଷିଭିତ୍ତିକ ଶିଳ୍ପ ପ୍ରତିଷ୍ଠା ବ୍ୟତିରେକେ, ଚମଡା ଶିଳ୍ପର ବିକାଶ, ବସ୍ତ୍ର-ଶିଳ୍ପର ଆଧୁନିକୀକରଣ, ଆଧୁନିକ ବୈଦ୍ୟୁତିକ ଯନ୍ତ୍ରାଂଶ ଉତ୍ପାଦନ ସୌଖିନ ସାମଗ୍ରୀ ଆଦିର ଉତ୍ପାଦନ ସମ୍ବନ୍ଧୀୟ ଶିଳ୍ପ ପ୍ରତିଷ୍ଠାନ ସହିତ, ହୋଟେଲ ବ୍ୟବସାୟକୁ ଶିଳ୍ପସ୍ତରଭୁକ୍ତ କରି ଏହି ବ୍ୟବସାୟର ପରିସର ବୃଦ୍ଧି କରିବା, ସିନେମାପରି ଲାଭଜନକ ବେପାରକୁ ଶିଳ୍ପର ମାନ୍ୟତା ଦେଇ ଏହାର ବିକାଶ କରିବା, ଚା, କଫି, ରବର, ମସଲା ଆଦି ଅତି ଅର୍ଥକାରୀ ଲାଭଜନକ ଫସଲକୁ ରପ୍ତାନୀ ଅଭିମୁଖୀ କରିବାର ପରିକଳ୍ପନା କରି ଏହାର ଚାଷ ଓ ଉତ୍ପାଦନକୁ ଶିଳ୍ପ ପର୍ଯ୍ୟାୟଭୁକ୍ତ କରିବା, ପର୍ଯ୍ୟଟନ ଦିଗରେ ସ୍ୱତନ୍ତ୍ର ଧ୍ୟାନ ଦେଇ ରାଜ୍ୟରେ ଥିବା ପ୍ରାକୃତିକ ପରିବେଶ-ମଣ୍ଡିତ ଐତିହାସିକ ଓ ପୌରାଣିକ ପଟ୍ଟଭୂମିରେ ଐତିହ୍ୟ ଓ ସୌନ୍ଦର୍ଯ୍ୟର ମୁଖ୍ୟ ଆକର୍ଷଣ, ପ୍ରକୃତିର ଚରମ ଭୀତିସଙ୍କୁଳ ଅଥଚ ଦୁର୍ଲଭ ଶୋଭା-ଶ୍ରୀ ମଣ୍ଡିତ ମନୋରମ ବନାନୀ, ଗିରିମାଳା, ସାଙ୍ଗକୁ ପ୍ରାକୃତିକ ଅବା ଅତୀତର ରାଜା/ମହାରାଜା କୃତ ଆଶ୍ଚର୍ଯ୍ୟ କରି ଦେଉଥିବା ଗୁମ୍ଫା ଇତ୍ୟାଦି ପ୍ରତି ଆକର୍ଷିତ ହୋଇ ଆସୁଥିବା ଦେଶ ଓ ଦେଶ ବାହାରର ଦର୍ଶକମାନଙ୍କ ନିମନ୍ତେ ପର୍ଯ୍ୟଟନର ପରିସୀମାକୁ ପ୍ରଶସ୍ତ କରିବା ଦିଗରେ ଆନୁଷଙ୍ଗିକ ପଦକ୍ଷେପନେଇ ଏହାକୁ ଶିଳ୍ପର ମାନ୍ୟତା ଦେବାଫଳରେ ରାଜ୍ୟରେ ବର୍ତ୍ତମାନ ଶିଳ୍ପର ମୌଳିକ ପରିଭାଷା ଓ ପରିସରର ଯଥେଷ୍ଟ ବ୍ୟାପକତା ଘଟିଛି । ଏହି ପରିପ୍ରେକ୍ଷୀରେ ରାଜ୍ୟ ସରକାରଙ୍କ ଘୋଷିତ ନୂତନ ଶିଳ୍ପନୀତି ଓ ଏହାର ମୌଳିକ ବୈଶିଷ୍ଟ୍ୟ ପ୍ରତି ଆସନ୍ତୁ ସଂକ୍ଷେପରେ ଆଲୋଚନା କରିବା ।

## ପ୍ରାଧାନ୍ୟଭୁକ୍ତ ଶିଳ୍ପ ପରିସର

ଘୋଷିତ ନୂତନ ଶିଳ୍ପନୀତିରେ କେତେକ ନିର୍ଦ୍ଦିଷ୍ଟ ଶିଳ୍ପର ବିକାଶ ନିମନ୍ତେ ଅଧିକ ପ୍ରୋତ୍ସାହନ ଓ ଗୁରୁତ୍ୱ ନିମନ୍ତେ ସରକାର ଆବଶ୍ୟକୀୟ ପ୍ରୋତ୍ସାହନ ଓ ସହଯୋଗ ଯୋଗାଇ ଦେବାର ବ୍ୟବସ୍ଥା ରହିଛି । ସେଗୁଡ଼ିକ ହେଲା :—

(୧) ରପ୍ତାନୀ-ଅଭିମୁଖୀ ଅଧିକ ଉତ୍ପାଦନକ୍ଷମ ଶିଳ୍ପ,

(୨) ଚମଡା ଶିଳ୍ପ,

(୩) ମୂଲ୍ୟବାନ ପଥର ଓ ଗ୍ରାନାଇଟ୍ ଶ୍ରେଣୀଭୁକ୍ତ ଶିଳ୍ପ,

(୪) ମୁଖ୍ୟାଲୁହା, ସ୍ପଞ୍ଜ-ଲୁହା, ଫେରୋ, ଆଲଏଜ ତଥା ଷ୍ଟେନ୍‌ଲେସ୍ ଷ୍ଟିଲ୍ ଉତ୍ପାଦନ ଶିଳ୍ପ,

(୫) ହାର୍ଡ- ୱାର/ ସଫ୍ଟ- ୱାର ଶ୍ରେଣୀର ଇଲେକ୍‌ଟ୍ରୋନିକ୍ସ ଯନ୍ତ୍ରାଂଶ ଉତ୍ପାଦନ ଶିଳ୍ପ,

(୬) ଉନ୍ନତ ଧରଣର ରପ୍ତାନୀ-ଅଭିମୁଖୀ ପୁଷ୍ପ-ଚାଷ ତଥା ଜୈବିକ-ଜ୍ଞାନ ଭିତ୍ତିକ ଜୈବ ଶିଳ୍ପ,

(୭) କୃଷି-ଭିତ୍ତିକ/ସାମୁଦ୍ରିକ-ଉତ୍ପାଦନ ଭିତ୍ତିକ ଖାଦ୍ୟ ସାମଗ୍ରୀ ଉତ୍ପାଦକ ଶିଳ୍ପ,

(୮) ଚା, କଫି, ରବର, କାଜୁ ତଥା ଅନ୍ୟାନ୍ୟ ରପ୍ତାନୀଯୋଗ୍ୟ ମସଲା- ମସଲି ଆଦିର ବହୁଳ ଚାଷ ତଥା ଆଧୁନିକ ଉପାୟରେ ସେ ସବୁର ଉତ୍ପାଦନରେ ଉନ୍ନତି ଭିତ୍ତିକ ଶିଳ୍ପ,

(୯) ସିନ୍ଥେଟିକ ତନ୍ତୁରେ ଉନ୍ନତି ବିଧାନ କରି ବସ୍ତ୍ର ଉପଯୋଗୀ ଶିଳ୍ପ,

(୧୦) ପ୍ଲାଷ୍ଟିକ ଶିଳ୍ପ,

(୧୧) ଗତାନୁଗତିକ ପନ୍ଥାର ଉପଯୋଗିତା ବ୍ୟତିରେକେ ଭିନ୍ନ ଉପାୟରେ ଶକ୍ତି ଉତ୍ପାଦନ ଶିଳ୍ପ

(୧୨) ଶିଳ୍ପାଞ୍ଚଳରୁ ନିର୍ଗତ ଶିଳ୍ପ- ମଳ (ପାଉଁଶ/ ଆଦି ମେଟେରିଆଲର ଉପଯୋଗୀକରଣ ଶିଳ୍ପ ।

## ଶିଳ୍ପ ଓ ଶିଳ୍ପଶ୍ରେଣୀଭୁକ୍ତ ପ୍ରତିଷ୍ଠାନରେ ଶ୍ରମ ସମ୍ପର୍କ

ଶିଳ୍ପ କ୍ଷେତ୍ରରେ ଶାରିରୀକ ଶ୍ରମର ଗୁରୁତ୍ୱ ପୂର୍ଣ୍ଣ ଭୂମିକାକୁ ପୁନଃ ବିଚାର କରି ଶ୍ରମିକ ଶ୍ରେଣୀର ସ୍ୱାର୍ଥରକ୍ଷାକୁ ଅଗ୍ରାଧିକାର

[illegible]

ଦେଇ ପ୍ରଚଳିତ ଶିଳ୍ପ ସମ୍ବନ୍ଧୀୟ ଶ୍ରମ–ଆଇନ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ନିମନ୍ତେ ଶିଳ୍ପ ଆଇନ୍‌ରେ ବ୍ୟାପକ ପରିବର୍ତ୍ତନ ଅଣାଯାଇଛି । ଶିଳ୍ପାଞ୍ଚଳ ମାନଙ୍କରେ ଶ୍ରମିକ ଅଶାନ୍ତି, ମାଲିକମାନଙ୍କ ଜୁଲୁମ ଓ ମନଇଚ୍ଛା ହାକିମାତି, ମଜୁରି ସଂକ୍ରାନ୍ତୀୟ ରାଜିନାମା କାର୍ଯ୍ୟରତ କର୍ମଚାରୀଙ୍କ ସଂଘ ପ୍ରତିଷ୍ଠା ତଥା ଅନ୍ୟୁନ ୫୦୦ କର୍ମଚାରୀ କାର୍ଯ୍ୟକରୁଥିବା ଶିଳ୍ପ ପ୍ରତିଷ୍ଠାନରେ ତତ୍‌କ୍ଷଣାତ ଶ୍ରମିକ–ଅଶାନ୍ତି, ଶ୍ରମ ସମ୍ବନ୍ଧୀୟ ବିଚାର– ବିମର୍ଷ ତଥା ଶ୍ରମିକ ଶ୍ରେଣୀର ସ୍ୱାର୍ଥରକ୍ଷା ଦିଗରେ ତତ୍ପରତା ନିମନ୍ତେ ସରକାରଙ୍କ ପକ୍ଷରୁ ଶ୍ରମ–ଅଧିକାରୀ ଅବସ୍ଥାପନ ଆଦି ସ୍ୱାଗତଯୋଗ୍ୟ ଆଇନଗତ ସଂଶୋଧନ ବାସ୍ତବିକ ପ୍ରଣିଧାନ ଯୋଗ୍ୟ

## ପରିଚାଳନାଗତ ପରିସର ଓ ସାଧାରଣ ନିୟମ ବ୍ୟବସ୍ଥା

ସରକାର କେତେଗୁଡ଼ିଏ ପରିଚାଳନାଗତ ପ୍ରଚଳିତ ବିଧି–ବ୍ୟବସ୍ଥାରେ ଯଥା ସମ୍ଭବ ସ୍ୱାଗତଯୋଗ୍ୟ ସଂସ୍କରଣ ଆଣି ସରକାରୀ ଓ ବେସରକାରୀ ଉଦ୍ୟୋଗ ମଧ୍ୟରେ ଦ୍ୱନ୍ଦ୍ୱକୁ ଏଡ଼ାଇଯିବା ସହିତ ସମନ୍ୱୟର ସୂତ୍ର ଉପସ୍ଥାପନା କରିଛନ୍ତି ।

(କ) ସାଧାରଣତଃ ଯେଉଁସବୁ କ୍ଷେତ୍ରରେ ବେସରକାରୀ ଉଦ୍ୟୋଗ ତଥା ସଂଯୁକ୍ତ ଉଦ୍ୟୋଗ ପର୍ଯ୍ୟାପ୍ତ ହେବନାହିଁ; ବାଣିଜ୍ୟିକ ସ୍ୱାର୍ଥକୁ ଅଗ୍ରାଧିକାର ରଖି ସରକାର ନିଶ୍ଚିତ ଭାବେ ଶିଳ୍ପ ପ୍ରତିଷ୍ଠାକୁ ନିଜସ୍ୱ କରିବେ ।

(ଖ) ଆବଶ୍ୟକସ୍ଥଳେ ସଫଳ ବେସରକାରୀ ଉଦ୍ୟୋଗମାନଙ୍କରେ ଶ୍ରମିକମାନଙ୍କ ନିଯୁକ୍ତି ତଥା ସ୍ୱାର୍ଥରକ୍ଷାପାଇଁ ସରକାର ବିଧିବଦ୍ଧ ନୀତିଗତ ନିଷ୍ପତ୍ତି ନେବେ ।

(ଗ) ରୁଗ୍ଣ ଶିଳ୍ପ ପ୍ରତିଷ୍ଠାନମାନଙ୍କରେ କାର୍ଯ୍ୟରତ କର୍ମଚାରୀମାନଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ସରକାର ଉତ୍ତରଦାୟୀ ରହିବେ ।

(ଘ) ସମଭାବାପନ୍ନ ଲକ୍ଷ୍ୟରେ ପ୍ରତିଷ୍ଠିତ ବେ–ସରକାରୀ ଓ ସରକାରୀ ଉଦ୍ୟୋଗ ମଧ୍ୟରେ ଏକୀକରଣ କରାଯାଇ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥାରେ ପରିଚାଳନାଗତ ବ୍ୟବସ୍ଥା ହେବ ।

(ଙ) ସରକାରୀ ଓ ବେ–ସରକାରୀ ଉଦ୍ୟୋଗଗୁଡ଼ିକ ମଧ୍ୟରେ ସ୍ୱତନ୍ତ୍ର ବ୍ୟବସ୍ଥା ଅନୁଯାୟୀ ମହତ୍ତର ସ୍ୱାତନ୍ତ୍ରତା ଓ ସ୍ୱାର୍ଥ ନିମନ୍ତେ ବ୍ୟବସ୍ଥା ପ୍ରଚଳନ ହେବ

(ଚ) ନୂତନ ବେ–ସରକାରୀ ଉଦ୍ୟୋଗଗୁଡ଼ିକରେ ଶକ୍ତି ଉତ୍ପାଦନ ନିମନ୍ତେ ସରକାରୀ ପ୍ରୋତ୍ସାହନ ଓ ରିହାତିର ବ୍ୟବସ୍ଥା ରହିବ ।

ଉପରୋକ୍ତ ବ୍ୟବସ୍ଥା ବ୍ୟତିରେକ ଶିଳ୍ପ ସମ୍ବନ୍ଧୀୟ ଆଇନ୍‌ର ସରଳୀକରଣ, ରିହାତି/କର ସମ୍ବନ୍ଧୀୟ ପ୍ରୋତ୍ସାହନ ନିମନ୍ତେ ନିୟମ ପ୍ରଣୟନ, କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠାନମାନଙ୍କ ପାଇଁ ବଜାର ସୁବିଧା ସୃଷ୍ଟି, ସଫଳ ଶିଳ୍ପୋଦ୍ୟୋଗୀମାନଙ୍କୁ ଉତ୍ସାହିତ କରିବା, ଶିଳ୍ପ ପ୍ରତିଷ୍ଠାନଗୁଡ଼ିକରେ ହଠାତ୍ ରୁଗ୍ଣତା ଉପସର୍ଗର ପ୍ରତିବିଧାନ ଓ କ୍ଷତିଗ୍ରସ୍ତ ଶିଳ୍ପ ପ୍ରତିଷ୍ଠାନଗୁଡ଼ିକର ଥଇଥାନ ବ୍ୟବସ୍ଥା ଅର୍ଥ ଯୋଗାଣ ସମୀକରଣ କରି କେତେକ ନିର୍ଦ୍ଦିଷ୍ଟ ଶିଳ୍ପ ପ୍ରତିଷ୍ଠାନ ପାଇଁ ଗୁଣାତ୍ମକ ଧାନ ଓ ଉତ୍ପାଦିକା ମୂଲ୍ୟାୟନ ତଥା ଉତ୍ପାଦିତ ସାମଗ୍ରୀର ଗୁଣାତ୍ମକ ଅଭିବୃଦ୍ଧି ସଂକ୍ରାନ୍ତୀୟ ପରୀକ୍ଷା ନିରୀକ୍ଷା ନିମନ୍ତେ ଏବଂ ନିଯୋଜିତ ଲୋକ ଶକ୍ତିର ଉପଯୁକ୍ତ ତାଲିମ ନିମନ୍ତେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ମିଳିତ ସହାୟକ ଯୋଜନା ପ୍ରସ୍ତାବିତ ନୂତନ ଶିଳ୍ପ ନୀତିରେ ନିଶ୍ଚିତ ଫଳପ୍ରଦ ପଦକ୍ଷେପ ଅଟେ ।

## ସରକାରୀ ପ୍ରୋତ୍ସାହନ

### (୧) ଅନୁଦାନ–Subsidy

ସରକାର ରାଜ୍ୟର ଶିଳ୍ପ ଅନୁନ୍ନତ ଅଞ୍ଚଳ ଶିଳ୍ପ ବିହୀନ ଅଞ୍ଚଳ ଆଦିକୁ ବିଚାରକୁ ନେଇ ମୋଟାମୋଟି ଭାବେ ତିନିଟି ପର୍ଯ୍ୟାୟଭୁକ୍ତ କରି ଶିଳ୍ପ ପ୍ରତିଷ୍ଠା ଦିଗରେ ସରକାରୀ ପ୍ରୋତ୍ସାହନର ବିଧିବଦ୍ଧ ବ୍ୟବସ୍ଥା କରିଛନ୍ତି । ଏହି ବିଭାଗୀକରଣ ଅନୁସାରେ "କ" ଶ୍ରେଣୀଭୁକ୍ତ ଅଞ୍ଚଳଗୁଡ଼ିକ ହେଲା ନୀଳଗିରି, ପଦ୍ମପୁର, ଖୁରିଆର, ଦେଓଗଡ଼, ରେଢ଼ାଖୋଲ, ବୌଦ୍ଧ, କନ୍ଧମାଳ, ବାଲିଗୁଡ଼ା, ମାଲକାନଗିରି, ଗୁଣପୁର, ବାମନଘାଟୀ, ପଞ୍ଚପୀଢ଼, କପ୍ତିପଦା, ବଣାଇ, କାମାକ୍ଷାନଗର, ଆଠମଲ୍ଲିକ, ହିନ୍ଦୋଳ, ପାଲଲହଡ଼ା, ପାରଳାଖେମୁଣ୍ଡି, ପାଟଣାଗଡ଼, ସୋନପୁର, ଭବାନୀପାଟଣା, ଧର୍ମଗଡ଼, ନବରଙ୍ଗପୁର, ବିରମହାରାଜପୁର ଓ ନୂଆପଡ଼ା ସବ୍‌ଡ଼ିଭିଜନ । ଉଲ୍ଲେଖଯୋଗ୍ୟ ଯେ ଉପରୋକ୍ତ ସବ୍‌ଡ଼ିଭିଜନଗୁଡ଼ିକ ଶିଳ୍ପ ବିହୀନ ଅଞ୍ଚଳ ରୂପେ ବର୍ତ୍ତମାନ ଚିହ୍ନିତ ହୋଇଛି ।

ସେହିପରି "ଖ" ଶ୍ରେଣୀଭୁକ୍ତ ସବ୍‌ଡ଼ିଭିଜନଗୁଡ଼ିକ ଅର୍ଥାତ୍ ଯେଉଁ ଅଞ୍ଚଳଗୁଡ଼ିକ ଶିଳ୍ପ ଦୃଷ୍ଟିରୁ ଅନୁନ୍ନତ ସେଗୁଡ଼ିକ ହେଲା–ଭଦ୍ରକ, ନୟାଗଡ଼, ରାୟଗଡ଼ା, ଜୟପୁର, ବାରିପଦା, କେନ୍ଦୁଝର, ଆନନ୍ଦପୁର, ବମ୍ପୁଆ, ସୁନ୍ଦରଗଡ଼, ଛତ୍ରପୁର, ଭଞ୍ଜନଗର, ବାଙ୍କୀ, ଆଠଗଡ଼, ଜଗତ୍‌ସିଂହପୁର, କେନ୍ଦ୍ରାପଡ଼ା, ଯାଜପୁର, ଟିଟିଲାଗଡ଼, ପୁରୀ ଓ ବଲାଙ୍ଗୀର । ଯଦିଓ ଏ ସବୁ ସବ୍‌ଡ଼ିଭିଜନଗୁଡ଼ିକରେ ଶିଳ୍ପ ପ୍ରତିଷ୍ଠାନମାନ ଅଛି ତେବେ ସମ୍ଭାବନାର ପୃଷ୍ଠିକୁ ବିଚାରକୁ ନେଲେ ଏ ସବୁ ଅଞ୍ଚଳ ଆପେକ୍ଷିକ ହାରରେ ଆଗୁଆ ନୁହଁନ୍ତି ।

ଶେଷରେ କତିପୟ ପ୍ରତିଷ୍ଠିତ ଶିଳ୍ପ ସମୃଦ୍ଧି ସହିତ ଉନ୍ନତ ସମ୍ଭାବନାର ପୋଷଣ ପୁଷ୍ଟ ନିମ୍ନୋକ୍ତ "ଗ" ପର୍ଯ୍ୟାୟ ଭୁକ୍ତ ସବ୍‌ଡ଼ିଭିଜନଗୁଡ଼ିକ ହେଲା– ବାଲେଶ୍ୱର, ସମ୍ବଲପୁର, ବରଗଡ଼, ଭୁବନେଶ୍ୱର, ଖୋର୍ଦ୍ଧା, ପାନପୋଷ, ଅନୁଗୁଳ, ତାଳଚେର, ବ୍ରହ୍ମପୁର, ଢେଙ୍କାନାଳ, ଝାରସୁଗୁଡ଼ା ଓ କଟକ ।

ସରକାର ଉପର ବର୍ଣ୍ଣିତ ଅଞ୍ଚଳମାନଙ୍କରେ ଅଧିକରୁ ଅଧିକ ଶିଳ୍ପ ପ୍ରସାର ନିମନ୍ତେ ଆଗ୍ରହୀ ଶିଳ୍ପ ଉଦ୍ୟୋଗୀମାନଙ୍କୁ ନୂତନ ଶିଳ୍ପ ପ୍ରତିଷ୍ଠା, ପୂର୍ବରୁ ଥିବା ଶିଳ୍ପ ପ୍ରତିଷ୍ଠାନର ଅଭିବୃଦ୍ଧି/ନବୀକରଣ ଅଥବା ନୂତନ ଶାଖା ପ୍ରତିଷ୍ଠା କରଣ ନିମନ୍ତେ ମୂଳ ପୁଞ୍ଜି ବିନିଯୋଗ ଉପରେ ଯଥାକ୍ରମେ "କ" ପର୍ଯ୍ୟାୟଭୁକ୍ତ ଅଞ୍ଚଳ ପାଇଁ ଶତକଡ଼ା ୩୦ ଭାଗ ଅର୍ଥାତ୍ ସର୍ବୋଚ୍ଚ ୩୦ ଲକ୍ଷ ଟଙ୍କା "ଖ" ପର୍ଯ୍ୟାୟଭୁକ୍ତ ଅଞ୍ଚଳ ପାଇଁ ସର୍ବୋଚ୍ଚ ୨୦ ଲକ୍ଷ ଟଙ୍କା ଅର୍ଥାତ୍

ଶତକଡ଼ା ୨୦ ଭାଗ ଏବଂ "ଗ" ପର୍ଯ୍ୟାୟଭୁକ୍ତ ଅଞ୍ଚଳ ପାଇଁ ଶତକଡ଼ା ୧୦ ଭାଗ ଅର୍ଥାତ୍ ସର୍ବୋଚ୍ଚ ୧୦ ଲକ୍ଷ ଟଙ୍କାର ଅନୁଦାନ (Subsidy)ର ପ୍ରୋତ୍ସାହନ ବ୍ୟବସ୍ଥା ଅଛି ।

ଉପରୋକ୍ତ ପ୍ରୋତ୍ସାହନ ବ୍ୟବସ୍ଥା ସହିତ "ସ୍ୱତନ୍ତ୍ର ଶିଳ୍ପୋଦ୍ୟୋଗୀ"– ଅର୍ଥାତ୍ ତଫସିଲଭୁକ୍ତ ଜାତି/ଉପଜାତିର ଉଦ୍ୟୋଗୀ, ବୈଷୟିକ ତାଲିମଧାରୀ ଉଦ୍ୟୋଗୀ, ମହିଳା ସମବାୟ ଉଦ୍ୟୋଗ, କାରିଗରୀ ସମବାୟ ଉଦ୍ୟୋଗ, ଚିହ୍ନଟ ହୋଇଥିବା ଶାରୀରିକ ଅକ୍ଷମ ଉଦ୍ୟୋଗୀ, ସରକାରଙ୍କ ତରଫରୁ ବିଶେଷ ଭାବରେ ଗୁରୁତ୍ୱ ଦିଆଯାଉଥିବା ପ୍ରାଧାନ୍ୟଭୁକ୍ତ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଆଗ୍ରହୀ ଉଦ୍ୟୋଗୀ ଏବଂ ପୂର୍ବରୁ ସୁଷ୍ଠୁ ରୂପେ ପରିଚାଳନା କରି ଆସୁଥିବା ସଫଳ ଶିଳ୍ପୋଦ୍ୟୋଗୀ ଯେଉଁମାନେକି ଅତୀତରେ ଦୀର୍ଘ ପାଞ୍ଚ ବର୍ଷ ବା ତଦୁର୍ଦ୍ଧ୍ୱ ସମୟ ପାଇଁ ଋଣ ପରିଶୋଧ ପୂର୍ବକ କୌଣସି ପ୍ରକାର ବ୍ୟତିକ୍ରମ ବ୍ୟତିରେକ ତାଙ୍କ ଉଦ୍ୟୋଗର ସୁପରିଚାଳନା କରି ଆସୁଥିବେ ସେମାନଙ୍କ ପାଇଁ ତଥା ପଞ୍ଚାୟତ ସ୍ତରରେ ଥିବା ଶିଳ୍ପ ପ୍ରତିଷ୍ଠାନଗୁଡ଼ିକ ପାଇଁ ସ୍ୱତନ୍ତ୍ର ଭାବେ ଅତିରିକ୍ତ ଶତକଡ଼ା ପାଞ୍ଚ ଭାଗ ଅର୍ଥାତ୍ ସର୍ବୋଚ୍ଚ ଦଶ ଲକ୍ଷ ଟଙ୍କାର ସରକାରୀ ଅନୁଦାନ ଦିଆଯିବାର ବ୍ୟବସ୍ଥା । ମୁଖ୍ୟତଃ ଏହି ଅନୁଦାନ ବ୍ୟବସ୍ଥା ଯାହାକି ପୁଞ୍ଜି ବିନିଯୋଗ ଉପରେ ଦିଆ ଯିବାର ବ୍ୟବସ୍ଥା ଅଛି, ନିର୍ଦ୍ଧାରିତ ସମୟସୀମା ଅର୍ଥାତ୍ ଶିଳ୍ପ ପ୍ରତିଷ୍ଠାନରୁ ଉତ୍ପାଦନ ହେବାର ୩୦ ଦିନ ସମୟ ଅତିକ୍ରାନ୍ତ ହେବା ପରେ ମିଳି ପାରିବ ।

## (୨) ପ୍ରୋତ୍ସାହନ (Incentives)

ସରକାର ଅନୁଦାନ ବ୍ୟତୀତ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସ୍ୱତନ୍ତ୍ର ଭାବେ ପ୍ରୋତ୍ସାହନ (Incentive) ପ୍ରଦାନ ନିମନ୍ତେ ମଧ୍ୟ ବ୍ୟବସ୍ଥା କରିଛନ୍ତି । ସର୍ବ ପ୍ରଥମେ ରାଜ୍ୟରେ ଶକ୍ତି ଚାହିଦାର ଉତ୍କଟ ପରିସ୍ଥିତି ଜନିତ ଅଭାବକୁ ଆଖି ଆଗରେ ରଖି ଶକ୍ତି ଉତ୍ପାଦନ ନିମନ୍ତେ ପ୍ରତିଷ୍ଠା ହେଉଥିବା ଶିଳ୍ପ, ଯେଉଁସବୁ ଶିଳ୍ପ ପ୍ରତିଷ୍ଠାନ ପୂର୍ବରୁ ଥିବା ନିୟମାନୁଯାୟୀ ପରିଚାଳିତ ହେଉଥିବ ଓ ସେଥିପାଇଁ ପ୍ରାସଙ୍ଗିକ ଭାବେ ଆଇ.ପି.ଆର (I.P.R.)ଅନୁଯାୟୀ ପ୍ରୋତ୍ସାହନ ବ୍ୟବସ୍ଥା ଥିବ, ପରିବର୍ଦ୍ଧନ ଅଥବା ନବୀକରଣ ଅଥବା ମୂଳ ପ୍ରତିଷ୍ଠାନ ସହିତ ସମନ୍ୱୟ ରଖି ନୂତନ ଶାଖା ପ୍ରତିଷ୍ଠା ନିମନ୍ତେ ଏହି ପ୍ରୋତ୍ସାହନ ବ୍ୟବସ୍ଥା ଅଛି ।

ରାଜ୍ୟର ବୃହତ୍ତର ସ୍ୱାର୍ଥକୁ ଦୃଷ୍ଟିରେ ରଖି ଓ.ଏସ୍.ଏଫ.ସି./ଇ.ପି.କଲ୍ ପରି ସରକାରୀ ଉଦ୍ୟୋଗଗୁଡ଼ିକ ମଧ୍ୟ ଏହି ବ୍ୟବସ୍ଥା ଅନୁସାରେ ପ୍ରୋତ୍ସାହନ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ, ଯେତେବେଳେ ସେମାନେ ସେମାନଙ୍କର ବକେୟା ଦେୟ ସରକାରଙ୍କୁ ପଇଠ କରିଦେବେ ।

ବିକ୍ରିକର ବ୍ୟବସ୍ଥାରେ ରିହାତି ବ୍ୟବସ୍ଥା ମଧ୍ୟ ଅନୁରୂପ ଭାବେ ନୂତନ ଶିଳ୍ପ ପ୍ରତିଷ୍ଠା ଦିଗରେ ଯଥେଷ୍ଟ ସହାୟକ ହେବା ପାଇଁ ସରକାରୀ ସ୍ତରରେ ବ୍ୟବସ୍ଥା ଅଛି ।

ଶକ୍ତି ଉତ୍ପାଦନ ନିମନ୍ତେ ଅଗ୍ରାଧିକାର ଦିଆଯାଇ ଏହାର ଯନ୍ତ୍ରାଂଶ ଆଦିର ପରିବହନ କ୍ଷେତ୍ରରେ ପ୍ରଚଳିତ ଅକ୍ଟ୍ରୟ କରର ରିହାତି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଏହା ଛଡ଼ା ନୂତନ ଭାବେ ଶିଳ୍ପ ପ୍ରତିଷ୍ଠାନ ସ୍ଥାପନ ନିମନ୍ତେ ମଧ୍ୟ ପ୍ରାଥମିକ ପର୍ଯ୍ୟାୟରେ ବିଦ୍ୟୁତ୍ ଶୁଳ୍କ ଉପରେ ଯଥା ସମ୍ଭବ ରିହାତି ବ୍ୟବସ୍ଥାର ପ୍ରୋତ୍ସାହନ କମ୍ ଆଶା ଉଦ୍ଦୀପକ ନୁହେଁ । ବିଶେଷ ଭାବେ ପାରମ୍ପରିକ ରୀତିରେ ଉତ୍ପାଦିତ ଶକ୍ତି ଭିନ୍ନ ଅଣ–ପାରମ୍ପରିକ ରୀତିରେ ଉତ୍ପାଦିତ ଶକ୍ତି ସାମର୍ଥ୍ୟକୁ ବିନିଯୋଗ କରି ଯେଉଁ ସବୁ ଶିଳ୍ପ ପ୍ରତିଷ୍ଠା କରାଯିବ, ସେଥି ପାଇଁ ମୂଳ ପୁଞ୍ଜି ବିନିଯୋଗ ଉପରେ ଶତକଡ଼ା ୧୦ ଭାଗ ଅର୍ଥାତ୍ ସର୍ବୋଚ୍ଚ ୧୦ ଲକ୍ଷ ଟଙ୍କାର ପୁଞ୍ଜି ପର୍ଯ୍ୟନ୍ତ ସରକାରୀ ଅନୁଦାନର ବ୍ୟବସ୍ଥା ଅଣ–ପାରମ୍ପରିକ ଶକ୍ତିର ଉପଯୋଗ ନିମନ୍ତେ କ୍ଷେତ୍ର ପ୍ରଶସ୍ତ କରି ନିଶ୍ଚିତ ଭାବେ ରାଜ୍ୟରେ ଦ୍ରୁତ ଶିଳ୍ପାୟନ ପ୍ରତିଷ୍ଠାରେ ସହାୟକ ବୋଲି ଆଶା କରାଯାଏ ।

ସରକାର ନୂତନ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ନିର୍ଦ୍ଧାରିତ ଶ୍ରେଣୀଭୁକ୍ତ ଶିଳ୍ପାଞ୍ଚଳ ("କ" "ଖ" ଓ "ଗ" ଶ୍ରେଣୀ ଭୁକ୍ତ)ମାନଙ୍କରେ ମଧ୍ୟ ସରକାରଙ୍କ ତରଫରୁ ରିହାତି ଦରରେ ଭୂମି ଯୋଗାଣ ଓ ଯୋଗାଇ ଦିଆଯିବା ଭୂମି ଉପରେ ଅତି ଅଳ୍ପ ହାରରେ ରେଣ୍ଟର ବ୍ୟବସ୍ଥା ମଧ୍ୟ କରାଯାଇଛି । ଏତଦ୍‌ଭିନ୍ନ ଇଡ୍‌କୋ ତରଫରୁ ନିର୍ମିତ ହେଉଥିବା ଶିଳ୍ପାଞ୍ଚଳ ଓ ଗୃହ ପାଇଁ ସରକାରୀ ଅନୁଦାନ ବ୍ୟବସ୍ଥା ଯଥାକ୍ରମେ "କ" ପର୍ଯ୍ୟାୟ ପାଇଁ ଶତକଡ଼ା ୩୫ ଭାଗ, "ଖ" ପର୍ଯ୍ୟାୟ ପାଇଁ ଶତକଡ଼ା ୨୫ ଭାଗ ଓ "ଗ" ପର୍ଯ୍ୟାୟ ପାଇଁ ଶତକଡ଼ା ୧୫ ଭାଗ କ୍ଷୁଦ୍ର–ଶିଳ୍ପ ପ୍ରତିଷ୍ଠା ନିମନ୍ତେ ପଥ ସୁଗମ ଅବଶ୍ୟ କରିବ । ନିର୍ଦ୍ଧାରିତ ଷ୍ଟାମ୍ପ ଡ୍ୟୁଟି ଓ ରେଜିଷ୍ଟ୍ରେସନ ଫିସ୍ ବାବଦରେ ମଧ୍ୟ ସରକାର କେତେକ ସ୍ୱତନ୍ତ୍ର ସୁବିଧା–ସୁଯୋଗ ରଖି ନୂତନ ଶିଳ୍ପ ପ୍ରତିଷ୍ଠାର ଆଶାକୁ ଶିଳ୍ପୋଦ୍ୟୋଗୀମାନଙ୍କ ପାଇଁ ପୁଷ୍ଟ କରିବାର ବ୍ୟବସ୍ଥା କରିଛନ୍ତି ।

ରାଜ୍ୟରେ ପର୍ଯ୍ୟଟନ ଶିଳ୍ପ ଓ ସିନେମା ଶିଳ୍ପର ମୌଳିକ ବ୍ୟବସ୍ଥାରେ ଯଥେଷ୍ଟ ପରିବର୍ତ୍ତନ କରି ଏହାକୁ ଅଧିକ ଲାଭଜନକ ଶିଳ୍ପର ମର୍ଯ୍ୟାଦା ଦେବା ସଙ୍ଗେ ସଙ୍ଗେ ଏଥିପାଇଁ ନୂତନ ଉଦ୍ୟମ ସୃଷ୍ଟି କରିବା ପାଇଁ ସରକାରଙ୍କ ବିଭିନ୍ନ ପଦକ୍ଷେପ ଏ କ୍ଷେତ୍ରରେ ଉଦ୍‌ଯୋଗୀ ଉଦ୍ୟୋଗୀଙ୍କୁ ନିଶ୍ଚିତ ଭାବେ ଆକର୍ଷଣ କରିବ । ଏଥି ପାଇଁ ମଧ୍ୟ ସରକାର ସ୍ୱତନ୍ତ୍ର ଅନୁଦାନ ଓ ରିହାତିର ସୁବିଧା ସୁଯୋଗ ରଖିଛନ୍ତି ।

ବିଶେଷ ଭାବେ ରାଜ୍ୟରେ ଦ୍ରୁତ ଶିଳ୍ପାୟନ ପ୍ରତିଷ୍ଠା ପ୍ରତି ସରକାର ଯେତେ ପରିମାଣରେ ସଚେତନ ଅନୁରୂପ ଭାବେ ଉତ୍ପାଦିତ ସାମଗ୍ରୀର ବଜାର ସୁବିଧା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ନିର୍ଦ୍ଧାରିତ ମୂଲ୍ୟରେ ସେ ସବୁର ବିକ୍ରୟ ବ୍ୟବସ୍ଥା ପ୍ରତି ମଧ୍ୟ ସରକାର ସଚେଷ୍ଟ ଅଛନ୍ତି । ସୁତରାଂ ଉତ୍ପାଦିତ ସାମଗ୍ରୀର ବଜାର ସୃଷ୍ଟି କରିବା, ରାଜ୍ୟ ବାହାରର ବଜାରରେ ସେ ସବୁର ବିକ୍ରୟ ବ୍ୟବସ୍ଥା କରିବା ତଥା ରପ୍ତାନୀଯୋଗ୍ୟ ସାମଗ୍ରୀର ରପ୍ତାନୀ ନିମନ୍ତେ ମଧ୍ୟ ସରକାର ବିଧିବଦ୍ଧ ବ୍ୟବସ୍ଥା ଗ୍ରହଣ କରିଛନ୍ତି ।

ପରିଶେଷରେ ସରକାରଙ୍କ ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ (Directorate of Export Promotion & Marketing), ଜିଲ୍ଲାସ୍ତରରେ ଥିବା ଜିଲ୍ଲା ଶିଳ୍ପ କେନ୍ଦ୍ରର ଦପ୍ତର (District Industries Centre)

[illegible] ୯

ସେମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ନୂତନ ଶିଳ୍ପ ପ୍ରତିଷ୍ଠାନଗୁଡ଼ିକୁ ଆବଶ୍ୟକୀୟ ବୈଷୟିକ ସହାୟତା ଦେବା ସଙ୍ଗେ ସଙ୍ଗେ ଉତ୍ପାଦିତ ସାମଗ୍ରୀର ବିକ୍ରୟ ବ୍ୟବସ୍ଥା ନିମନ୍ତେ ସରକାରଙ୍କ ଦ୍ୱାରା ଦାୟିତ୍ୱ ବହନ କରିବାର ବ୍ୟବସ୍ଥା ରହିଛି । ଏତଦ୍‌ଭିନ୍ନ ରାଜ୍ୟର ଇପିକଲ ସଂସ୍ଥା, ଓ:ଏସ୍:ଏଫ୍:ସି:, ଓ:ଏସ୍:ଇ:ଡି:ସି: (Orissa State Electronics Development Corporation ପ୍ରମୁଖ ଦାୟିତ୍ୱ ଗ୍ରହଣ କରି ରାଜ୍ୟରେ ଏହି ଦ୍ରୁତ ଶିଳ୍ପାୟନ, ତଥା ସେ ସମ୍ପର୍କରେ ଆବଶ୍ୟକୀୟ ଆଇନ୍‌ଗତ, ବୈଷୟିକ ତଥା ଅର୍ଥ ଲଗାଣ ସହାୟତା ନିମନ୍ତେ ଯୋଗାଯୋଗର ମାଧ୍ୟମ ରୂପେ କାର୍ଯ୍ୟ କରିବେ ଏବଂ ରାଜ୍ୟର ଶିଳ୍ପ ବିଭାଗ ମଧ୍ୟ ଏ କ୍ଷେତ୍ରରେ ନୂତନ ଶିଳ୍ପ ଉଦ୍ୟୋଗୀମାନଙ୍କୁ ଆବଶ୍ୟକୀୟ ସହାୟତା ଯୋଗାଇ ଦେବାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ସବୁ ସମୟ ନିମନ୍ତେ ଏହାର ପଦାଧିକାରୀମାନେ ଜାଗ୍ରତ ଅଛନ୍ତି ।

ସୁତରାଂ, ଶେଷରେ ମୁଁ ଆଶା ଓ ବିଶ୍ୱାସ ପୋଷଣ କରେକି, ଏକଦା ନିଜ ଉଦ୍ୟମରେ ରାଜ୍ୟରେ ଶିଳ୍ପ ପ୍ରସାରର ସ୍ୱପ୍ନ ଦେଖୁଥିବା ଓ ଯୁବ ବୟସରେ ନିଜର ବ୍ୟକ୍ତିଗତ ଉଦ୍ୟମରେ ପ୍ରତିଷ୍ଠା କରିଥିବା ଚୌଦ୍ୱାର୍ ଲୁଗାକଲ, କଳିଙ୍ଗ ଟ୍ୟୁବ୍‌ସ ପରି ଶିଳ୍ପ ପ୍ରତିଷ୍ଠାନର ଶିଳ୍ପୋଦ୍ୟୋଗୀ, ବାସ୍ତବବାଦୀ ଶିଳ୍ପୀ ବର୍ତ୍ତମାନର ଜନପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉତ୍ତର ବୟସରେ ଏହି ନୂତନ ଶିଳ୍ପନୀତି ରାଜ୍ୟକୁ ଦ୍ରୁତ- ଶିଳ୍ପାୟନ ପ୍ରତିଷ୍ଠା ଦିଗରେ ଆଗେଇ ନେଇ ନିକଟ ଭବିଷ୍ୟତରେ ସମଗ୍ର ରାଜ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅଧିଷ୍ଠିତ କରାଇବ । ଏହି ପରିପ୍ରେକ୍ଷୀରେ ତାଙ୍କର ବ୍ୟକ୍ତିଗତ ନିଷ୍ଠା ଓ ଅଧ୍ୟବସାୟ ସହିତ ଦୂରଦୃଷ୍ଟିତା ଯୋଗୁଁ ରାଜ୍ୟରେ ପ୍ରତିଷ୍ଠା ହେଉଥିବା ପାରାଦ୍ୱୀପ ବନ୍ଦର, ରାଉରକେଲାସ୍ଥ ଲୌହଇସ୍ପାତ୍ କାରଖାନାର ପଛଭୂମିରେ ଆନ୍ତରିକ ଉଦ୍ୟମ ଏ ଜାତି କେବେ ବି ଭୁଲି ପାରିବ ନାହିଁ । ଆଭ୍ୟନ୍ତରୀଣ ସମ୍ବଳ ସହିତ ପ୍ରବାସୀ ଭାରତୀୟ ଶିଳ୍ପପତିଙ୍କ ସହାୟତାରେ ରାଜ୍ୟରେ ଅନ୍ୟ ଏକ ଇସ୍ପାତ୍ କାରଖାନା ପ୍ରତିଷ୍ଠା କରିବା ପାଇଁ ସେ ନିକଟରେ ଯେଉଁ ଆଗ୍ରହ ଓ ନିଷ୍ଠା ପ୍ରଦର୍ଶନ କରି ନିଜସ୍ୱ ଚେଷ୍ଟା ଅବ୍ୟାହତ ରଖିଛନ୍ତି ତାହା ମଧ୍ୟ ରାଜ୍ୟବାସୀଙ୍କ ପାଇଁ ଉଣା ଆଶ୍ୱାସନା ଓ ଆଶାପ୍ରୁଷ୍ଟିକାରୀ ପଦକ୍ଷେପ ନୁହେଁ । ତେଣୁ ମୁଁ ଏତିକି କହିପାରେ ଯାହା କୁହାଯାଏ "ଇତିହାସ ତା'ର ପୁନରାବୃତ୍ତି କରେ" History repeats it-self) ସେହି ନିୟମରେ ଦିନ ଆସିବ ଅମର ଲୁପ୍ତ ଗୌରବ ଗରିମା ଫେରିଆସିବ ଓ ଏ ଜାତି ଦିନେ ପ୍ରମାଣ କରି ଦେଖାଇଦେବ, ଏହାର କଳା-କୌଶଳ, ନିଷ୍ଠା, ସାଧନାର ଶେଷ ନାହିଁ । ଏହି ପରିପ୍ରେକ୍ଷୀରେ ଏ ଜାତିର କର୍ଣ୍ଣଧାର ଜଗନ୍ନାଥଙ୍କ କରୁଣାକୁ ପାଥେୟ କରି, ଆଶା ଓ ବିଶ୍ୱାସ ନିଶ୍ଚିତ ଭାବେ ଏ ଜାତିର ପୁନରୁତ୍ଥାନ ଅବଶ୍ୟ ଘଟିବ ଓ ଏହା ଅନିବାର୍ଯ୍ୟ ମଧ୍ୟ ।

---

ଶିଳ୍ପ ରାଷ୍ଟ୍ରମନ୍ତ୍ରୀ, ଓଡ଼ିଶା,
ଭୁବନେଶ୍ୱର ।



ଭୁବନେଶ୍ୱର ରାମକୃଷ୍ଣ ମିଶନଠାରେ ଅନୁଷ୍ଠିତ ସ୍ୱାମୀ ବିବେକାନନ୍ଦ ପରିକ୍ରମା ଶତବାର୍ଷିକୀ ପାଳନ ଉତ୍ସବରେ ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀଙ୍କ ଉଦ୍‌ବୋଧନ ।

# ପ୍ରାଚୀନ ଓଡ଼ିଶାର ନୌ-ବାଣିଜ୍ୟ ପରମ୍ପରା ଓ ବୋଇତ ଯାତ୍ରା

● ଡଃ ଚନ୍ଦ୍ରଭାନୁ ପଟେଲ୍

ମୌର୍ଯ୍ୟ ମାନଙ୍କ ପୂର୍ବରୁ କଳିଙ୍ଗ ଏକ ଶକ୍ତିଶାଳୀ ରାଜ୍ୟ ରୂପେ ପରିଚିତ ଥିଲା । ସେତେବେଳେ କଳିଙ୍ଗ ୩ ପ୍ରଦେଶ ଯଥାଃ-(୧) ପ୍ରାଚୀ କଳିଙ୍ଗ (୨) ଗଙ୍ଗାରାଢ଼ କଳିଙ୍ଗ ଓ (୩) ମଗ କଳିଙ୍ଗ ନାମରେ ବିଭକ୍ତ ହୋଇଥିଲା । ପ୍ରାଚୀ ବା ପ୍ରାଚ୍ୟ କଳିଙ୍ଗ ଗୋଦାବରୀ ଠାରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ । ଗଙ୍ଗ ରାଢ଼ କଳିଙ୍ଗ ସୁବର୍ଣ୍ଣରେଖାଠାରୁ ଗଙ୍ଗା ନଦୀ ପର୍ଯ୍ୟନ୍ତ ଓ ମଗ କଳିଙ୍ଗ ଗଙ୍ଗାନଦୀର ମୁହାଣ ଠାରୁ ଦକ୍ଷିଣ ପୂର୍ବ ଦ୍ୱୀପ ପୁଞ୍ଜର ଶେଷ ସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଇତିହାସରୁ ଜଣାପଡେ ଯେ ଏହି ପୂର୍ବାଞ୍ଚଳ ଦ୍ୱୀପପୁଞ୍ଜ ସ୍ଥିତ ଅଧୁନା ଇଣ୍ଡୋଚୀନ, ଇଣ୍ଡୋନେସିଆ, ମଳୟ ଓ ବ୍ରହ୍ମଦେଶ ଆଦି ଉତ୍କଳର ଉପନିବେଶ ତଥା ବାଣିଜ୍ୟ ପେଣ୍ଠ ଥିଲା ।କଳିଙ୍ଗମାନେ ଦେଶ ଦେଶାନ୍ତର, ଦ୍ୱୀପ ଦ୍ୱୀପାନ୍ତର ସହିତ ବିସ୍ତାର ବାଣିଜ୍ୟ କରି ଅମାପ ଧନ ସମ୍ପଦ ଦେଶକୁ ଆଣୁ ଥିଲେ । କହିବା ବାହୁଲ୍ୟ କଳିଙ୍ଗ-ବାସୀ ଅର୍ଣ୍ଣବ ପୋତ ବିଦ୍ୟାରେ ଓ ପାରେ ସମୁଦ୍ର ବାଣିଜ୍ୟରେ ଅଦ୍ୱିତୀୟ କୃତିତ୍ୱ ଅର୍ଜନ କରିଥିଲେ ।ଉପନିବେଶ ସ୍ଥାପନ କରିବା ସହିତ ସେମାନେ କଳିଙ୍ଗର ସଭ୍ୟତା, ସଂସ୍କୃତି, ଧର୍ମ ଓ ଦର୍ଶନ ଆଦିର ପ୍ରସାର କରିବା ସଙ୍ଗେ ସଙ୍ଗେ ସେଠାକାର ପ୍ରାଚୀନ ଅଧିବାସୀଙ୍କ ଭିତରେ ଜ୍ଞାନାଲୋକ ବିତରଣ କରିଥିଲେ । ତେଣୁ ସେଠାରେ ଆମ ସଂସ୍କୃତିର ଅନେକ ଅଲିଭା ଛାପ ଏବେ ସୁଦ୍ଧା ଦେଖିବାକୁ ମିଳେ ।

## ପ୍ରାଚୀନ ପୋତାଶ୍ରୟ

ପ୍ରାଚୀନ କାଳରେ କଳିଙ୍ଗ ଉପକୂଳ ତଥା ନଦୀ ମୁହାଣ ମାନଙ୍କରେ ଅନେକ ବନ୍ଦର ଥିବାର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଜଣାପଡେ । ଚିଲିକା କୂଳରେ ପାଲୁର ଏକ ପ୍ରଧାନ ବନ୍ଦର ଥିଲା । ଗ୍ରୀକ୍ ନାବିକ ଟୋଲେମୀ ଏଠାରୁ ମଳୟ ଦ୍ୱୀପକୁ ବାଣିଜ୍ୟ ପଥରେ ଯାଇଥିବାର ତାଙ୍କ ସମୁଦ୍ର ଭ୍ରମଣ ବୃତାନ୍ତରେ ବର୍ଣ୍ଣନା କରିଛନ୍ତି । ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ ଚିଲିକା ହ୍ରଦରେ ସହସ୍ର ପୋତ ଭାସୁ ଥିବାର ବର୍ଣ୍ଣନା କରାଯାଇଛି ।

"ଚିଲିକା ହ୍ରଦେ ସହସ୍ରଂଷୁ
ସୁପୋତା ଜଳଗାମିନଃ" ।

ଚନ୍ଦ୍ରଭାଗା ନଦୀ ସେତେବେଳେ କୋଣାର୍କ ନିକଟରେ ସମୁଦ୍ରରେ ମିଶିଥିଲା । ଟୋଲେମୀ ଏହି କୋଣାର୍କ ବନ୍ଦରକୁ କନ୍ନଗର ବା କୋଣନଗର ବୋଲି ବର୍ଣ୍ଣନା କରିଛନ୍ତି । ଏଥିରୁ ସ୍ପଷ୍ଟ ଜଣାପଡ଼େଯେ ପ୍ରାଚୀନ କାଳରେ କୋଣାର୍କ ଏକ ବିଶାଳ ନଗର ତଥା ପୋତାଶ୍ରୟ ଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ଏବେ ଅନେକ ବହିର୍ଦେଶୀୟ ଦ୍ରବ୍ୟ ଉପାଦାନ ଏଠାରୁ ଆବିଷ୍କୃତ ହୋଇଛି । ଅନ୍ୟ ଏକ ବନ୍ଦର ପୁରୀଠାରେ ଥିଲା । ଏହା ଆଦାମାସ ଓ ଡେଲିଟାଲ ନାମରେ ବିଦେଶୀ ପର୍ଯ୍ୟଟକ ମାନଙ୍କ ଲେଖନୀରେ ବର୍ଣ୍ଣିତ । ଅଧୁନା ମେଦିନୀପୁର ଜିଲ୍ଲାର ତାମ୍ରଲିପ୍ତ ବନ୍ଦର ମଧ୍ୟ ପ୍ରାଚୀନ କଳିଙ୍ଗରେ ଥିଲା ।

ଟୋଲେମୀ ମହାନଦୀକୁ ମନଦ ବୋଲି ଅଭିହିତ କରିଛନ୍ତି ଓ ଏହାର କୂଳରେ ସମ୍ବଲକ (ସମ୍ବଲପୁର) ବନ୍ଦର ନଗର ଥିବାର ଉଲ୍ଲେଖ ଅଛି । ତାଙ୍କ ବର୍ଣ୍ଣନାରେ ଦୋସରା ନାମକ ଆଉ ଏକ ବନ୍ଦର ମୁଣ୍ଡା ଓ ଶବର ମାନଙ୍କର ରାଜ୍ୟ ସମ୍ବଲପୁରଠାରେ ଥିବାର ଜଣାପଡେ । ଏହା ତେଲ ନଦୀ କୂଳରେ ଆଧୁନିକ ବଲାଙ୍ଗୀର ଜିଲ୍ଲାର ଦୋଷରା ବୋଲି ଚିହ୍ନିତ କରାଯାଇଛି । ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଦ୍ୱାରା ପ୍ରାଚୀନ ସଭ୍ୟତାର ଅନେକ ସ୍ମୃତିଚିହ୍ନ ଏବେ ଏଠାରେ ଠାବ କରାଯାଇଛି । ବୋଧହୁଏ ପ୍ରାଚୀନ କାଳରେ ଦୋଷରା କୋଶଳର ରାଜଧାନୀ ଓ ପ୍ରସିଦ୍ଧ ବାଣିଜ୍ୟ କେନ୍ଦ୍ର ଥିଲା । ବୌଦ୍ଧ ଜାତକ କାହାଣୀରେ ମଧ୍ୟ ତେଲବାହ ନଦୀରେ ବାଣିଜ୍ୟ ବ୍ୟବସାୟ କାର୍ଯ୍ୟ ଚାଲିଥିବାର ବର୍ଣ୍ଣନା ରହିଛି । ଏହି ତେଲ ନଦୀ କୋରାପୁଟ ଓ ବସ୍ତର ଜିଲ୍ଲାର ସୀମାବର୍ତ୍ତୀ ତେଲବାଣଠାରୁ ବାହାରି କଳାହାଣ୍ଡି ବାଟେ ସୋନପୁରଠାରେ ମହାନଦୀରେ ମିଶିଛି । ପ୍ରାଚୀନ ସୁକ୍ତିମତି (ସୁକତେଲ) ନଦୀ କୂଳରେ ସୁକ୍ତିମତିପୁର ନାମରେ ଆଉ ଏକ ବାଣିଜ୍ୟ ପେଣ୍ଠ ଥିବାର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣରୁ ଜଣାପଡେ । ବଲାଙ୍ଗୀର ଜିଲ୍ଲାର ସକମା ଗ୍ରାମ ସୁକ୍ତିମତିପୁର ଭାବରେ ଏବେ ଚିହ୍ନିତ ହୋଇଛି ।

## ପ୍ରାଚୀନ ଜଳପଥ

ଅନ୍ତର୍ଦେଶୀୟ ଜଳପଥ ଦ୍ୱାରା ପଣ୍ୟ ସଂଗ୍ରହ ଓ ବିନିମୟ କରାଯାଇପାରେ । ସମୁଦ୍ର ବାଣିଜ୍ୟ କରାଯାଉଥିଲା । ତାମ୍ରଲିପ୍ତରୁ ଦାମୋଦର, ରୂପନାରାୟଣ ଓ ଗଙ୍ଗାବାଟେ ।

ଗଙ୍ଗାରାଢ଼ ଅଞ୍ଚଳରେ ଦେଶୀୟ ବାଣିଜ୍ୟ ଚାଲୁଥିଲା । ନୌକାଯୋଗେ ପଣ୍ୟ ହସ୍ତିନା ନଗରୀ ପର୍ଯ୍ୟନ୍ତ ଯାଉଥିଲା । ଧାମରା ବନ୍ଦରରୁ ବ୍ରାହ୍ମଣୀ, ବୈତରଣୀ ଓ ଶାଳନ୍ଦୀ ବାଟେ ଉତ୍କଳ ଅଞ୍ଚଳରେ ବ୍ୟବସାୟ ଚାଲୁଥିଲା । ବାଲେଶ୍ୱର ପ୍ରଭୃତିର ପଣ୍ୟ ସୁବର୍ଣ୍ଣରେଖାବାଟେ ଆସୁଥିଲା ।

ଗଞ୍ଜାମ ଶବ୍ଦର ଅର୍ଥ ପଣ୍ୟ ଭୂମି । ପ୍ରାଚୀନ କାଳରେ ଗଞ୍ଜାମ ସମୃଦ୍ଧ ଓ ବିତ୍ତବଶାଳୀ ଥିଲା । ଏଠାକାର ପଣ୍ୟ କାରବାର ଋଷିକୁଲ୍ୟା ଓ ଗୋଦାବରୀ ଜଳପଥ ସାହାଯ୍ୟରେ କରାଯାଉଥିଲା ।

କୋଶଳ ରାଜ୍ୟରେ ବ୍ୟବସାୟ ବିନିମୟର ପ୍ରଧାନ ଜଳପଥ ଥିଲା ମହାନଦୀ । ପୂର୍ବେ ଏହା ଉତ୍ପତ୍ତିସ୍ଥଳଠାରୁ ସୁନାବ୍ୟା ଥିଲା । ମରହଟ୍ଟାମାନେ ନାଗପୁରରୁ କଟକକୁ ଏହି ଜଳପଥ ବାଟେ ସୈନ୍ୟ ଓ ଯୁଦ୍ଧ ସାମଗ୍ରୀ ତଥା ତୋପ କମାଣ ଆଦି ନିଆ ଅଣା କରୁଥିଲେ । ମହାନଦୀର ଉତ୍ପତ୍ତି ସ୍ଥଳଠାରୁ କଟକ ପର୍ଯ୍ୟନ୍ତ ମହାନଦୀ କୂଳରେ ବଡ ବଡ ବାଣିଜ୍ୟ ପେଣ୍ଠ ସହର ସବୁ ଗଢି ଉଠିଥିଲା । ଏବେ ସୁଦ୍ଧା ମହାନଦୀକୂଳରେ ଶ୍ରୀ ପୁର, ରାଜିମ, ଶୌରିନାରାୟଣ, ପ୍ରଭୃତି ନଗର ଅଧୁନା ମଧ୍ୟପ୍ରଦେଶ ସହରରେ ରହିଛି । ଓଡ଼ିଶାର ପଦ୍ମପୁର, ଚିଲିକା, ସମ୍ବଲପୁର, ସୋନପୁର, ଚରଦା, ବୌଦ୍ଧ, କଣ୍ଟିଲୋ ଓ କଟକ ଆଦି ପ୍ରସିଦ୍ଧ ନଗର ଓ ଶିଳ୍ପ ବାଣିଜ୍ୟ କେନ୍ଦ୍ର ଥିଲା ।

ସୋନପୁରରୁ ତେଲନଦୀବାଟେ ତୋଶରା ପର୍ଯ୍ୟନ୍ତ ପଣ୍ୟ ଯାଉଥିଲା । ସୁକତେଲ ନଦୀପଥରେ ପ୍ରାଚୀନ ସୁକ୍ତିମତୀପୁର ଅର୍ଥାତ୍ ଆଧୁନିକ ସକମା ଅଞ୍ଚଳ ପର୍ଯ୍ୟନ୍ତ ଜଳ ପଥରେ ବାଣିଜ୍ୟ କାରବାର ଚାଲୁଥିଲା । ଏପରିକି ମରହଟ୍ଟା ରାଜତ୍ୱକାଳରେ ପୁରୀ ଯାତ୍ରୀମାନେ ସମ୍ବଲପୁରରୁ କଟକ ପର୍ଯ୍ୟନ୍ତ ନୌକା ଚଢ଼ି ଯାଉଥିବାର ନଜିର ରହିଛି । ନଦୀଗୁଡ଼ିକ ଅନାବ୍ୟା ହେବା ଋତୁରେ ବଣିକମାନେ ସ୍ଥଳପଥରେ ବ୍ୟବସାୟ କରୁଥିଲେ । ଭାରବାହି ମନୁଷ୍ୟ, ଗୋରୁଗାଡ଼ି, ଘୋଡ଼ା, ଗଧ ଓ ବଳଦ ପିଠିରେ ପଣ୍ୟ ସ୍ଥାନାନ୍ତରିତ ହେଉଥିଲା । ବେଳେବେଳେ ବଣିକମାନେ ଦଶ ବାର ହଜାର ପଶୁଙ୍କୁ ଘେନି ଏକତ୍ର ଗମନାଗମନ କରୁଥିଲେ । ସେମାନଙ୍କୁ ବଞ୍ଜାରା ଦଳ କୁହାଯାଉଥିଲା । ବାଣିଜ୍ୟ ଶବ୍ଦରୁ ବଞ୍ଜାରା ଶବ୍ଦ ଆନିତ । ମୋଗଲ ଯୁଗୀୟ ପାଶ୍ଚାତ୍ୟ ପର୍ଯ୍ୟଟକମାନେ ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ଅନେକ ବଞ୍ଜାରା ଦଳ ଦେଖିଥିବାର ବର୍ଣ୍ଣନା କରିଛନ୍ତି ।

ସଂସ୍କୃତ ସାହିତ୍ୟରେ ମଧ୍ୟ ଏମାନଙ୍କର ବର୍ଣ୍ଣନା ଦେଖିବାକୁ ମିଳେ । ମହାଭାରତରୁ ଜଣା ଯାଏ ଯେ ଚେଦି ରାଜାମାନେ ଏ ପ୍ରକାର ବାଣିଜ୍ୟରେ ମୂଳଧନ ଖଟାଉଥିଲେ । ଦଳେ ବଣିକ ତାଙ୍କ ପକ୍ଷରୁ ଦେଶ ବିଦେଶରେ ବାଣିଜ୍ୟ କରୁଥିଲେ । ମହାଭାରତ ଏମାନଙ୍କୁ "ସାର୍ଥ" ଓ ଦଳପତିଙ୍କୁ "ସାର୍ଥବାହ" ବୋଲି ବର୍ଣ୍ଣନା କରିଛି । ବଣିକମାନେ ନିଘଞ୍ଚ ଜଙ୍ଗଲ ବାଟେ ଦଳବଦ୍ଧ ହେଇ ଯାତ୍ରା କରୁଥିଲେ । ପଣ୍ୟ ସଙ୍ଗେ ବହୁ ମୂଲ୍ୟ ରତ୍ନ ମଧ୍ୟ ରହୁଥିଲା । ସ୍ଥଳ ବିଶେଷରେ ହସ୍ତି, ଅଶ୍ୱ ଓ ଯାନ ସାହାଯ୍ୟରେ ଜିନିଷ ସ୍ଥାନାନ୍ତରିଣ ହେଉଥିଲା । ପ୍ରାଚୀନ ଭାରତରେ ଅନେକ ସାର୍ଥବାହ ପଥ ସବୁଥିଲା । ସାଞ୍ଚି, ପିତଲ ଖୋରା ଆଦି ଧାର୍ମିକ ସ୍ଥଳ ପ୍ରାଚୀନ ସାର୍ଥବାହ ପଥ ପାର୍ଶ୍ୱରେ ଗଢ଼ି ଉଠିଥିଲା ।

ମହାନଦୀ ନରାଜଠାରେ ୩ ଭାଗରେ ବିଭକ୍ତ । ପ୍ରଧାନ ଶାଖା ଦୟାର ପ୍ରଶାଖା ପ୍ରାଚୀ ବା କୁଶଭଦ୍ରା ଓ ଏହାର ପ୍ରଶାଖା ଭାର୍ଗବୀ ଗଭୀର ଓ ସୁନାବ୍ୟା ଥିଲା । ଏବେ ବାଲୁକା ରାଶିରେ ପୋତି ହୋଇ ନଦୀର ଅସ୍ତିତ୍ୱ ପର୍ଯ୍ୟନ୍ତ ନାହିଁ । ପ୍ରଧାନ ସ୍ରୋତ ଦୟା ନରାଜଠାରୁ ଚିଲିକା ପର୍ଯ୍ୟନ୍ତ ଥିଲା । ଭାର୍ଗବୀ ପୁରୀ ନିକଟରେ ସମୁଦ୍ରରେ ପଡ଼ିଥିଲା । କୁଶଭଦ୍ରା ଭୁବନେଶ୍ୱରର ଦକ୍ଷିଣ ପାର୍ଶ୍ୱ ଦେଇ କୋଣାର୍କ ନିକଟରେ ସମୁଦ୍ରରେ ମିଶି ଥିଲା । ସେ ସମୟରେ ଚିଲିକା, ପୁରୀ ଓ କୋଣାର୍କ ପ୍ରଧାନ ପୋତାଶ୍ରୟ ରୂପେ ଗଢ଼ି ଉଠିଥିଲା ।

## ଓଡ଼ିଶାର ସାଧବ

"ସାର୍ଥବାହ" ଶବ୍ଦରୁ ଓଡ଼ିଶାରେ ସାଧବ ଶବ୍ଦର ସୃଷ୍ଟି ହୋଇଛି । ସାଧବମାନେ ଧନୀ ଥିଲେ । ବାଣିଜ୍ୟ କାରବାର ପାଇଁ ସେମାନଙ୍କ ପାଖରେ ବିପୁଳ ବଳ, ପୁଞ୍ଜି ଓ ସମ୍ପତ୍ତି ଥିଲା । ସେମାନେ ବ୍ୟକ୍ତିଗତ ପ୍ରଚେଷ୍ଟା ବା ସଙ୍ଘବଦ୍ଧ ଭାବରେ ଏକାଧିକ ବୋଇତ ଚଳାଉଥିଲେ । ଏମାନଙ୍କ ସମ୍ପର୍କରେ ଏବେ ଅନେକ କିମ୍ବଦନ୍ତି ଓ କାହାଣୀ ଗଢ଼ି ଉଠିଛି । ଅଦ୍ୟାବଧି ପ୍ରଚଳିତ "ସାଧବ ଘର" ଓ "ସାଧବ ବୋହୂ" କଥାମାନଙ୍କୁ ସାଧବମାନଙ୍କର ଓଡ଼ିଆ ସମାଜରେ ବିଶିଷ୍ଟ ସ୍ଥାନ ଓ ପ୍ରତିପତି ଥିବାର ସୂଚନା ମିଳେ ।

ସାଧବମାନେ ବଙ୍ଗୋପ ସାଗରରେ ବାଣିଜ୍ୟ କାରବାର କରୁଥିଲେ । କଳିଙ୍ଗ ସାଧବମାନେ ଏହାକୁ କଳିଙ୍ଗ ସାଗର ନାମରେ ନାମିତ କରିଥିଲେ । ପୂର୍ବଭାରତୀୟ ଦ୍ୱୀପ ପୁଞ୍ଜର ବାଣିଜ୍ୟରେ କଳିଙ୍ଗର ରାଜ ବଂଶମାନେ ମଧ୍ୟ ସଂଶ୍ଳିଷ୍ଟ ଥିବାର ଜଣାଯାଏ । ଚେଦିରାଜାମାନେ ଏହି ବାଣିଜ୍ୟ ସମ୍ପର୍କରେ ଆସି ପ୍ରାଚୀ କଳିଙ୍ଗ, ଗଙ୍ଗା ରାଢ଼ କଳିଙ୍ଗ ଓ ମଗ କଳିଙ୍ଗରେ ତିନିକିଆ ରାଜ୍ୟ ସ୍ଥାପନ କରିଥିଲେ । ଶୈଳେନ୍ଦ୍ର ବା ଶୈଳୋଦ୍ଭବ ରାଜାମାନେ ପୂର୍ବ ଭାରତୀୟ ଦ୍ୱୀପ ପୁଞ୍ଜକୁ ଯାଇ ପାରେ ସମ୍ଭୁ ଶୈଳେନ୍ଦ୍ର ସାମ୍ରାଜ୍ୟ ସ୍ଥାପନା କରିଥିଲେ ।

ବର୍ଷସାରା ସଂଗୃହିତ ପଣ୍ୟ ସମ୍ଭାରର କାର୍ତ୍ତିକ ଅମାବାସ୍ୟା ଦୀପାବଳୀ ଦିନ ଲକ୍ଷ୍ମୀ ପୂଜା ହେଉଥିଲା ତା'ପର ଦିନଠାରୁ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ବୋଇତରେ ପଣ୍ୟର ସଜ୍ଜନ ହେଉଥିଲା । ସାଧବମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ "ବୋଇତ ଯାତ୍ରା" କରୁଥିଲେ । ଉତ୍ତରା ଅନୁକୂଳ ପବନରେ ବୋଇତ ସୁବିଧାରେ ଓ ସହଜରେ ବାଲି ପ୍ରଭୃତି ଦ୍ୱୀପ ପୁଞ୍ଜକୁ ଯାଇପାରୁଥିଲା । ଏହି ବାଲି ଦ୍ୱୀପ ଯାତ୍ରା ଏ ପର୍ଯ୍ୟନ୍ତ ଆମ ଓଡ଼ିଆ ଜନମାନସରେ ଗଭୀର ଛାପ ଓ ରେଖାପାତ ରଖିଦେଇ ଯାଇଛି । ଏହା ଏବେ ବାଲି ଯାତ୍ରା ନାମରେ ଉତ୍ସବ ମୁଖରିତ ସହିତ ପାଳିତ ହୋଇ ଆସୁଛି । ବାଲି ଯାତ୍ରାର ଅର୍ଥ ବାଣିଜ୍ୟାର୍ଥେ ବାଲି ଦ୍ୱୀପକୁ ଯାତ୍ରା । ଏବେ ଓଡ଼ିଆ ସାଧବ ବୋହୂର ଆଉ ବୋଇତ ମେଲାଣ ନାହିଁ, ଖାଲି ରହିଛି କାର୍ତ୍ତିକ ପୂର୍ଣ୍ଣିମା ପାହାନ୍ତାରୁ କଦଳୀ ବାଗୁଣ୍ଡି ରୂପକ କୃତ୍ରିମ ବୋଇତର ଭସାଣି ।

ଓଡ଼ିଆ ସାଧବ ପୁଅର ଏହି ବାଣିଜ୍ୟ ଯାତ୍ରା କଥା ଗ୍ରୀକ୍ ପର୍ଯ୍ୟଟକ ଟୋଲେମି ମଧ୍ୟ ଉଲ୍ଲେଖ କରିଛନ୍ତି । କାର୍ତ୍ତିକ ମାସ

ଶେଷରେ ଅର୍ଥାତ୍ ଅକ୍ଟୋବର ନଭେମ୍ବର ମାସରେ ଉତ୍ତରା ପବନ ଅନୁକୂଳ ହୁଏ । ସେତେବେଳେ ଓଡ଼ିଶା ଉପକୂଳରୁ କଳିଙ୍ଗ ସାଗରରେ ବୋଇତଗୁଡ଼ିକ ପଣ୍ୟ ସମ୍ଭାର ନେଇ ପାରେ ସମୁଦ୍ର ବାଣିଜ୍ୟ ନିମନ୍ତେ ପୂର୍ବ ଦ୍ୱୀପ ପୁଞ୍ଜକୁ ପ୍ରସ୍ଥାନ କରୁଥିଲେ । କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ ସେଠାରେ ବାଣିଜ୍ୟ ବିନିମୟ ଚାଲୁଥିଲା । ଫାଲ୍‌ଗୁନ, ଚୈତ୍ର ମାସରେ ଦକ୍ଷିଣା ପବନ ଆରମ୍ଭ ହେବା ସଙ୍ଗେ ସାଧବମାନେ ମହାନଦୀ ମୁହାଣରେ ପ୍ରତ୍ୟାବର୍ତ୍ତନ କରୁଥିଲେ । ପଣାସଂକ୍ରାନ୍ତି ବେଳକୁ ବୋଇତସବୁ ପଣ୍ୟ ସମ୍ଭାର ନେଇ କଳିଙ୍ଗ ଉପକୂଳରେ ଲାଗୁଥିଲା । ବିଦେଶାଗତ ପରିଜନ ଓ ବୋଇତ ବନ୍ଦାଣ ପାଇଁ ସାଧବ ବୋହୂମାନେ ମେଷ ସଂକ୍ରାନ୍ତି ଦିନ ମଧୁର ଉତ୍ସବ ପାଳନ କରୁଥିଲେ । ଏହା ଏବେ ପଣା ସଂକ୍ରାନ୍ତି ନାମରେ ଲୋକପ୍ରିୟ ।

## କଳିଙ୍ଗର ପଣ୍ୟ ପେଟି

କଳିଙ୍ଗର ସୂକ୍ଷ୍ମ ବସ୍ତ୍ରର ସବୁଠାରେ ଖ୍ୟାତି ଥିଲା । କୌଟିଲ୍ୟ ମଧ୍ୟ ତାଙ୍କ ରଚିତ ଅର୍ଥ ଶାସ୍ତ୍ରରେ ମଧ୍ୟ ଏକଥା ବର୍ଣ୍ଣନା କରିଛନ୍ତି । କୁହାଯାଏ କଳିଙ୍ଗର ସୂକ୍ଷ୍ମବସ୍ତ୍ର ହାତମୁଠା ଓ ବାଉଁଶ ନଳୀରେ ରହିପାରୁଥିଲା । କୋଶଳରେ କୋଶାବସ୍ତ୍ର ଓ କାର୍ପାସ ବସ୍ତ୍ର ପୃଥିବୀ ପ୍ରସିଦ୍ଧ ଥିଲା । ସମ୍ବଲପୁର କୋଶଳର ହୀରାକୁଦଠାରୁ ହୀରା, ସୁନା, ରୁପା, ପାନ୍ନା, ପଦ୍ମରାଗ, ନୀଳମଣି, ପୋଖରାଜ, ସ୍ଫଟିକ ଓ ରକ୍ତମଣି ସଂଗୃହୀତହୋଇ ବିଦେଶକୁ ରପ୍ତାନୀ କରାଯାଉଥିଲା । କଳିଙ୍ଗ ବନ୍ଦର ମାନଙ୍କରୁ ସମ୍ବଲପୁରର ହୀରା ପାରସ୍ୟ ଗ୍ରୀସ୍ ଓ ରୋମ୍ ପର୍ଯ୍ୟନ୍ତ ରପ୍ତାନୀ ହେଉଥିବାର ଐତିହାସିକ ଗିବନ ବର୍ଣ୍ଣନା କରିଛନ୍ତି । ପୂର୍ବ ଭାରତ ଦ୍ୱୀପ ପୁଞ୍ଜରୁ ଅଳେଇଚ, ମରିଚ, ଲବଙ୍ଗ, ଗୁଆ ଇତ୍ୟାଦି, ଚୀନରୁ ରେଶମୀ ବସ୍ତ୍ର ଓ ବଙ୍ଗଦେଶରୁ ମସ୍‌ଲିନ ପ୍ରଭୃତି ଆମଦାନୀ କରାଯାଉଥିଲା ।

Orissa State Archaeology,
Bhubaneswar-751014.



ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟର ୩୬ତମ ପ୍ରତିଷ୍ଠା ଦିବସରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

# ଓଡ଼ିଆ ଧର୍ମ ଓ ସଂସ୍କୃତିର ବାହକ : ସାଧବ ପୁଅ

● ଡକ୍ଟର କାର୍ତ୍ତିକଚନ୍ଦ୍ର ଦାସ

ପ୍ରାଚୀନ କଳିଙ୍ଗର ନୌଚାଳନା ଓ ନୌ–ବାଣିଜ୍ୟ ପରମ୍ପରା ଭାରତ ଇତିହାସର ଏକ ଗୌରବମୟ ଅଧ୍ୟାୟ । ପ୍ରାକୃତିକ ପରିବେଶ କଳିଙ୍ଗର ନାବିକମାନଙ୍କୁ ନୌ–ଚାଳନାରେ କୁଶଳତା ଓ ପାରଦର୍ଶିତା ଲାଭ କରିବା ପାଇଁ ଏକ ଅପୂର୍ବ ସୁଯୋଗ ସୃଷ୍ଟି କରିଥିଲା । ବହୁ ନଦନଦୀ ଦ୍ୱାରା ସୁବିଭକ୍ତ ଦନ୍ତୁରିତ କଳିଙ୍ଗର ଉପକୂଳ ଅଞ୍ଚଳ ନୌ–ଚାଳନା ପାଇଁ ବିଶେଷ ଅନୁକୂଳ ଥିଲା । ଲହରୀ ବିକ୍ଷୁବ୍ଧ ସମୁଦ୍ରର ରହସ୍ୟମୟ ଆହ୍ୱାନ ସାଧବ ପୁଅଙ୍କୁ ସମୁଦ୍ର ବକ୍ଷରେ ବୋଇତ ମେଲି ଦରିଆ ପାରି ପାଇଁ ପ୍ରେରଣା ଯୋଗାଇଥିଲା । ଏହାର ଝଲକ କବି ବଂଶୀଧର ସାମନ୍ତରାୟଙ୍କ 'ସାଧବ ଗୀତ' କବିତାରେ ଦେଖିବାକୁ ମିଳିଥାଏ ।

ଦରିଆ ପାରି ସେ ଦରିଆ ପାରି
ଡାକେ ମୋତେ ନୀଳ ଲହରୀ ଠାରି ।
ଭାସିଯାଏ ମୋର ବୋଇତ ରଙ୍ଗେ
ଖେଳି ଖେଳି ନୀଳ ଲହରୀ ସଙ୍ଗେ ।
କାହି ଯାଏ ମୁହିଁ ନପାରେ ବାରି
ଦରିଆ ପାରି ସେ ଦରିଆ ପାରି ।
ସାଧବପୁଅ ମୁଁ ସାଧବ ପୁଅ
ନ ମାନଇ ନଇ ସମୁଦ୍ର ସୁଅ ।
ବୋଇତ ବାହି ମୁଁ ଯାଏ ବିଦେଶେ
ବଣିଜ ପାଇଁ ସେ ବଣିକ ବେଶେ ।
ଖେଳଘର ମୋର ଦରିଆ ସୁଅ
ସାଧବ ପୁଅ ମୁଁ ସାଧବ ପୁଅ ।

ଦରିଆ ପାରିରେ ଥିବା ସିଂହଳ, ବ୍ରହ୍ମଦେଶ, ଜାଭା, ସୁମାତ୍ରା, ବର୍ଣ୍ଣିଓ ପ୍ରଭୃତି ଦେଶଗୁଡ଼ିକରେ ପ୍ରଚୁର ସୁନାରୁପା ମିଳୁଥିଲା । ତାହାରି ଆକର୍ଷଣରେ ସାଧବ ପୁଅ ସମୁଦ୍ର ଭିତରେ ବୋଇତ ମେଲି ଚାଲି ଯାଉଥିଲା । ସେହି ଦେଶମାନଙ୍କରୁ ସେ ସୁନାରୁପା ବୋହି ଆଣୁଥିଲା । କବିଙ୍କ ଭାଷାରେ–

ସୁନାରୁପା ତହୁଁ ଆଣଇ ଯେତେ
ସେ କଥା ଅବା ମୁଁ କହିବି କେତେ ।

ଦରିଆ ପାରିରେ ଦେଶଗୁଡ଼ିକ ମଧ୍ୟ କବି ମାୟାଧର ମାନସିଂହଙ୍କ "ସାଧବ ପୁଅ" କବିତାରେ ରୂପାୟିତ ହୋଇ ଉଠିଛନ୍ତି ।

ଦରିଆ ପାରେ
ରଙ୍ଗରୁ ପଡ଼େ
ପରାମାଣିକ ଝଡ଼ି
ପିଲାଏ ପରା
ରୁପଛି ହୀରା
ମୁକୁତା ଛଡ଼ାଛଡ଼ି
ନୀଳ ମାଣିକ
ପର୍ବତ ଶିଖ–
ଉପରୁ ରୂପା ନଈ
ଆସଇ ବହି
ସଙ୍ଗୀତ ଗାଇ ·
କିସୁଖ ଏଠି ରହି ?

ସାଧବ ପୁଅ କଥା କଳିଙ୍ଗର ନୌବାଣିଜ୍ୟ ଏପରି ଲୋକଙ୍କ ମନକୁ ଛୁଇଁଥିଲା ଯେ, ମାଆ'ମାନେ ତା ପୁଅ ଶୋଇଦେଲା ବେଳେ ମଧ୍ୟ ଏହି ସାଧବପୁଅ ଗୀତ ଗାଇଥାଏ । କବି ଚନ୍ଦ୍ରଶେଖର ମିଶ୍ର ଏ ପରିପ୍ରେକ୍ଷୀରେ କହନ୍ତି ।

ବାପା ପାଖେ ବସି ଶୁଣିବୁ — ଧନ, ପାହିଲେ ରାତି
ଦରିଆ ଡେଙ୍ଗିଲେ କେସନେ — ସୁନା ଲାଗି ତୋ ଜାତି ?
ଭାସିଲା ବଣିଜ ବୋଇତ — ନଦୀ–ହ୍ରଦ–ସାଗରେ
ଭେଟିଲେ ବିଦେଶ ଭାଇଏ — ଲକ୍ଷ୍ମୀ ଆସିଲେ ଘରେ ।
ଧନ ଲାଗି ଯିବୁ ତେସନ — ଦୂରେ, ନୋହିବୁ ଭୀତ
ଦରିଆ ଢେଉରେ ନାଚିବ — ତୋର ଭରା ବୋଇତ ।

ବିଦେଶରୁ ଯେତେବେଳେ ବୋଇତ ଫେରିଆସୁଥିଲା ସେତେବେଳେ ପୁରନାରୀମାନେ ବୋଇତ ବନ୍ଦାଣ କରୁଥିଲେ । ଏହି ସମୟର ଆନନ୍ଦ ବର୍ଣ୍ଣନା କରିବାକୁ କବି ନିଜର ଅସମର୍ଥତା ପ୍ରକାଶ କରି କହନ୍ତି ।

ସେ ଦେଖୁ ବୋଇତ ଫେରଇ ଯେବେ
ପୁରନାରୀମାନେ ଆନନ୍ଦେ ତେବେ
ବନ୍ଦାଇ ନିଅନ୍ତି ପ୍ରିୟ ବୋଇତ
ସେ କାଳ ଆନନ୍ଦ ନୁହେଁ କହିତ
ସେ ଛବି ମୁଁ କାହିଁ ନ ଦେଖେ କେବେ
ସେ ଦେଖୁ ବୋଇତ ଫେରଇ ଯେବେ

କବି ସାମନ୍ତରାୟ କ୍ଷୋଭପ୍ରକାଶ କରିଛନ୍ତି ଯେ, ସେ ପୂର୍ବ ଗୌରବ ଆଜି ଆଉ ନାହିଁ। ସାଧବପୁଅ ବୋଇତ ଧରି ଆଜି ଆଉ ଫେରୁନାହିଁ କି ସାଧବ ବୋହୂ ବୋଇତ ବନ୍ଦାପନା କରୁନାହିଁ। କବି ମାୟାଧର ମାନସିଂହ "ମହାନଦୀର ଜ୍ୟୋତ୍ସ୍ନା ବିହାର" କବିତାରେ କ୍ଷୋଭ ପ୍ରକାଶ କରି କହନ୍ତି ଯେ–

ବୋଇତ ବନ୍ଦାଣ ଲାଗି ଏ ତଟିନୀ ବାଲି
ନାଗରିକା ପଦପ୍ରାନ୍ତ ନ ଚୁମ୍ବିବ ଧୀରେ
ଦୁର୍ଗ ଆଉ ଉଠିବନି ? ରାଜାର ବୋଇତ
ନ ଫେରିବ ମୁକ୍ତାଧରି ଏ ତଟିନୀ ବାହିଁ
ନଗରର ବଧୂ ଯେତେ ମଙ୍ଗଳ ସଙ୍ଗୀତ
ନ ବନ୍ଦିବେ ତା'ରେ କେବେ ମଧୁକଣ୍ଠେ ଗାଇ ?

ମହାନଦୀର ବାଲି ଆଉ ନାଗରିକାମାନଙ୍କର ପଦ ପ୍ରାନ୍ତକୁ ଚୁମ୍ବନ ଦେଉନାହିଁ ଅର୍ଥାତ୍, ବୋଇତ ବନ୍ଦାଇବାକୁ ସାଧବ ବୋହୂମାନେ ଏହି ମହାନଦୀ କୂଳକୁ ଆଉ ଆସୁନାହାନ୍ତି। ବାରବାଟି ଦୁର୍ଗ ଧ୍ୱଂସ ହୋଇଯାଇଛି। ପୁଣି ସେ ଆଉ ଉଠିବ ନାହିଁ। ରାଜାଙ୍କ ବୋଇତ ଆଉ ମଣିମୁକ୍ତା ଧରି ତୋ ବକ୍ଷରେ ଆସିବ ନାହିଁ। ନଗରର ବଧୂମାନେ ଆଉ ମଙ୍ଗଳ ସଙ୍ଗୀତର ମଧୁର ମୂର୍ଚ୍ଛନା ଛୁଟାଇବେ ନାହିଁ। ସେମାନେ ଆଉ ବୋଇତ ବନ୍ଦାପନା କରିବେ ନାହିଁ। ଓଡ଼ିଆର ବୀରତ୍ୱ ଯାଇଛି। ତା'ର ସେ ଗୌରବ ଆଜି ଆଉନାହିଁ। କର୍ପୂର ଉଡ଼ିଯାଇଛି। କନା ପଡ଼ିରହିଛି। ସେ କାଳର କଥା ଏବେ ଖାଲି ରହିଛି। ଏବେ ଆମର ଆଉ ସେ ବଡ ବଡ ବୋଇତ ନାହିଁ। କିନ୍ତୁ ସେଇ ପୁରାତନ ଗୌରବର ସ୍ମୃତିଚାରଣ ପାଇଁ ଆମେ ନକଲି ବୋଇତ ଗଢୁଛୁ। ତାହା ହୁଏତ କାଗଜର ହୋଇପାରେ କି କଦଳୀ ବାହୁଙ୍ଗାରେ ହୋଇପାରେ। କାର୍ତ୍ତିକ ପୂର୍ଣ୍ଣିମା ଦିନ ତା' ଉପରେ ଆମେ ପାନଗୁଆ ଥୋଇ ତାକୁ ଆଲୋକରେ ସଜ୍ଜିତ କରି ନଦୀ ବା ପୁଷ୍କରଣୀରେ ଭସାଇ ଦେବାବେଳେ ଆମେ କହୁ–

ଆ–କା–ମା ଯାଇ
ପାନ ଗୁଆ ଥୋଇ
ପାନ ଗୁଆ ତୋର
ମାସକ ଧର୍ମ ମୋର।

ସାଧବ ପୁଅ ବିଦେଶ ଯାଇ କେବଳ ବଣିଜ କରି ଦେଶକୁ ଧନରତ୍ନ ବହି ଆଣିଲା ନାହିଁ। ସେ ଯେଉଁ ଦେଶକୁ ଗଲା ସେ ଦେଶରେ ନିଜର ଧର୍ମ ଓ ସଂସ୍କୃତିକୁ ପ୍ରଚାର କଲା। ତରଙ୍ଗେ ତରଙ୍ଗେ ସଂସ୍କୃତିର ବାର୍ତ୍ତା ବହି କରି ପହଞ୍ଚିଲା ସିଂହଳ, ବ୍ରହ୍ମଦେଶ ଜାଭା, ବାଲି, ସୁମାତ୍ରା ଓ କମ୍ବୋଜ ଦେଶରେ। ସେ ଦେଶର ଲୋକେ ଓଡ଼ିଶୀ ସଂସ୍କୃତିରେ ହେଲେ ଅନୁପ୍ରାଣିତ। ଅଶୋକଙ୍କ କନ୍ୟା ସଙ୍ଘମିତ୍ରା ଓ ପୁତ୍ର ମହେନ୍ଦ୍ର ସିଂହଳ ଯାଇ ସେଠାରେ ବୌଦ୍ଧଧର୍ମ ପ୍ରଚାର କଲେ। ଏଠାକାର କାରୀଗରମାନେ ଯାଇ ସିଂହଳରେ ମନ୍ଦିର ନିର୍ମାଣ କଲେ। ଧର୍ମଦୂତ ଯାଇ ଧର୍ମପ୍ରଚାର କଲେ। ରାଜା ଯାଇ ଶାସନ କଲେ। ଏସବୁ ସମ୍ଭବ ହେଲା କେବଳ ସାଧବପୁଅ ଯୋଗୁଁ। ହାର୍ଭେଙ୍କ ରଚିତ ବ୍ରହ୍ମଦେଶର ଇତିହାସରେ ବର୍ଣ୍ଣିତ ଅଛି ଯେ, କଳିଙ୍ଗର ନଅଜଣ ବୌଦ୍ଧଭିକ୍ଷୁ ବ୍ରହ୍ମଦେଶ ଯାଇ ସେଠାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ। ଐତିହାସିକ ଫେରିନି କହନ୍ତି ଯେ, ବ୍ରହ୍ମଦେଶର ସେଗୁ ଉପକୂଳ ଅଞ୍ଚଳ କଳିଙ୍ଗ ନାମରେ ଓ ତା'ର ଉତ୍ତର–ପଶ୍ଚିମାଞ୍ଚଳ ଉତ୍କଳ ନାମରେ ନାମିତ ଥିଲା। ବ୍ରହ୍ମଦେଶରେ ସାଧବମାନଙ୍କ ଦ୍ୱାରା ଶୈବ–ବୈଷ୍ଣବ–ବୌଦ୍ଧ ଧର୍ମର ପ୍ରଚାର ଘଟିଥିଲା।

ଓଡ଼ିଆ ସାଧବପୁଅ 'ଚମ୍ପା' ପରି–ଏକ ସମୃଦ୍ଧିଶାଳୀ ରାଜ୍ୟରେ ପହଞ୍ଚି ସେଠାରେ ବ୍ୟବସାୟ ବାଣିଜ୍ୟ କରିବା ସହିତ ରାମକଥା ପ୍ରଚାରିତ କଲା। ଜଗନ୍ନାଥଙ୍କର ପ୍ରଚାର ହେଲା। ଚମ୍ପାରେ ଜଗନ୍ନାଥ ପୁରୁଷୋତ୍ତମ ରୂପରେ ଲକ୍ଷ୍ମୀଙ୍କ ସହିତ ପୂଜା ପାଇଲେ। ଚମ୍ପାରେ ଭଗବତୀ ପୂଜା ପାଇଲେ। ମନେହୁଏ ଓଡ଼ିଶାର ବାଣପୁରବାସୀ ବ୍ୟବସାୟ ମାଧ୍ୟମରେ ବୋଇତ ଭିତରେ ଭଗବତୀ କଥା ନେଇ ଚମ୍ପା ରାଜ୍ୟରେ ପହଞ୍ଚାଇ ଦେଇଥିଲେ। କଳିଙ୍ଗ ରାଜ୍ୟର କୋଡ଼ିଏ ହଜାର ପରିବାର କ୍ରମଶଃ ସାଧବପୁଅମାନଙ୍କ ସହିତ ଯାଇ ଜାଭା ଦ୍ୱୀପରେ ବସତି ସ୍ଥାପନ କଲେ। ଜାଭାରେ ଏକ ଅଗସ୍ତ୍ୟ ମନ୍ଦିର ଅଛି। ଅଗସ୍ତ୍ୟଙ୍କୁ 'ହରିଚନ୍ଦନ' ବୋଲି କୁହାଯାଏ।

ଆମେ ଆମ ପୂର୍ବ ପୁରୁଷଙ୍କ କଥାକୁ କେବଳ "ମନେ ପକାଉଛୁ। ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ଭସାଇବା ବେଳେ ଆମର ମନେ ପଡ଼ିଯାଉଛି କୁନ୍ତଳା କୁମାରୀଙ୍କ କବିତା "ଓଡ଼ିଆ ପୁଅ"–

ଓଡ଼ିଆ ବୋଲୁଛୁ ମନେ ଗର୍ବ ବହି
ଗୁଳରେ ଟେକି ତୋ ମଥା
ନିତି ମନେ ମନେ ପୁଣି ହେଉ ଥାଅ
ପୂର୍ବ ପୁରୁଷର କଥା।



ବାଜି ରାଉତ ଶହୀଦ୍ ଦିବସ ଉପଲକ୍ଷେ ସୂଚନା ଭବନଠାରେ ଆୟୋଜିତ ଏକ ସଭାରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ବୋଧନ ଦେଉଛନ୍ତି।

# ଓଡ଼ିଶାର ଲୋକନୃତ୍ୟ ଓ ଲୋକନାଟକ

● ଡାକ୍ତର ଶୈଳେଶ୍ୱର ନନ୍ଦ

ନୃତ୍ୟବିତ୍ ମାନଙ୍କ ମତରେ ନୃତ୍ୟକୁ ସାଧାରଣତଃ ଭାରତବର୍ଷରେ ତିନିଭାଗରେ ବିଭକ୍ତ କରାଯାଇଥାଏ । ଆଦିବାସୀ ନୃତ୍ୟ, ଲୋକନୃତ୍ୟ ଓ ଶାସ୍ତ୍ରୀୟ ନୃତ୍ୟ । ଅରଣ୍ୟାନୀରେ ବାସକରୁଥିବା ଅସଂଖ୍ୟ ଆଦିବାସୀ ସମାଜରେ ପ୍ରଚଳିତ ନୃତ୍ୟହିଁ ଆଦିବାସୀ ନୃତ୍ୟ । ସାଧାରଣ ଜନତାରେ ଆଦୃତ ନୃତ୍ୟ ଲୋକନୃତ୍ୟ ଓ ଯେଉଁ ନୃତ୍ୟ ନିୟମବଦ୍ଧ ଶାସ୍ତ୍ରାନୁମୋଦିତ ପରମ୍ପରା ଉଦ୍ଭବ ତାହା ଶାସ୍ତ୍ରୀୟ । ତଥାପି ଅଧୁନାତନ ପରିପ୍ରେକ୍ଷୀରେ ଉପରୋକ୍ତ ବର୍ଣ୍ଣନାରେ କେତେକ ପରିବର୍ତ୍ତନ କରାଗଲାଣି । ଆଜି କେତେକ ଆଦିବାସୀ ନୃତ୍ୟ–ଲୋକନୃତ୍ୟ ରୂପେ ଓ କେତେକ ଲୋକନୃତ୍ୟ– ଶାସ୍ତ୍ରୀୟ ନୃତ୍ୟ ଭାବେ ସର୍ବଭାରତୀୟ ଦରବାରକୁ ଉନ୍ନିତ ହେଲାଣି । ଓଡ଼ିଶାର ଗାରିମାମୟ ସଂସ୍କୃତିରେ ବହୁ ଲୋକନୃତ୍ୟ ଆଦି ଗ୍ରାମେ ଗ୍ରାମେ ନଗରେ ନଗରେ ସହସ୍ରାଧିକ ଜନତା ନିକଟରେ ସମାଦୃତ । ସମସ୍ତ ଲୋକନୃତ୍ୟର ସବିଶେଷ ବିବରଣୀ ବାଢ଼ି ବସିଲେ ପୋଥିଏ ହେବ । ଏଣୁ ଓଡ଼ିଶାର କେତେକ ଅତି ପରିଚିତ ଲୋକନୃତ୍ୟ ବିଷୟରେ ସୂଚନା ଦେବା ଏ ପ୍ରବନ୍ଧର ଉପଲକ୍ଷ ।

ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ରାନୁଯାୟୀ ବାଦ୍ୟ ସଙ୍ଗୀତ ଓ ନୃତ୍ୟଗରମ୍ମିଳିତ ପ୍ରକାଶ ହିଁ ନାଟ୍ୟାଭିନୟ । ନୃତ୍ୟ ଓ ନାଟକକୁ ଅତୀତରେ ଏକ ଓ ଅଭିନ୍ନ ରୂପେ ଚିନ୍ତା କରାଯାଇଅଛି । ଲୋକନୃତ୍ୟ ଓ ଲୋକନାଟକ ଉଭୟ ସଙ୍ଗୀତ, ନୃତ୍ୟ, ବାଦ୍ୟ ଓ ଅଭିନୟର ପରିବେଷଣ । ନାଟକରେ କଥାବସ୍ତୁର ଉପସ୍ଥାପନା ପାଇଁ ସଂଳାପର ଗୁରୁତ୍ୱ ଉପଲବ୍ଧ ହେଉଥିବା ସ୍ଥଳେ, ନୃତ୍ୟରେ ତାହା ଅଭିନୟ ମାଧ୍ୟମରେ ପରିପ୍ରକାଶ ଲାଭ କରିଥାଏ । କିନ୍ତୁ ଲୋକନୃତ୍ୟ ଓ ଲୋକନାଟକରେ ନୃତ୍ୟ ସଂଳାପକୁ ସଂଯୁକ୍ତ କରାଯାଇଥିବାର ବହୁ ସ୍ଥାନରେ ଦେଖାଯାଏ ।

ଓଡ଼ିଶାର ଲୀଳା, ଯାତ୍ରା, ସୁଆଙ୍ଗ, ରାସଠାରୁ ଆରମ୍ଭ କରି ଦଣ୍ଡ, ଛଉ, ପାଲା, ଗାଏ ଦାସକାଠିଆ, ହରିକଥା, ଦ୍ୱାରୀଲୀଳା, ଢଣକୋଇଲା, ରାସକେଳୀ, କେଳାକେଳୁଣୀ, ଡାଲଖାଇ ଆଦି ବହୁବିଧ ଲୋକନୃତ୍ୟ ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପରିବେଶରେ ସମାଦୃତ । ପ୍ରତ୍ୟେକଟି ଲୋକନୃତ୍ୟର ସୃଷ୍ଟି ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ଆଲୋଚନା କରିବା ହୁଏତ ସମ୍ଭବପର ହେବ ନାହିଁ । ତଥାପି ସଂକ୍ଷେପରେ ସୂଚନା ଦେବାର ପ୍ରୟାସ କରିବାର ଇଚ୍ଛା କରିଛି ।

## ଓଡ଼ିଶୀ ଲୋକନୃତ୍ୟରେ ଲୀଳା

ଭାରତ ଲୀଳା, ରାମ ଲୀଳା, କୃଷ୍ଣ ଲୀଳା, ରାସ ଲୀଳା, ବ୍ରଜ ଲୀଳା, ରାଧା ପ୍ରେମ ଲୀଳା, ରୁକ୍ମିଣୀବତୀ ହରଣ ଲୀଳା, କାଳୀୟ ଦଳନ ଲୀଳା, ପ୍ରେମବିଳାସ, ବସନ୍ତ ବିହାର, ମଥୁରା ଯାତ୍ରା, ଗୋଷ୍ଠ ଯାତ୍ରା, ବ୍ରଜ ବର୍ଦ୍ଧନ, ରାଧା ବିନୋଦ, ଆନନ୍ଦ ବୃନ୍ଦାବନ, ବସ୍ତ୍ର ହରଣ, କଂସ ବଧ, ମାନଭଞ୍ଜନ, ବକାସୁର ବଧ, ନବାନୁରାଗ, କଳଙ୍କ ଭଞ୍ଜନ, ରାଧାକୃଷ୍ଣ ପ୍ରେମ ଲୀଳା ଆଦି ବିଭିନ୍ନ ଲୀଳା ଏହି ଲୀଳା ସଂସ୍କୃତିର ଅନ୍ତର୍ଗତ ।

ଓଡ଼ିଶାର ଗୀତିନାଟ୍ୟ ଓ ଲୀଳା ମଧ୍ୟରେ ବିଶେଷ ପ୍ରଭେଦ ଦେଖାଯାଉ ନଥିଲେ ବି ଉପରୋକ୍ତ କଳେବର ଯେନି ଅତୀତରେ ଓଡ଼ିଆ ଲୀଳା ମାନ ପରିବେଷିତ ହେଉଥିଲା ବେଳେ ତା'ର ନବୀକରଣ ରୂପ ରୂପେ ଗୀତିନାଟ୍ୟ ଆତ୍ମପ୍ରକାଶ କରିଥିବାର ଅନୁମାନ କରାଯାଏ । ପୃଥିବୀର ବିଭିନ୍ନ ପ୍ରାନ୍ତରେ ନୃତ୍ୟ ଗୀତ ଓ ନାଟକ ସହ ଆଧ୍ୟାତ୍ମିକତାର ସଂଯୋଗ ଯେପରି ପରିଦୃଷ୍ଟ ହୁଏ, ଠିକ୍ ସେହିପରି ଓଡ଼ିଆ ଲୀଳାରେ ନୃତ୍ୟ, ଗୀତ ଅଭିନୟ ସହିତ ଆର୍ଯ୍ୟ ଆଦର୍ଶର ମହାକାବ୍ୟ ରାମାୟଣ, ମହାଭାରତ ଓ ଭାଗବତର କଥାବସ୍ତୁକୁ ସଂଯୁକ୍ତ କରାଯାଇ ମନୋମୁଗ୍ଧ କରାଯାଇପାରିଛି । ଧର୍ମପ୍ରାଣ ଦର୍ଶନ ବିଭୋର ହୁଏ ଏହି ପୌରାଣିକ କଥାବସ୍ତୁରେ । ରସସିକ୍ତ ହୁଏ ସଙ୍ଗୀତ ର ମୂର୍ଚ୍ଛନା ଭିତରେ– ବିମୋହିତ ହୁଏ ନୃତ୍ୟ ସହ ଅଙ୍ଗଭଙ୍ଗୀ ଓ ଅଭିନୟର ନିପୁଣତାରେ । ସଙ୍ଗୀତ ଓ ନୃତ୍ୟ ପ୍ରଧାନ ହେଲେବି କଥାବସ୍ତୁ ପ୍ରକାଶିତ ହୁଏ ନାଟକୀୟ ଆରୋହ ଅବରୋହ ମଧ୍ୟରେ ପୌରାଣିକ ବିଷୟକୁ ଆଧାର କରି ।

## ରାମଲୀଳା :

ରାମାୟଣର କଥାବସ୍ତୁକୁ ଦୃଶ୍ୟକାବ୍ୟ ରୂପରେ ପରିବେଷିତ କରି ଆଜକୁ ପାଞ୍ଚସହ ବର୍ଷ ହେବ ରାମଲୀଳା ବେଶ ଜନପ୍ରିୟ । ଉତ୍କଳକବି ବଳରାମ ଦାସଙ୍କ ଜଗମୋହନ ରାମାୟଣକୁ ରାମଲୀଳାର ରୂପ ଦେବାରେ କେତେକ କବି ଓ ନାଟ୍ୟକାର ଚେଷ୍ଟା କରି ସଫଳ ହୋଇଛନ୍ତି । ଯଦିଓ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରାମଲୀଳାମୃତ କାବ୍ୟ, ପରିବେଷଣ ଯୋଗ୍ୟ ତଥାପି ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ସେବକ ବିଶ୍ୱନାଥ ଖୁଣ୍ଟିଆଙ୍କ ବିର୍ଚ୍ଚି ରାମଲୀଳା

ଶ ବିଚିତ୍ର ରାମାୟଣ ବହୁଳ ଭାବରେ ଲୋକନାଟକ ଭାବେ ପରିବେଷିତ ହୋଇଥିବାର ପ୍ରମାଣ ଅଛି ।

'କହ ହନୁ ମୋର କାନ୍ତର କୁଶଳ......ଠାରୁ

ଶିଂଶପା ବୃକ୍ଷର ଡାଳେ ବସି ହନୁ ମନେ ମନେ ଭାବେ'

ବା ମନ୍ତ୍ରୀ ମୁଖୁ ଶୁଣି କୋପେ ବିଂଶ ପାଣି'........ଆଦିର

ଗୀତିମୟ ଅଭିନୟ ବେଶ ମନୋଜ୍ଞ । ଏହାର ନାଟକୀୟତା ଦର୍ଶକ ପ୍ରାଣକୁ ପୁଲକିତ କରି ଭାବବିହ୍ୱଳିତ କରେ ଅନାୟାସରେ । ପରବର୍ତ୍ତୀ ସମୟରେ (ଅଷ୍ଟାଦଶ ଶତାବ୍ଦୀରେ) ରଘୁନାଥ ଦାସ– ଜଗମୋହନ ରାମାୟଣର ଅନୁସରଣରେ ଏକ ରାମଲୀଳାର ରଚନା କରି ପରିବେଷଣ କରିଥିଲେ । ପୁଣି ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ ଓ ବିଶି ଖୁଣ୍ଟିଆଙ୍କର ବିଚିତ୍ର ରାମାୟଣର ପ୍ରଭାବରେ ଦକ୍ଷିଣ ଓଡ଼ିଶାର କବି– ବୈଶ୍ୟ ସଦାଶିବ ଅନ୍ୟଏକ ରାମଲୀଳା ରଚନା ଓ ପରିବେଷଣ କରିଥିବାର ପ୍ରମାଣ ଅଛି । ଏତଦ୍ ବ୍ୟତୀତ ଶ୍ରୀରାମଚରିତାମୃତ, ରାଘବ ଚରିତାମୃତ, ଚିତ୍ରିଟୀ ରାମଲୀଳା, ଜାନକୀ ବିଳାସ, ସଙ୍ଗୀତ ରାମଲୀଳା, ଈଶ୍ୱର ଦାସିଆ ରାମଲୀଳା ଆଦିରେ ଓଡ଼ିଶୀ ସଙ୍ଗୀତର ମଧୁର ଝଙ୍କାର ବହୁଳ ଭାବେ ପ୍ରକଟିତ । ଜାନକୀ ବିଳାସ ବିଂଶ ଶତାବ୍ଦୀରେ ରଚିତ ହୋଇଥିବାରୁ ଏଥିରେ ବହୁ ଆଞ୍ଚଳିକ କଥିତ ଭାଷାର ପ୍ରୟୋଗ କରାଯାଇଛି ।

## କୃଷ୍ଣଲୀଳା ଓ ରାସଲୀଳା :

ଲୀଳାମୟ ଶ୍ରୀକୃଷ୍ଣଙ୍କର ଗାଥାର ଲୀଳାବହୁଳ ଅଭିବ୍ୟକ୍ତିହିଁ କୃଷ୍ଣଲୀଳା ବା 'ରାସ' ଭାବେ ଓଡ଼ିଶାରେ ପରିବେଷିତ । ଦକ୍ଷିଣ ଭାରତରେ କୁଚିପୁଡ଼ି, ଭାଗବତ ମେଳ, ଯକ୍ଷଗଣ ଓ ଉତ୍ତର ଭାରତର ରାମାୟଣ ଭଳି ଓଡ଼ିଶାର କୃଷ୍ଣ ଲୀଳା ଓ ରାସ ବୈଷ୍ଣବୀୟ ଚେତନାର ପ୍ରଚାର ଓ ପ୍ରସାରକ । ନୃତ୍ୟ ସଙ୍ଗୀତ ଅଭିନୟ କାଳରେ ଅତୀତରେ ଅଗଣିତ ଜନତା ରାତିପାହା ଲୀଳା ଉପଭୋଗ କରୁଥିଲେ, ଭାବାବେଶରେ– ବିମୁଗ୍ଧ ହୃଦୟରେ । ଉତ୍କଳରେ ଜୟଦେବଙ୍କ ଗୀତ ଗୋବିନ୍ଦ ହିଁ କୃଷ୍ଣ ଲୀଳା ବା ରାସଲୀଳାର ପ୍ରଥମ ପଥ ପ୍ରଦର୍ଶକ । ପରେ ପରେ ବେଣୁଧର ନରେନ୍ଦ୍ର ଯଦୁ ଦାସ ପିଣ୍ଡିକ, ଶ୍ରୀଚନ୍ଦନଙ୍କ, କୃଷ୍ଣ ଦାସ ଓ ଶ୍ରୀଚୈତନ୍ୟଙ୍କ କାଳରେ ରାୟରାମାନନ୍ଦ ଜେଗନ୍ନାଥ ବଲ୍ଲଭ ଆଦି ବହୁ ରାସ ଲୀଳା ରଚନା କରିଥିଲେ । ଶତାବ୍ଦୀର କବି ନରସିଂହ ସେଣଙ୍କ 'ଗୋପକେଳି' ମଧ୍ୟ ରାସ ଅନ୍ତର୍ଗତ । ପରବର୍ତ୍ତୀ ସମୟରେ ବହୁ ଓଡ଼ିଆ କବି ରାସ ଓ କୃଷ୍ଣ ଲୀଳାର ରଚନା କରିଅଛନ୍ତି ।

ସେମାନଙ୍କ ମଧ୍ୟରେ ଦ୍ୱିଜ ଚୈତନ୍ୟଙ୍କର କୃଷ୍ଣ ଲୀଳା, ଦଂଖୀଶ୍ୟାମ ଦାସଙ୍କ ବୃନ୍ଦାବତୀ ହରଣ ଲୀଳା, କାଳୀୟ ଦଳନ ଲୀଳା, ଶ୍ୟାମ ସାହୁଙ୍କର ଗୋପ ଲୀଳା, ଶିଶୁ ବନମାଳୀ ଦାସଙ୍କ ରାସ ଲୀଳା, ଦାଶରଥି ଦାସଙ୍କ ବ୍ରଜ ବିହାର, ଗଙ୍ଗାଧର ପ୍ରଧାନଙ୍କ ଭାରତ ଲୀଳା ଓ ରାଧାକୃଷ୍ଣ ପ୍ରେମ ଲୀଳା, ବାବାଜି ବୈଷ୍ଣବ ଚରଣ ଦାସଙ୍କ ମାନଭଞ୍ଜନ, କାଳୀୟ ଦଳନ ଲୀଳା, ପଟିଆ ଦିବ୍ୟସିଂହ ଦେବଙ୍କ ଦ୍ୱାରକା ଲୀଳା, ଦ୍ୱିଜ ଦୁର୍ଗାଙ୍କର ସୁଭଦ୍ରା ହରଣ ଲୀଳା ଆଦି ମୁଖ୍ୟ । ବିଂଶ ଶତାବ୍ଦୀରେ ମୋହନ ସୁନ୍ଦର ଦେବ ଗୋସ୍ୱାମୀ, ଗୋବିନ୍ଦ ଚନ୍ଦ୍ର ସୁରଦେଓ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଆଦି ରାସର ପ୍ରବର୍ତ୍ତକ । ମୋହନ ସୁନ୍ଦରଙ୍କ ଶ୍ରୀରାଧାକୃଷ୍ଣ ପ୍ରେମ ଲୀଳା, ମାନଭଞ୍ଜନ, ମାନ ମିଳନ, ଶ୍ରୀଶ୍ରୀ ବ୍ରଜ ମାଧୁରୀ, ଶ୍ରୀଶ୍ରୀ ବୃନ୍ଦାବନାନନ୍ଦ, ଶ୍ରୀଶ୍ରୀ ଗୋବିନ୍ଦ ଲୀଳାମୃତ ଆଦି ବେଶ ଜନପ୍ରୀୟ ଲୀଳା ।

## ରାଧାପ୍ରେମ ଲୀଳା :

ଏହି ଲୀଳା ପ୍ରଥମେ ଗଞ୍ଜାମଜିଲ୍ଲାର ଟିକିଟିଠାରୁ ଆରମ୍ଭ ହୋଇଥିବାର କୁହାଯାଏ– ସ୍ୱର୍ଗତ ରଘୁନାଥ ରାଜଗୁରୁ ଏହାର ଆଦ୍ୟପ୍ରବର୍ତ୍ତକ ବୋଲି କୁହାଯାଏ ।

ଶ୍ରୀ ଜୟଦେବଙ୍କ ଗୀତ ଗୋବିନ୍ଦ ପ୍ରଭାବରେ– ରଚିତ ହୋଇ ବହୁ ଓଡ଼ିଶୀ ସଙ୍ଗୀତ ଓ ଛାନ୍ଦର ବ୍ୟବହାର କରାଯାଇ ରାଜ ପୃଷ୍ଠ ପୋଷକତା ହେତୁ ଜାକ ଜମକ ବେଶ ପୋଷାକ ଓ ବାଦ୍ୟ ଯନ୍ତ୍ର ହେତୁ ଏହା ଦକ୍ଷିଣ ଓଡ଼ିଶାର ଏକ ବିଶିଷ୍ଟ ଲୋକନୃତ୍ୟ ରୂପେ ଏଯାବତ୍ ଗୃହୀତ । ଏହା ଲୀଳା ଅନ୍ତର୍ଗତ ଏକ ଦୃଶ୍ୟ ଓ ଶ୍ରାବ୍ୟ କାବ୍ୟ । ଏଣୁ ଅଗଣିତ ଜନତାଙ୍କ ଦ୍ୱାରାଆଦୃତ ।

## ଭାରତ ଲୀଳା– ବା ଦ୍ୱାରୀ ଲୀଳା :

ଏହା ଗଞ୍ଜାମ ଅଞ୍ଚଳର ନିଜସ୍ୱ ଲୋକନୃତ୍ୟ । ଏଥିରେ ଦ୍ୱାରୀ ପ୍ରାରମ୍ଭରୁ ମଞ୍ଚାରୋହଣ କରି ବିଭିନ୍ନ ଉପାଖ୍ୟାନମାନ ବର୍ଣ୍ଣନା ଛଳରେ ଚରିତ୍ରମାନଙ୍କରେ ପାଠ ପରିଚୟ କରାଇଥାଏ । ଯଦିଓ ଏଥିରେ ସଙ୍ଗୀତ ଓ ନୃତ୍ୟ ଭରପୁର ଥାଏ ତଥାପି ନାଟ୍ୟ ସଂଳାପ ମଧ୍ୟ ଏବେ ସଂଯୁକ୍ତ କରାଗଲାଣି । ଏଣୁ କେତେକ ସମାଲୋଚକ ଏବେ ଏହାକୁ ଯାତ୍ରା ନାଟକ ଅନ୍ତର୍ଭୁକ୍ତ କଲେଣି । ପ୍ରକୃତରେ ଭାରତ ଲୀଳା ଦକ୍ଷିଣ ଓଡ଼ିଶାରେ ଯାତ୍ରା ରୂପେ ଗୃହୀତ ।

ଉପରୋକ୍ତ ସମସ୍ତ ଓଡ଼ିଆ ଲୀଳା ନାଟକର ଅଭ୍ୟୁଦୟ ଦ୍ୱାଦଶ ଶତାବ୍ଦୀରୁ ଆରମ୍ଭ ହୋଇ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଦୀର୍ଘ ଆଠଶହ ବର୍ଷ ଧରି ଆସୁଅଛି ଆସିଛି । ତଥାପି ଅଷ୍ଟାଦଶ ଶତାବ୍ଦୀକୁ ଲୀଳା ନାଟକର ସୁବର୍ଣ୍ଣ ଯୁଗ କୁହାଯାଏ । କାରଣ ଏହି ସମୟରେ ଓଡ଼ିଆ ସାହିତ୍ୟରେ ଶତାଧିକ ଓଡ଼ିଆ ଲୀଳା ନାଟକର ରଚନା କରାଯାଇଅଛି ।

## ଯାତ୍ରା ଓ ଗୀତିନାଟ୍ୟ :

ଯାତ୍ରା ଓ ଗୀତି ନାଟ୍ୟ ପୂର୍ବଭାରତର ଓଡ଼ିଆ ବଙ୍ଗ ଓ ଆସାମ ଅଞ୍ଚଳରେ ହିଁ କେବଳ ଦୃଷ୍ଟି ଗୋଚର ହୁଏ । ଯଦିଓ ଲୀଳା ସୁଆଙ୍ଗ, ସଖୀନାଚ, ଦଣ୍ଡନାଚ ଆଦି ଏହି ଯାତ୍ରାର ଅଂଶବିଶେଷ ବୋଲି ସମାଲୋଚକମାନଙ୍କ ମତରେ, ତଥାପି ସାଧାରଣ ଯାତ୍ରା ବୋଇଲେ ଏକ ମୁକ୍ତ ମଞ୍ଚରେ ଅଭିନୀତ ଏକ ନାଟକ ବା ସମାଜ ଯହିଁରେ ସଙ୍ଗୀତ ନୃତ୍ୟ ହାସ୍ୟରସ ସବୁକିଛି ଏକ ସଙ୍ଗେ ପରିବେଷିତ ହୋଇଥାଏ । ଗୀତି ନାଟ୍ୟ ସବୁ କେବଳ ଗୀତ ପ୍ରଧାନ ହୋଇଥିବା ସ୍ଥଳେ ଯାତ୍ରାରେ ଗଦ୍ୟମୟ ସଂଳାପର ଆଧିକ୍ୟ ପାଶ୍ଚାତ୍ୟ ଅପେରାଠାରୁ ନିଶ୍ଚିତ ସ୍ୱୀକାର୍ଯ୍ୟ । ଭାରତୀୟ ଯାତ୍ରା– ପାଶ୍ଚାତ୍ୟ ଅପେରାଠାରୁ ନିଶ୍ଚିତ ଭାବେ ସ୍ୱତନ୍ତ୍ର । ଏଥିରେ ଦର୍ଶକ ମଞ୍ଚର ଚାରି ଦିଗରେ ବସି ଉପଭୋଗ କରନ୍ତି । ମଞ୍ଚ ତଳକୁ ସଙ୍ଗୀତ ଗାୟକ ବାଦକ ଓ

ସ୍ଥାନକ ବସିଥିବା ବେଳେ– ଗୋଟିଏ ସଙ୍କୁଚିତ ପଥ ଦେଇ ମଞ୍ଚ ଉପରକୁ ଆସିବାକୁ ପଡ଼େ ନିକଟସ୍ଥ ଗ୍ରୀନ୍ ରୁମ୍‌ରୁ । ଏବେବି ଓଡ଼ିଶାର କେତେକ ବିଶିଷ୍ଟ ପ୍ରତ୍ନତାତ୍ତ୍ୱିକ ଅନୁଷ୍ଠାନ ମାନଙ୍କରେ ଓଡ଼ିଆ ଯାତ୍ରା ମଞ୍ଚର ସୂଚନା ମିଳେ । ଯୋଗିମାରା, ସୀତାବିଞ୍ଜି ଓ ରାଣୀ ଗୁମ୍ଫା ପରି କୀର୍ତ୍ତିମୟ ଓଡ଼ିଶାର ଦର୍ଶନୀୟ ସ୍ଥାନମାନଙ୍କରେ ଏପ୍ରକାର ସୂଚନା ମିଳିଥାଏ ।

ପ୍ରାରମ୍ଭରୁ ଯାତ୍ରାମାନ ପୁରାଣ ଭିତ୍ତିକ ହୋଇ ଦେବା ଦେବୀଙ୍କର ଲୀଳା ଓ ମହିମାମାନ ଗାନକରି ନାଟକ ପରିବେଷଣ କରୁଥିଲେ । କିନ୍ତୁ ଆଜିର ଅବସ୍ଥାରେ ଯାତ୍ରାର ନାଟକ ପୁରାଣଶ୍ରୟୀ ନହୋଇ ଐତିହାସିକ ଓ ସାମାଜିକ କଥାବସ୍ତୁର ଆଶ୍ରିତ ହେଲାଣି । ଯାତ୍ରାଠାରୁ ଗୀତି ନାଟ୍ୟକୁ ଓଡ଼ିଶାରେ ଅଲଗା କରାଯାଇ ଦେଖାଯାଇଥାଏ । କାରଣ ଗୀତିନାଟ୍ୟ ଅଭିନୟ ବିନା କେବଳ ଗୀତରେ ସମ୍ଭବ ନୁହେଁ କିନ୍ତୁ ଗୀତ ବିନା ଯାତ୍ରା ସମ୍ଭବ ।

ଯାତ୍ରା ଓଡ଼ିଆ ଓ ବଙ୍ଗଳାର ଏକ ଲୋକପ୍ରିୟ ନାଟ୍ୟ ପରିବେଷଣ । ଓଡ଼ିଆ ଯାତ୍ରା ପରମ୍ପରା ବଙ୍ଗଠାରୁ ପ୍ରାଚୀନତର ବୋଲି ଅନେକଙ୍କର ମତ । ବୀର ଓ ଶୃଙ୍ଗାର ରସମଧ୍ୟରେ ଭାବସାମ୍ୟ ରକ୍ଷା ଆଧ୍ୟାତ୍ମିକତାର ସଂଯୋଗରେ ପ୍ରଥମେ ଓଡ଼ିଆ ଯାତ୍ରା ଆତ୍ମପ୍ରକାଶ କରିଥିଲା । କୁହାଯାଏ ଯାତ୍ରାର ଅସ୍ମାରସ୍ଥ ଗୀତିନାଟ୍ୟ ରୂପରେ– ଓଡ଼ିଆ କବି ଜୟଦେବଙ୍କ ଗୀତଗୋବିନ୍ଦର ଗାୟନ ଓ ଅଭିନୟ ମଧ୍ୟରେ ସନ୍ନିବେଶିତ ହୋଇଥିଲା ।

ଅବଶ୍ୟ ଆଜି ବିଗତ ଶତାବ୍ଦୀ ମଧ୍ୟରେ ଗୀତିମୟ ଗୀତିନାଟ୍ୟ ଓ ଯାତ୍ରାର ଯେଉଁ କେତୋଟି ରଚୟିତାଙ୍କର ନାମ ଆମେ ଅନାୟାସରେ ଖୋଜିପାଉ ସେମାନେ ହେଲେ ରଘୁନାଥ ପରିଚ୍ଛା, ରାମଶଙ୍କର, ଭୀକାରିଚରଣ, ଜଗନ୍‌ମୋହନ, କୃଷ୍ଣପ୍ରସାଦ ବସୁ, ଗୋପାଳ ଦାଶ, କାମପାଳ ବୀରବିକ୍ରମ, ପଦ୍ମନାଭ, ଶଙ୍କରମିଶ୍ର, କୃପାସିନ୍ଧୁ ମିଶ୍ର, ଭିକାରି ନାୟକ, ବୈଷ୍ଣବ ପାଣୀ, ଜଗନ୍ନାଥ ପାଣୀ, ପ୍ରଭୁପାଦ ମୋହନ ଗୋସ୍ୱାମୀ, ବାବାଜୀ ବୈଷ୍ଣବଚରଣ ଦାସ, ଆଦି । ଏମାନଙ୍କ ପରବର୍ତ୍ତୀ ସମୟରେ ଭଞ୍ଜ କିଶୋର ପଟ୍ଟନାୟକ, ଗୋପାଳ ଛୋଟରାୟ, କାଳୀଚରଣ ପଟ୍ଟନାୟକ, ଶରତଚନ୍ଦ୍ର ମୁଲିଆ, ରଘୁନାଥ ସିଂହ, ଦୟାନିଧି ସ୍ୱାଇଁ, ଯଦୁମଣି କାନୁନଗୋ, ଆଦିମଧ୍ୟ ଯାତ୍ରା ଓ ଗୀତିନାଟ୍ୟ ସୃଷ୍ଟି କରିବାର ବ୍ରତଗ୍ରହଣ କରିଛନ୍ତି ।

ଦକ୍ଷିଣ ଓଡିଶାର ପ୍ରହ୍ଲାଦ ନାଟକ, ପଶ୍ଚିମ ଓଡିଶାର ବାଁଶ ଭୂତଲ ଆଦିମଧ୍ୟ ଗୀତିନାଟ୍ୟ ପର୍ଯ୍ୟାୟର । ବିଗତ ଅର୍ଦ୍ଧଶତାବ୍ଦୀରେ ମଧ୍ୟ ବୈଷ୍ଣବ ପାଣୀଙ୍କ ଗୀତିନାଟ୍ୟ ଗ୍ରାମେ ଗ୍ରାମେ, ନଗରେ ନଗରେ ଏତେ ମାତ୍ରାରେ ଆଦୃତହୋଇ ପାରିଲାଯେ– ଶାସକମାନେ– ଆଇନ ଶୃଙ୍ଖଳା ବିଷୟରେ ଘୋର ଚିନ୍ତିତ ହୋଇପଡ଼ିଲେ । ସେଥିରୁ ଓଡ଼ିଆ ଜାତିର ଲୋକନାଟକ, ଯାତ୍ରା ଓ ଗୀତିନାଟ୍ୟ, ପ୍ରତି ଅନୁମେୟ ।

## ପ୍ରହ୍ଲାଦ ନାଟକ :

ଦକ୍ଷିଣ ଓଡ଼ିଶାର ଏହା ଏକ ଅତ୍ୟନ୍ତ ଲୋକପ୍ରିୟ ନାଟ୍ୟ ପରମ୍ପରା । ଓଡ଼ିଶାରେ ଆଦି ଦେବତା ନୃସିଂହ ପୂଜାର ଏକ ନାଟକୀୟ ଅଭିବ୍ୟକ୍ତି । ଶ୍ରୀଜଗନ୍ନାଥଙ୍କ ରତ୍ନପୀଠକୁ ନୃସିଂହ ପୀଠ କୁହାଯାଏ । ଏଣୁ ନୃସିଂହ ଦେବତାଙ୍କ ପୂଜାର ପ୍ରଚଳନ ଓଡ଼ିଶାରେ ବହୁକାଳରୁ ପ୍ରଚଳିତ ଥିବାର ଅନୁମାନ କରାଯାଏ । ନୃସିଂହାବତାର ଓ ହିରଣ୍ୟ ବଧ ହେଉଛି ଏ ନାଟକର ବିଷୟ ବସ୍ତୁ ।

ବହୁ ଶାସ୍ତ୍ରୀୟ ରାଗ ରାଗିଣୀର ବ୍ୟବହାର କରାଯାଇ ଦୀର୍ଘ ସମୟ ଧରି ଏହି ନାଟକ ମଞ୍ଚସ୍ଥ ହୁଏ । କୁହାଯାଏ ପ୍ରାରମ୍ଭରେ ଏହା ଦିନ ଦିନ ଧରି ପରିବେଷିତ ହେଉଥିଲା । ଅତି କମ୍‌ରେ ୧୫/୧୬ ଘଣ୍ଟା ଅଭିନୟ ନହେଲେ ଅଭିନେତାମାନେ ତୁଷ୍ଟ ହୁଅନ୍ତି ନାହିଁ । ହିରଣ୍ୟକଶ୍ୟପୁ ଅଭିନୟ କରୁଥିବା ଅଭିନେତା ଖୁବ୍ ସାଧନା– ସଂଯମ ଓ ପ୍ରଚେଷ୍ଟା ପରେ ଅଭିନୟ ପାଇଁ ବଛା ଯାଇଥାଏ । ଅଧ୍ୟବସାୟ ବିନା– ସୁନ୍ଦର ବଳିଷ୍ଠ ବପୁ ବିନା ହିରଣ୍ୟ ଭୂମିକାକୁ ଓଲ୍ହାଇବା ସ୍ୱପ୍ନର କଥା । ପ୍ରହ୍ଲାଦ ଚରିତ୍ରର କମନୀୟ ଭକ୍ତି ଭାବନା ଦର୍ଶନ ପ୍ରାଣକୁ ଆପ୍ଳୁତ କରେ । ବୀର ରସରେ ହିରଣ୍ୟକଶ୍ୟପୁ, ଭକ୍ତି ରସରେ ପ୍ରହ୍ଲାଦ ଓ କରୁଣ ରସରେ ଲୀଳାବତୀଙ୍କ ଅଭିନୟ ଦର୍ଶକମାନଙ୍କୁ ବିଭୋର କରେ ।

ଏ ପ୍ରକାର ନାଟ୍ୟରୂପରେ ପ୍ରଥମ ସ୍ରଷ୍ଟା ଥିଲେ ରାଜା ରାମକୃଷ୍ଣ ଛୋଟରାୟ । ଲୋକନୃତ୍ୟ, ସଙ୍ଗୀତ ଅଭିନୟ ସହ ହାସ୍ୟରସ, କରୁଣ, ଭୟାନକ ଓ ବିଭତ୍ସ ରସ ମାନ ଏକ ସଙ୍ଗେ ପରିବେଷଣ କରାଇବା ପାଇଁ ପ୍ରହ୍ଲାଦ ନାଟକ ଆରମ୍ଭ କରିଥିଲେ ବୋଲି କୁହାଯାଏ । ନାଟକର ନାୟକ ଏକ ବାଳକ– ପ୍ରହ୍ଲାଦ– ଯେ କି ବିଷ୍ଣୁ ଭକ୍ତିର ଚରମ ସୀମାରେ ପହଞ୍ଚି ସମସ୍ତଙ୍କୁ ଚମତ୍କୃତ କରିପାରେ । ପିତାଙ୍କର ସମସ୍ତ ଆକ୍ରୋଶ ସହ୍ୟ କରିନିଏ ସେ । ପର୍ବତରୁ ଫୋପଡ଼ା ଜାଏ, ହାତୀ ଚଢ଼ାଯାଏ, ନିଆଁରେ ପୋଡ଼ାଯାଏ କିନ୍ତୁ ପ୍ରହ୍ଲାଦର କିଛିବି ଅନିଷ୍ଟ ସମ୍ଭବ ହୁଏନି । ଭକ୍ତି ଭାବନାରେ ବିଜୟ ହୁଏ ବଳ ପରାକ୍ରମ ନିକଟରେ । ନାଟକରେ କିଛି କେଳାକେଲୁଣୀ ନାଚ, ଧାଇ, ଶୁଙ୍ଖଗୁର୍ଯ୍ୟ, ଦ୍ୱାରୀ ଆଦି ଚରିତ୍ର ନୃତ୍ୟ ଗୀତରେ ପରିବେଶକୁ ଆମୋଦକର କରନ୍ତି । ହିରଣ୍ୟ ବଧର କରୁଣ ଓ ବିଭତ୍ସ ଦୃଶ୍ୟ ସମସ୍ତଙ୍କୁ ଆକୁଳ କରିପକାଏ । ସ୍ତମ୍ଭରୁ ନୃସିଂହ ଅବତାରଙ୍କ ଆବିର୍ଭାବ ଓ ନୃସିଂହ ବଧ ଏ ନାଟକର କ୍ଲାଇମାକ୍ସ ।

## ସୁଆଙ୍ଗ, ଦଣ୍ଡନାଟ, ଘୋଡ଼ା ନାଚ, କେଳାକେଲୁଣୀ–·ଯୋଗି ଯୋଗିଆଣୀ :

ସୁଆଙ୍ଗ, ଯାତ୍ରା ଭଳି ଏକ ଜନପ୍ରିୟ ଲୋକନାଟ୍ୟ ଯହିଁରେ କେବଳ ପଦ୍ୟର ବ୍ୟବହାର ଦେଖାଯାଏ । ଦକ୍ଷିଣ ଓଡ଼ିଶାରେ ଦଣ୍ଡନାଟ, କେଳାକେଲୁଣୀ, ଯୋଗୀ ଯୋଗୀଆଣୀ ନାଚ ଆଦି ଏହି ସୁଆଙ୍ଗର ଭିନ୍ନ ଭିନ୍ନ ରୂପ । ଓଡ଼ିଶାର ବିଭିନ୍ନ କୋଣରେ ହେଉଥିବା ଘୋଡ଼ାନାଚକୁ ବି ସୁଆଙ୍ଗର ଅନ୍ୟ ରୂପ ବୋଲି କୁହାଯାଇ ପାରେ । ଏସବୁରେ ଜଣେ କବିତା ବା ସଙ୍ଗୀତରେ ପ୍ରଶ୍ନ କରେ ଆଉଜଣେ କବିତା ବା ସଙ୍ଗୀତରେ ଉତ୍ତର ଦିଏ । ପ୍ରଶ୍ନ ଉତ୍ତର ଛଳରେ ନାଚ ଜନତା ଆଗରେ ପେଶ କରାଯାଏ । ଘୋଡ଼ା ନାଚରେ ଘୋଡ଼ା ଦେହରେ ଦୁଇଟି ନାୟକ ନାୟିକା

ପ୍ରବେଶ କରି ରସରସିଆ ସଙ୍ଗୀତରେ– ଶୃଙ୍ଗାର ରସସିକ୍ତ କବିତାରେ ପ୍ରଶ୍ନ ଉତ୍ତର ଛଳରେ ନୃତ୍ୟ ପରିବେଷଣ କରନ୍ତି ।

କେଉଁ ଦେଶରେ ତୋ ଘର ନାଗରୀ ଲୋ
କେଉଁ ଦେଶରେ ତୋ ଘର ।
କେଉଁଠାରେ ମୋତେ ଦେଖୁଣ ଥିଲୁ
ବୋଲୁଛୁ ଶେରଷ୍ଠ.ମୋର ।

ନାଗରୀ ଟାପରା କରି ନାଗରକୁ ଉତ୍ତର ଦିଏ– ଏମିତି କଥା କଟା କଟି ଭିତରେ ନାଟକ ଗ୍ରୁଲିଥାଏ । ଶେଷରେ ଦୁହେଁ ମିଶି ନାଚନ୍ତି । ପରସ୍ପରକୁ ଗ୍ରହଣ କରନ୍ତି । ଏହାହିଁ ସୁଆଙ୍ଗର ଏକ ସଂଳାପ ପୂର୍ଣ୍ଣ ପ୍ରକାଶ ।

କେହି କେହି ସମାଲୋଚକ ସାରଙ୍ଗ ଦାସଙ୍କ କୃତ ଲକ୍ଷ୍ମୀନାରାୟଣି ବଚନିକା କୁ ସୁଆଙ୍ଗ ଆଖ୍ୟା ଦେଉଥିବା ବେଳେ– ଆଉ କେତେକ ବଳରାମ ଦାସଙ୍କ 'ଲକ୍ଷ୍ମୀପୁରାଣ' ଆଦ୍ୟ ସୁଆଙ୍ଗ ଗ୍ରନ୍ଥ ବୋଲି କୁହନ୍ତି । ପରେ ପରେ ଅଷ୍ଟାଦଶ ଶତାବ୍ଦୀରେ ଭିକାରି ନାୟକଙ୍କ 'ସୁଭଦ୍ରା ହରଣ ସୁଆଙ୍ଗ' ପରେ ପରେ ସୁଲୋଚନା ହରଣ ସୁଆଙ୍ଗ, ଦ୍ରୌପଦୀ ହରଣ ସୁଆଙ୍ଗ, ଧ୍ରୁବ ଚରିତ, ଚନ୍ଦ୍ରାବତୀ ହରଣ ସୁଆଙ୍ଗ, ବଳି ବାମନ ସୁଆଙ୍ଗ, ଲକ୍ଷ୍ମୀ ଲାଖ ବିଣ୍ଡି ସୁଆଙ୍ଗ (ଶେଖ କବୀର ମହମ୍ମଦ) ଗଣ୍ଡାବଧ ସୁଆଙ୍ଗ, ଇଛାବତୀ ହରଣ ସୁଆଙ୍ଗ (ସୈୟଦ୍ ଭ୍ରମର ଆଲ୍ଲାଙ୍କ) ଜଳନ୍ଧର ବଧ ଆଦି ବେଶ ଲୋକପ୍ରିୟ ସୁଆଙ୍ଗ ।

ସୁଆଙ୍ଗ ଓଡ଼ିଶାର ନିଜସ୍ୱ କଳା । ସୁଆଙ୍ଗର ପ୍ରଚଳନ ପୂର୍ବ ଭାରତରେ ଅନ୍ୟ କୋଉଠି ମିଳୁ ନଥିବା ବେଳେ ଓଡ଼ିଶାରେ ମିଳେ । ଏଣୁ ଏହାହିଁ ଆମର ନିଜସ୍ୱ ।

## ଛଉ ନାଚ :

ଛଉ ନୃତ୍ୟ ଆଜି ଲୋକନୃତ୍ୟର କଳେବର ଡେଇଁ ଏକ ଅର୍ଦ୍ଧ ଶାସ୍ତ୍ରୀୟ ନୃତ୍ୟ ରୂପେ ଗୃହୀତ ହେବାକୁ ବସିଲାଣି । ଅଙ୍ଗଭଙ୍ଗୀର ଅପୂର୍ବ ସଞ୍ଚାଳନ ମଧ୍ୟରେ ନୃତ୍ୟ ଓ ନାଟକର ସମନ୍ୱୟ ବାସ୍ତବିକ ସମସ୍ତଙ୍କୁ ବିଦଗ୍ଧ କରେ । ଆଜି ଓଡ଼ିଶାର ମୟୁର ଭଞ୍ଜ ଓ ଢେଙ୍କାନାଳରେ ଛଉ ନୃତ୍ୟ ପୃଥିବୀ ପ୍ରସିଦ୍ଧ । ଆଜି ଷଢ଼େଇ କଳା ଓ ପୁରୁଲିଆ ସହ ମୟୁରଭଞ୍ଜର ଛଉକୁ ବିଶ୍ଳେଷଣକୁ ନେଲେ ପ୍ରତୀତ ହୁଏ ଯେ ଏ ସମସ୍ତ ଛଉର ପ୍ରାରମ୍ଭ ବିଶାଳ ଉତ୍କଳରେ ହିଁ ଅତୀତରେ ସଙ୍ଗଠିତ ହେଉଥିଲା । ଯେତେବେଳେ ବିହାରର ଷଢ଼େଇକଳା– ଠାରୁ ବଙ୍ଗର ପୁରୁଲିଆ ପର୍ଯ୍ୟନ୍ତ ଓଡ଼ିଶାର ଶାସନାଧୀନ ଥିଲା । ଏଣୁ ଛଉନାଚ କେବଳ ଓଡ଼ିଶାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଷଢ଼େଇକଳା ଓ ପୁରୁଲିଆରେ ମୁଖାପିନ୍ଧି କରାଯାଉଥିବା ବେଳେ– ଓଡ଼ିଶାରେ କୌଣସି ମୁଖା ନପିନ୍ଧି ଛଉନାଚ ହୁଏ । ପୁଣି ଗାନ କରାଯାଉଥିବା ସଙ୍ଗୀତ ମଧ୍ୟରେ ଓଡ଼ିଶୀ ଓ ଛାନ୍ଦର ସ୍ଥାନ ଯଥେଷ୍ଟ ଭାବେ ଅନୁଭୂତ ହେଉଥିବା ବେଳେ ଅନ୍ୟ ପ୍ରାଦେଶିକ ଛଉରେ ଏପ୍ରକାର ସଙ୍ଗୀତ ପରିବେଷଣ ମିଳେ ନାହିଁ । ମୟୁର ଭଞ୍ଜ ଛଉରେ ଆଦିବାସୀ ନୃତ୍ୟ ଓ ପୁରୀର ପ୍ରଚଳିତ ମାହାରୀ ନୃତ୍ୟ ପ୍ରଭାବ ଉପଲବ୍ଧ କରାଯାଏ ।

ଛଉନୃତ୍ୟ ନଟରାଜ ଶିବଙ୍କର ଉପାସକମାନଙ୍କ ଦ୍ୱାରା ପ୍ରଥମେ ପ୍ରବର୍ତ୍ତିତ ହୋଇଥିଲା ବୋଲି କେତେକ ମତ ଦିଅନ୍ତି । ଅନ୍ୟ କେତେକଙ୍କ ମତରେ ବାଲେଶ୍ୱର ଅଞ୍ଚଳରେ ୧୦ମ ଶତାବ୍ଦୀରେ ରାଜତ୍ୱ କରୁଥିବା, ରାଜା 'ବାଣାସୁର' ଏହାର ପ୍ରଚଳନ କରିଥିଲେ । ଛାଉଣୀ ନୃତ୍ୟରୁ ଛଉର ଉତ୍ପତ୍ତି ବୋଲି ମଧ୍ୟ କେତେକ ମତ ଦିଅନ୍ତି । ଓଡ଼ିଆ ଜାତିର ବିରାଟ ସାମରିକ ପରମ୍ପରାରେ କ୍ଳାନ୍ତି ଅପନୋଦନ ପାଇଁ ଏହି ଛାଉଣୀ ନୃତ୍ୟ କରାଯାଉଥିବାର କୁହାଯାଏ । କାଳକ୍ରମେ ଏହା 'ଛଉନୃତ୍ୟ' ନାମରେ କଥିତ ହେବା ସମୀଚିନ । ପୁନଶ୍ଚ– ମୁଖ୍ୟ, ଛଉର ଅନ୍ୟ ଏକ ପ୍ରତିଶବ୍ଦ– ବା ପର୍ଯ୍ୟାୟବାଚୀ ଶବ୍ଦ । ଏଥିପାଇଁ ଷଢ଼େଇକଳାର ଛଉରେ ମୁଖା ବ୍ୟବହାର ଦେଖାଯାଏ ବୋଲି କେତେକଙ୍କ ମତ । ସେ ଯାହା ହେଉନା କାହିଁକି ବୀର ଓଡ଼ିଆ ପାଇକମାନଙ୍କର ସଂଳାପହୀନ ବୀର ରସ ପ୍ରଧାନ ମୂକ ଅଭିନୟ ହିଁ ଛଉନୃତ୍ୟ ଆକାରରେ ଓଡ଼ିଶାରେ ଆଦୃତ । ଆଜି ଯଦିଓ ଛଉ ନୃତ୍ୟ କରିବାକୁ ନାରୀମାନେ ଆଗେଇ ଆସିଲେଣି– କିନ୍ତୁ ପାରମ୍ପରିକ ରୀତିର ଏହା କେବଳ ପୁରୁଷମାନଙ୍କ ଦ୍ୱାରା ଅଭିନୀତ ହେଉଥିବା ନୃତ୍ୟ ।

ମୟୁରଭଞ୍ଜର ଛଉନୃତ୍ୟ ବିଶେଷତଃ ଚୈତ୍ରପର୍ବରେ ବେଶ ଧୁମଧାମରେ ପରିବେଷିତ ହୁଏ । ପ୍ରଥମେ କଳାକାରମାନେ ଭୈରବ ଓ ଅମ୍ବିକାଙ୍କୁ ଉପାସନା କରି ମଞ୍ଚ ଆରୋହଣ କରନ୍ତି । ବୀର ବାଦ୍ୟର ତାଳେ ତାଳେ କଳାକାର ତାଂର ମନୋଜ୍ଞ ବେଶପରିପାଟୀରେ ନୃତ୍ୟ କରେ । ବାଦ୍ୟମାନଙ୍କ ମଧ୍ୟରେ, ଢୋଲ, ନାଗରା, ମହୁରୀ, ଚଡ଼ଚଡ଼ି, ଧୁମସା, ହାର୍ମୋନିୟମ ଓ କ୍ଲାରିଓନେଟ ଆଦିର ଏକତ୍ର ବାଦନରେ କଳାକାର, ତ ଉନ୍ମାଦିତ ହୁଏ– ସମଗ୍ର ଅଞ୍ଚଳ ପ୍ରକମ୍ପିତ ହୁଏ । ଦର୍ଶକ ମଧ୍ୟ ଉଚ୍ଚାଟ ହୁଏ, ନୃତ୍ୟ ପରିବେଷଣରେ ଚୌକ, ବନ୍ଧ, ଧରଣ, ଟବକା ଆଦି ପର୍ଯ୍ୟାୟକ୍ରମେ କରାଯାଇ ଶରୀରର ବିଭିନ୍ନ ଅଙ୍ଗଚାଳନା ବାଦ୍ୟ ଅନୁସାରୀ କରାଯାଏ । ନୃତ୍ୟ ଆରମ୍ଭ ପୂର୍ବରୁ ରଙ୍ଗବାଦ୍ୟ ବା ରଙ୍ଗବାଜା ବାଜିଉଠେ– ଅନ୍ତରାଳରୁ ଏହାପରେ ମଞ୍ଚକୁ ଆସନ୍ତି ଦୁଇଟି ଚରିତ୍ର– 'କାଳି ପାତି' । ସେମାନେ ଆରମ୍ଭରୁ ପରିବେଷିତ ହେବାକୁ ଯାଉଥିବା ନାଟ୍ୟ ସମ୍ପର୍କରେ ସଂକ୍ଷିପ୍ତ ପରିଚୟ ଦିଅନ୍ତି । ଏହାପରେ ଆରମ୍ଭ ହୁଏ ଛଉନୃତ୍ୟ, ଢାଲ ଖଣ୍ଡା ଧରି ହେଉ ବା ତୀର ଧନୁ ଧରି ହେଉ– ନଚେତ୍ ପାରମ୍ପରିକ କୃଷ୍ଣ ଗାଥା, ଶିବଗାଥାର ପରିବେଷଣ ହେଉ ବା ଅରଣ୍ୟ ପ୍ରକୃତି, ଜୀବଜନ୍ତୁ ବିଷୟ ନେଇ ହେଉ, ସମବେତ ବା ଏକକ ହେଉ ନୃତ୍ୟ କରାଯାଏ । ଏହା ସମ୍ପୂର୍ଣ୍ଣ ଭାବେ ଆଙ୍ଗିକ ଅଭିନୟ । ଏଥିରେ ବାଚନିକ ସଂଳାପ ନଥାଏ । ଅବଶ୍ୟ ଏଥିରେ ଅନ୍ତରାଳରୁ ସଙ୍ଗୀତର ସଂଯୋଗ କରାଯାଇଥାଏ । ପାରମ୍ପରିକ ରୀତିରେ ଏକ ଚତୁଷ୍କୋଣାକୃତି ପ୍ରଶସ୍ତ ମୁକ୍ତମଞ୍ଚରେ ଏହା ପରିବେଷିତ ହୁଏ । ଏହାର ଚତୁର୍ଦ୍ଦିଗରେ ଦର୍ଶକ ବସି ମାଟିର ମଣ୍ଡପ ହିଁ ମଞ୍ଚ ହୁଏ । ଏହା ଉପଭୋଗ କରନ୍ତି ।

ଛଉନୃତ୍ୟ ଓଡ଼ିଶାର ଏକ ନିଜସ୍ୱ କଳାପକ୍ଷ ପାରମ୍ପରିକ ନୃତ୍ୟ ଆଜି ଯାହା ସମଗ୍ର ବିଶ୍ୱ ଦ୍ୱାରା ଆଦୃତ ହୋଇଛି । ବିଗତ ଶତାବ୍ଦୀରେ ମୟୁରଭଞ୍ଜ ମହାରାଜା ଓ ଢେଙ୍କାନାଳର ମହାରାଜାମାନଙ୍କ ଦ୍ୱାରା ପୃଷ୍ଠପୋଷକତା ଲାଭ କରି ଏହାର

ଯଥେଷ୍ଟ ବିକାଶ ଉପଲବ୍ଧ ହୋଇଛି । ଆଜି ମଧ୍ଯ ସରକାରୀ ସହାୟତାରେ ଏହାର ଗବେଷଣା ଓ ବିକାଶ ପାଇଁ ବହୁ ପଦକ୍ଷେପ ନିଆଯାଉଅଛି ।

## ପାଲା– ଦାସକାଠିଆ :

କୁହାଯାଏ ହିନ୍ଦୁ ମୁସଲମାନମାନଙ୍କର ମୈତ୍ରୀ ବନ୍ଧନର ଅଭିନବ କଳାତ୍ମକ ଅଭିବ୍ୟକ୍ତି ପାଲା । ସତ୍ୟପୀରଙ୍କ ପୂଜାରୁ ପାଲାର ଆରମ୍ଭ । ହିନ୍ଦୁଙ୍କର ସତ୍ୟନାରାୟଣ ଓ ମୁସଲମାନଙ୍କର ପୀରଙ୍କର ଏକସଙ୍ଗେ ସମ୍ମିଳିତ ପୂଜାର କଥା ପଣ୍ଡିତ ନୀଳକଣ୍ଠ କହିଅଛନ୍ତି ।

ପ୍ରଥମେ ଏହା 'ବୈଠକୀ ପାଲା' ବା ବସା ପାଲା ଭାବେ କରାଯାଉଥିଲା । ପରେ ଏହା ମଞ୍ଚ ଉପରେ ଲୋକନୃତ୍ୟ ବା ଲୋକ ନାଟକ ଭାବେ ଆସନ ନେଲା । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟକୁ ତା'ର ପରମ୍ପରା ସମ୍ମତ ସାଙ୍ଗୀତିକ ପ୍ରବାହ ମଧ୍ୟରେ ପ୍ରକାଶ କରାଯାଇ ପରବର୍ତ୍ତୀ ସମୟରେ ପାଲାକୁ ଜନପ୍ରିୟ କରାଯାଇ ପାରିଛି । ଏସବୁର ବିକାଶ– ବହୁ ସମାଲୋଚକଙ୍କ ମତରେ ମାତ୍ର ଶହେ ବା ଦୁଇଶହ ବର୍ଷର । ଷୋଳପାଲା, ହରିଅର୍ଜୁନ ପାଲା, ଭ୍ରମରବର ପାଲା, ଶ୍ୱେତ ବସନ୍ତ ପାଲା ଆଦି ୧୦୮ଟି ପାଲା ରଚିତ ହୋଇଛି ଊନବିଂଶ ଶତାବ୍ଦୀରେ ଛାନ୍ଦ, ଚଉପଦୀ, ଓଡ଼ିଶୀର ଗାୟନ ସହ ଆବୃତ୍ତି ଓ ବ୍ୟାଖ୍ୟା କରି ଗାୟକ ଜନତାର ମନମୋହେ– ଆଉ ପାଳିଆମାନେ ଡାକ ଦିଅନ୍ତି– ହାସ୍ୟରସ ଉଦ୍ଦିପନାରେ ସାହାଯ୍ୟ କରନ୍ତି । ମୃଦଙ୍ଗ, ଖୋଳ, ଝାଞ୍ଜ–ଗିନି–ବାଦ୍ୟ ଧରନ୍ତି ପାଳିଆମାନେ । ଗାୟକ ହାତରେ ଚାମର ଓ ଗିନି ଧରିଥାଏ । ପ୍ରାରମ୍ଭିକ ଅବସ୍ଥାରେ ଜଣେ ବା ଦୁଇଜଣ ପାଳିଆ ଗାୟକ ସଙ୍ଗେ ଯୋଗଦେଉଥିବା ବେଳେ ଆଜି ୪ରୁ ୬ଜଣ ପାଳିଆ ପାଲାରେ ଯୋଗଦେବା ଦେଖାଯାଉଛି । ଆରମ୍ଭରେ ଗାୟକ ମସ୍ତକରେ ଉଷ୍ଣୀଷ, ଲଲାଟରେ ସିନ୍ଦୁର, କର୍ଣ୍ଣରେ ମକର କୁଣ୍ଡଳ, ବକ୍ଷରେ କାଉଁଲା, ହସ୍ତପଦାଦିରେ ବିଭିନ୍ନ ଅଳଙ୍କାର ସଂଯୁକ୍ତ ହୋଇ ମୁଣ୍ଡରେ ଗଜପତି ପଗଡ଼ି ବାନ୍ଧି– ମଞ୍ଚ ଆରୋହଣ କରି ମଙ୍ଗଳାଚରଣ ଗାଆନ୍ତି । ପରେ ପାଲାର ବିଷୟ ଆରମ୍ଭ ହୋଇ ପରିବେଷିତ ହୁଏ । ଗୀତ, ବାଦ୍ୟ ଓ ବର୍ଣ୍ଣନା ପଟୁତାରେ ଏହା ଦର୍ଶକ ମଣ୍ଡଳୀକୁ ଚମତ୍କୃତ କରେ ।

## ଦାସକାଠିଆ :

ଦାସକାଠିଆ ପରିବେଷଣରେ ମାତ୍ର ଦୁଇଜଣ, ଜଣେ ଗାୟକ ଓ ଜଣେ ପାଳିଆ ଥାଆନ୍ତି । ଦୁହିଁଙ୍କ ହାତରେ ଦୁଇ ଦୁଇଖଣ୍ଡ କାଠି–ଦାସକାଠି ଧରିଥାଆନ୍ତି । ଏହି ଧାସକାଠିରୁ ଏହାର ନାମ ଦାସକାଠିଆ ହୋଇଛି । କିମ୍ବଦନ୍ତୀ କହେ ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ଦାସରୂପେ ଦୁଇଟି କାଠିରେ ରାମନାମ ଗାନ କରି ରାମାୟଣୀ ଯୁଦ୍ଧ ସମୟରେ ସୈନ୍ୟମାନଙ୍କ ମଧ୍ୟରେ ଉତ୍ସାହ ଓ ଉନ୍ମାଦନା ଜାଗ୍ରତ କରାଇଥିଲେ । ଏହାହିଁ ଦାସକାଠିଆର ଅସ୍ମାରମ୍ଭ ।

ଉଭୟ ଗାୟକ ଓ ପାଳିଆ ରାଜକୀୟ ବେଶ ଧାରଣ କରି ପାଇକଛା ମାରି ପାଟ ପିନ୍ଧି ପଗଡ଼ି ଭିଡ଼ିଥାନ୍ତି । ହାତରେ କଙ୍କଣ, କାନରେ କୁଣ୍ଡଳ ଆଦି ସହ ପାଦରେ ସେମାନଙ୍କର ନୂପୁର ଥାଏ । ମୁଖଶ୍ରେ ଲମ୍ବ ପରିମିତ ଦୁଇ ଖଣ୍ଡ କାଠି ଯାହାର ଦୁଇ ପାଖ ଚିକ୍କଣ ସରୁ– ଦାସକାଠି ରୂପେ ବ୍ୟବହୃତ ହୁଏ । କାଠି ଦୁଇଟିର ବାଜିବାପଟ ସମତଳ ଓ ପିଠି ପଟ ଟିକିଏଗୋଲାକାର । ଏହି କାଠି ତାଳ ଅନୁସାରେ ବଜାଇ ସେମାନେ ଗୀତ ଗାଇ– ନାଚି ଅଭିନୟ କରି ସମାଜ କରିଥାନ୍ତି । ଶାଁ ଦାଣ୍ଡର ମୁକ୍ତ ମଞ୍ଚରେ, ଗାୟକ ଓ ପାଳିଆ ଉଭୟ ରସାନୁସାରୀ ଅଭିନୟ ଓ ନୃତ୍ୟ କରିଥାନ୍ତି । ଶୃଙ୍ଗାର, ବୀର କରୁଣ, ରୌଦ୍ର– ଭୟାନକ, ହାସ୍ୟ ଆଦି ତାଙ୍କର ସାଧାରଣତଃ ପରିବେଷିତ ରସ । ଆଙ୍ଗିକ ଓ ବାଚନିକ ଅଭିନୟରେ ଦର୍ଶକ ବିମୁଗ୍ଧ ହୁଏ । ବିଷୟ ବସ୍ତୁ ସାଧାରଣତଃ ପୌରାଣିକ, ବା ଐତିହାସିକ ଗ୍ରହଣ କରାଯାଇଥାଏ । କାବ୍ୟାନୁସାରୀ ପରିବେଷଣ ପାରମ୍ପରିକ ଗାୟକମାନଙ୍କଠାରେ ଅନୁସ୍ୟୁତ ।

## ମୋଗଲତାମସା :

ଉତ୍ତର ଓଡ଼ିଶାର ଭଦ୍ରଖ ଓ ବାଲେଶ୍ୱର ଅଞ୍ଚଳରେ ଏହା ମୁଖ୍ୟତଃ ଦେଖାଯାଏ । ଭଦ୍ରଖ ଅଞ୍ଚଳର କବି ବଂଶୀବଲ୍ଲଭ ଗୋସ୍ୱାମୀ ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ମୋଗଲତାମସୀ ଭୀଲତାମସା, ରାଧାକୃଷ୍ଣ ତାମସା, ଚଉଦ୍ଧା ତାମସା, ଯୋଗୀ ତାମସା, ଫକୀର ତାମସା– ବାଇ ତାମସା ଆଦି ରଚନା କରି ପରିବେଷଣ କରାଯାଉଥିବା ଇତିହାସ ସମ୍ମିତ । ଏହି ସବୁ ତାମସା ଶିବ ମନ୍ଦିର ସମ୍ମୁଖରେ ପାର୍ଶୀ, ଉର୍ଦ୍ଦୁ, ବଙ୍ଗଳା, ହିନ୍ଦି ଓ ଓଡ଼ିଆ ଭାଷାର ଏକ ସମ୍ମିଶ୍ରିତ ସ୍ୱରରେ ପରିବେଷିତ ହେଉଥିଲା । ମୋଗଲତାମସା ଏସବୁ ତାମସା ମଧ୍ୟରେ ବେଶ ଲୋକପ୍ରିୟ ତାମସା । ଯବନ ଶାସକ ପ୍ରତିନିଧି ମାର୍ଜାସାହେବଙ୍କର ଆଗମନ, ସେବାକାରୀମାନଙ୍କର ସେବା ଜମିଦାରମାନଙ୍କର ତୋଷାମଦ ତଥା ଛୋକରୀ, ବକରୀର ଦାବୀ ସାଙ୍ଗକୁ ରାଜକର୍ମଚାରୀମାନଙ୍କର ଉତ୍କୋଚପ୍ରିୟତା ଚରିତ୍ରହୀନତା ତଥା ନିଶାଖୋର ମନୋଭାବର ଚିତ୍ରଣ ଏଥିରେ ବର୍ଣ୍ଣିତ ହେଉଥିଲା । ଏକ ମୁକ୍ତ ମଞ୍ଚରେ ଅଭିନୟ କରାଗଲେ ବି– ମୀର୍ଜାଙ୍କ ପାଇଁ ଏକ ସ୍ୱତନ୍ତ୍ର ସିଂହାସନ କରାଯାଇ ମଞ୍ଚର ତିନି କଡ଼ରେ ଦର୍ଶକମାନଙ୍କୁ ବସାଯାଉଥିଲା । କାହାଳୀ, ଯୋଡ଼ିନାଗରା, ଢୋଲ ବାଦ୍ୟସହ ହାର୍ମୋନିୟମ, ତୁବୀତାବଲା, ପଖାଜ, ଗିନି ଓ ବେହେଲାର ବ୍ୟବହାର ମଧ୍ୟ ଏଥିରେ କରାଯାଉଥିଲା । ପୋଷାକ ପରିଚ୍ଛଦ ବେଶ ସୁନ୍ଦର୍ଶ୍ୟ ଓ ରାଜକୀୟ, ସଂଳାପ ଏକ ମିଶ୍ରିତ ଭାଷାରେ ମୁସଲମାନୀ ଢଙ୍ଗରେ କରାଯାଏ ।

## ଦଣ୍ଡନାଟ :

ଦକ୍ଷିଣ ପଶ୍ଚିମ ଓଡ଼ିଶାରେ ଶୈବ ପରମ୍ପରାର ଏକ ଲୋକନୃତ୍ୟ ଭାବେ ପରିବେଷିତ । କଳାକାରମାନେ ଶାଁ ଦାଣ୍ଡ ଧୂଳିରେ ଗଡ଼ିବା, ଦଣ୍ଡ ଭାଙ୍ଗିବା, ଝୁଣାଖେଳ ଆଦିର ସାଧନା ଦୀର୍ଘ ତେର ଦିନ କାଳ କରିବା ପରେ ପଣାସଂକ୍ରାନ୍ତିରେ ଏହାର ଉଦ୍‌ଯାପନ କରନ୍ତି । ଏହାକୁ ପାଣିଦଣ୍ଡ କୁହାଯାଏ । ଅତ୍ୟନ୍ତ ନିଷ୍ଠାର ସହ ଏହି ୧୩ ଦିନ କଳାକରମାନେ ଆହାର ବ୍ୟବହାରରେ ସଂଯମ ଆଚରଣ କରି ପାଳନ କରନ୍ତି । ଏହି ଲୋକନୃତ୍ୟରେ ଝୁଣାଖେଳ, କାଳିକା ନାଚ, ଢୋଲବାଦ୍ୟ ସହଯୋଗରେ ଅନୁଷ୍ଠିତ ହୁଏ ।

ପରେ ଚଢ଼େୟା, ସୌରା ଏବଂ କନ୍ଧ ନାଚ ମଧ୍ୟ ହୁଏ । ଶେଷରେ ପୁରାଣ କାହାଣୀରେ ଏକ ସୁଆଙ୍ଗ କରାଯାଏ । ଏହି ଲୋକନୃତ୍ୟ ମୁଖ୍ୟତଃ ସଙ୍ଗୀତାଶ୍ରୟୀ ।

## ଚଇତି ଘୋଡା ନାଚ, ଚଢ଼େୟା ଚଢ଼େୟାଣୀ– ରାଉତ ରାଉତରାଣୀ ନାଚ :

ସାଧାରଣତଃ କୈବର୍ତ୍ତ ସମ୍ପ୍ରଦାୟର ଏକ ଉଲ୍ଲେଖନୀୟ ପର୍ବ ଚୈତ୍ର ପର୍ବରେ ଏହା ଅନୁଷ୍ଠିତ ହୁଏ । ଏହି ପର୍ବ ଓ ଏହି ଲୋକନୃତ୍ୟ ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା ଅଚ୍ୟୁତାନନ୍ଦଙ୍କର କୈବର୍ତ୍ତଗୀତାରେ ବର୍ଣ୍ଣିତ । ଚୈତ୍ର ପୂର୍ଣ୍ଣିମାରେ କୈବର୍ତ୍ତମାନେ ମା ବାଶୁଳୀଙ୍କର ପୂଜାଦି ପରେ ଘୋଡାନାଚ କରିଥାଆନ୍ତି । ବାରଖଣ୍ଡ ବାଉଁଶ ଚିରି ସେଥିରେ ଅଶ୍ୱର କଙ୍କାଳ କରାଯାଏ । ତହିଁରେ ମୃତ୍ତିକା ନିର୍ମିତ ଏକ ଅଶ୍ୱଶିର ଖଞ୍ଜାଯାଏ ଏବଂ ଏହି ସମ୍ପୂର୍ଣ୍ଣ ଘୋଡାଟିକୁ ଧୂପ ଦୀପ ନୈବେଦ୍ୟ ସହ ପୂଜା କରାଯାଏ । ତାପରେ ବସନ ଭୂଷଣରେ ସୁସଜ୍ଜିତକରାଯାଏ । ଘୋଡ଼ା ପିଞ୍ଜରାରେ ଏକ ପୁରୁଷ ପ୍ରବେଶ କରି ନିଜେ ନାଚି ଘୋଡ଼ାକୁ ନଚାଏ । ଏଥି ସହ ଚଢ଼େୟା ଚଢ଼େୟାଣୀ, ରାଉତ ରାଉତାଣୀ ମଧ୍ୟ ନାଚ କରନ୍ତି ଗୀତ ଗାଇ । ଚଢ଼େୟା ଚଢ଼େୟାଣୀ ନୃତ୍ୟ ବଣରେ ଚଢେଇ ଧରୁଥିବା ଏକ ପ୍ରକାର ଶବର ବା ଆଦିବାସୀଙ୍କ ଦ୍ୱାରା ପ୍ରଥମେ କରାଯାଉଥିଲା । ଚଢ଼େୟା ନୃତ୍ୟ, ପାତୁଆ ନାଚ ବା ରାଉତ ରାଉତରାଣୀ ନାଚ, ପାରମ୍ପରିକ ସଙ୍ଗୀତ ଶୈଳୀରେ ଉତ୍ତର ପ୍ରତ୍ୟୁତ୍ତର ଛାନ୍ଦରେ କରାଯାଇ ଦର୍ଶକମାନଙ୍କୁ ବିମୋହିତ କରେ ।

## ଡାଲଖାଇ ଓ ରସରକେଲି :

ଏହା ପଶ୍ଚିମ ଓଡ଼ିଶାର ଲୋକପ୍ରିୟ ନୃତ୍ୟ । ଆଶ୍ୱିନ ମାସର ମହାଷ୍ଟମୀଠାରୁ ଦଶହରା ଏହି ତିନି ଦିନ ଧରି ଡାଲଖାଇ ଦେବୀ ବା ଦୁର୍ଗା ଦେବୀଙ୍କ ପୂଜା ଆରାଧନା ସହିତ ଦଳବଦ୍ଧଭାବେ ଏହି ନୃତ୍ୟ ଅନୁଷ୍ଠିତ ହୁଏ । ଅଞ୍ଚଳରେ ହାତଛନ୍ଦି, ହଲି ଦୋହଲି ସଙ୍ଗୀତର ତାଳେ ତାଳେ ପାଦ ପକାଇ ନାଚନ୍ତି ଧାଙ୍ଗଡ଼ା ଧାଙ୍ଗଡ଼ିମାନେ । ମହୁରୀ, ମାଦଳ, ଢୋଲ ଓ ଟମକ ବାଦ୍ୟ ଏଥିରେ ବ୍ୟବହୃତ ହୁଏ । କଳାକାରମାନେ ନିଜେ ଗୀତ ଗାଆନ୍ତି । ସମୟ ସମୟରେ ପୁରୁଷ ଓ ସ୍ତ୍ରୀମାନେ ପ୍ରଶ୍ନୋତ୍ତର ମଧ୍ୟ କରନ୍ତି ଗୀତରେ ।

ସେମାନେ ସାଧାରଣତଃ ଗାଆନ୍ତି :

ଡାଲ ଖାଇବୋ  
କୃଷ୍ଣ ଯାଇଥିଲେ ଯମୁନା କୂଳେ  
ରାଧା ଯାଇଥିଲେ ଆଣିତେ ଜଳ  
ଧରିନେଲେ ହାତ କଲା କହ୍ନାଇ  
ଛାଡ଼ ବୋଇଲେ ସେ ଛାଡ଼ଇ ନାହିଁ  
ଯୁବ ବୟସ ସେ ନନ୍ଦର ପିଲା  
ଦେହ ତା'ର କଳା କଳା ।  
ଡାଲ ଖାଇବୋ ।.........

ସମ୍ବଲପୁରୀ ଶାଢ଼ୀ ସହ ଫୁଲପକା ଗାମୁଛାରେ ରମଣୀମାନେ ବେଶ ମନୋଜ୍ଞ ଦେଖାଯାନ୍ତି । ମୁଣ୍ଡରେ ନାନାପ୍ରକାର ଫୁଲ ଖୋସିଥାନ୍ତି । ଏହା ବେଶ ମନୋରଞ୍ଜକ । ରସରକେଲୀ ଡାଲଖାଇ ପରି– ଗୀତରେ କେବଳ ରସରକେଲୀ ଘୋଷାର ବ୍ୟବହାର ହୋଇଥାଏ ।

## କରମା ନାଚ ଓ ଶୁଆନାଚ :

ସମ୍ବଲପୁର, ମୟୁରଭଞ୍ଜ, ସୁନ୍ଦରଗଡ଼, ବଲାଙ୍ଗୀର ଓ ଢେଙ୍କାନାଳ ଆଦିରେ ଶବର ଜାତିର ଲୋକମାନେ ଏହି ନାଚ ନାଚନ୍ତି କରମ୍ସାନି ବା କରମରାନି ଦେବୀଙ୍କ ଉଦ୍ଦେଶ୍ୟରେ ପୂଜା ଆରାଧନା କରି । ଶୁକ୍ଳ ଏକାଦଶୀଦିନ ଯୁବକ ଯୁବତୀମାନେ ଜଙ୍ଗଲକୁ ଯାଇ ଶାଳଗଛ ବା କରମାର ଡାଳ କାଟି ଥାଆନ୍ତି । ତାକୁ ଗ୍ରାମର ଏକ ସୁସଜ୍ଜିତ ସ୍ଥାନରେ ପୋତି ସେମାନେ ଧାଡ଼ିବାନ୍ଧି ବର୍ତ୍ତୁଳାକରେ ବା ଗୋଲାକାର ପରିଧିରେ ନାଚନ୍ତି । କେତେବେଳେ ଦୁଇଦଳ ହୋଇ ମୁହାଁ ମୁହିଁ ନାଚନ୍ତି । ଗୀତ ଗାଉଥାନ୍ତି :

ଗାଇମି କରମା ଗୀତ ମୂଲ ନାହିଁ ଆସେ  
ଜୁହାର ଜୁହାର କରମାସାନ ତୋତେ ହୋ  
ପରସନ ହୁଅ ମୋତେ ହୋ  
ଲାଲ ସୁତା ବେରି ବେରି ବାନ୍ଦରେ ବଂଶରୀ  
ବନ୍ଧୁ ଗଲେ ପରବାସ ନଆସିଲେ ଫେରି  
xxx xxx xxx

କରମା ନାଚରେ ମାଦଳିଆ ଏବଂ ଗାୟକମାନେ ମୟୂରପୁଚ୍ଛ ଶୋଭିତ ପଗଡ଼ିମାନ ଭିଡ଼ିଥାଆନ୍ତି । ପୋହଳା ଏବଂ ଶଙ୍ଖମାଳୀ ପ୍ରଭୃତି ପିନ୍ଧି ଥାଅନ୍ତି । ଦଶହରା, ଦୋଳ ଓ ଅନ୍ୟାନ୍ୟ ପର୍ବରେ ଖଡିଆ, କିସାନ ଏବଂ ଓରାଓଁ ଜାତିର ଲୋକେ ଏହି ନାଚ ନାଚିଥାନ୍ତି ।

## ଘୁମୁରା :

ଘୁମୁରା ନାମକ ଏକ ବିଶେଷ ମର୍ଦ୍ଦଳର ବ୍ୟବହାର ଯୋଗୁ ଏହାକୁ ଘୁମୁରା ନାଚ କୁହାଯାଏ । ଏକ ବଡ଼ମାଟି ନିର୍ମିତ ମାଠିଆ ଭଳି ପାତ୍ରର ମୁଖକୁ ଗୋଧି ସାପର ଚମ ଦ୍ୱାରା ଆବୃତ କରାଯାଇ ପଶ୍ଚିମ ଓଡ଼ିଶାର କେତେକ ଶବର ଏହି ଘୁମୁରାକୁ ବେକରେ ଝୁଲାଇ ତାଳଦେଇ ବାଦ୍ୟ ବଜାଇବା ସଙ୍ଗେ ସଙ୍ଗେ ନୃତ୍ୟ କରିଥାଆନ୍ତି । ଏଥିରେ ଉଭୟ ପୁରୁଷ ଓ ସ୍ତ୍ରୀମାନେ ଅଂଶ ଗ୍ରହନ କରିଥାଆନ୍ତି । ପ୍ରତ୍ୟେକ ନିଜ ନିଜର ଅଳଙ୍କାର ବେଶଭୂଷା ସହ ପିନ୍ଧିଥାଅନ୍ତି । ବାଦ୍ୟ ସଙ୍ଗୀତର ତାଳେ ତାଳେ ସେମାନେ ଗୀତ ଗାଇ ନୃତ୍ୟ ପ୍ରଦର୍ଶନ କରନ୍ତି । ଗୋଲାକାର ବ୍ୟୂହରେ ବୁଲି ବୁଲି ।

## ସଂମ୍ବର ବା ବାହକ ନାଚ :

ଏହା ମଧ୍ୟ ପଶ୍ଚିମ ଓଡ଼ିଶାର ଏକ ପରିଚିତ ଲୋକନୃତ୍ୟ । ଏଥିରେ ମୃଦଙ୍ଗଧାରୀ ବାଦ୍ୟକମାନେ ପାଦମଞ୍ଜିରାର ମୃଦଙ୍ଗର ତାଳେ ତାଳେ ନୃତ୍ୟକରନ୍ତି । ଦେହରେ ତାଙ୍କର ପାଟଧୋତି ଓ ଗାମୁଛା ଥାଏ । ଏବେ ପ୍ରାୟ କୋଡ଼ିଏ ଜଣ ପର୍ଯ୍ୟନ୍ତ ବାଦକ ଏଥିରେ ଅଂଶ ଗ୍ରହଣ କରୁଛନ୍ତି ।

## ଣ୍ଟ ମର୍ଦ୍ଦଳ :

ପଶ୍ଚିମ ଓଡ଼ିଶାର ସଂସ୍କାର ପରି ଦକ୍ଷିଣ ଓ ପୂର୍ବ ଓଡ଼ିଶାର ଘଣ୍ଟ ମର୍ଦ୍ଦଳ ଏକ ବାଦ୍ୟ ସହଯୋଗୀ ନୃତ୍ୟ । ଘଣ୍ଟ ଓ ମର୍ଦ୍ଦଳର ତାଳେ ତାଳେ ବାଦ୍ୟକମାନେ ନୃତ୍ୟ କରନ୍ତି ପାଦମିଳାଇ ଚମତ୍କାର ଭାବେ ।

## କୈଁସାବାଡ଼ି ନୃତ୍ୟ :

ବର୍ମା, ମାଳୟ, ସିଙ୍ଗାପୁର ହଂକଂ ଭାରତର ଆସାମ, ଓଡ଼ିଶା, ମଣିପୁର ଆଦିରେ ଏହାଦେଖାଯାଏ । ଦୁଇଟି ଲମ୍ବା ବାଉଁଶ ଧରି ଦୁଇଟି ବ୍ୟକ୍ତି ବାଦ୍ୟର ତାଳେ ତାଳେ ନୃତ୍ୟ କରନ୍ତି । କେତେକ ପୁରୁଷ ଓ ସ୍ତ୍ରୀ ସେହି ବାଡ଼ିରେ ମଝିରେ ତିଆଁ ଡେଇଁ କରି ତାଙ୍କର କୌଶଳ ପ୍ରଦର୍ଶନ କରନ୍ତି ସଙ୍ଗୀତ ଓ ନୃତ୍ୟର ତାଳେ ତାଳେ । ପଶ୍ଚିମ ଓଡ଼ିଶାରେ ଗୋପାଳ ସମ୍ପ୍ରଦାୟର ଯୁବକ ଯୁବତୀମାନେ ଏହି ଖେଳ ପ୍ରଦର୍ଶନ କରିଥାଆନ୍ତି । ଆଜି ଏହା ପୂର୍ବଭାରତୀୟ ଦ୍ୱୀପପୁଞ୍ଜ ଫିଲିପାଇନ୍‌ସଠାରୁ ଜାପାନ ଯାଏଁ ବେଶ୍ ଜନପ୍ରିୟ ଲୋକନାଟକ ରୂପେ ପରିବେଶିତ ।

## ଦେଶୀୟନାଟ :

କୋରାପୁଟ ଅଞ୍ଚଳର ଏକ ଲୋକପ୍ରୀୟ ନାଟ୍ୟଧାରା । ସାର୍ବଜନୀନ ମୁଖାର ବ୍ୟବହାରରେ ପଶୁପକ୍ଷୀ, ଦେବତା ରାକ୍ଷସ ହୋଇ ଚରିତ୍ରମାନେ ମଞ୍ଚରେ ଅବତରଣ କରି ସଙ୍ଗୀତ ଓ ନୃତ୍ୟରେ ନିଜର ଅଭିନୟ ପ୍ରଦର୍ଶନ କରିଥାଆନ୍ତି ।

## ଘଣ୍ଟପାଟୁଆ :

କଟକ ଜିଲ୍ଲାର କନକପୁର– ମା ଶାରଳାଙ୍କପୀଠରେ ଦେବୀପୂଜା ଅବକାଶରେ କେତେକ ସେବକମୁଣ୍ଡରେ ମାଁ ଶାରଳାଙ୍କୁ ଘଟ ଆକାରରେ ଧାରଣ କରି ଘଣ୍ଟ ଘଣ୍ଟୀ ସହ ନାଚି ଥାଆନ୍ତି । ମୁଣ୍ଡରେ ଧାରଣ କରୁଥିବା ଦେବୀ ଘଟ ଏକ କାଷ୍ଠ ନିର୍ମିତ ଖୁମ୍ବ ଯାହାର ଉପରିଭାଗରେ ଏକ ଜଳପାତ୍ର ବା କୁମ୍ଭ ସ୍ଥାପିତ ହୋଇଥାଏ । ତା'ର ବାହାର ପାଖେ ହଳଦୀ, ଚୂଆ, ସିନ୍ଦୁର ମଖାଯାଇ ବିଭିନ୍ନ ଫୁଲମାଳ ଖୋସା ଯାଇଥାଏ । ଏହି ଖୁମ୍ବ ସହ ଘଟର ଉଚ୍ଚତା ପ୍ରାୟ ୫ ଫୁଟ, ଏହାକୁ ମସ୍ତକରେ ଧାରଣ କରିବା ସଙ୍ଗେ ସଙ୍ଗେ ଗୋଡ଼ରେ ପୁଣି ଦୁଇଟି କାଠ ଗୋଡ଼ ଲଗାଇ ସେମାନେ ଭାରସାମ୍ୟ ରକ୍ଷାକରି ଘଣ୍ଟ ନାଦରେ ତାଳଦେଇ ନାଚିଥାଆନ୍ତି, ସାଧାରଣତଃ ପୁରୁଷମାନେ ଘାଗରା ଓ ଶାଢ଼ୀ ପିନ୍ଧି, ମୁଣ୍ଡରେ ଖୋସାବାନ୍ଧି, କଙ୍କଣ, ବଳା ଆଦି ଅଙ୍ଗଭୂଷଣ ଧାରଣ କରି ସ୍ତ୍ରୀବେଶରେ ନୃତ୍ୟ କରନ୍ତି– ଏହା ଏକ ସ୍ୱତନ୍ତ୍ର ଲୋକନୃତ୍ୟ– ପୂର୍ବ ଓଡ଼ିଶାର ।

## ସାହିଯାତ୍ରା :

ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଶ୍ରୀକ୍ଷେତ୍ରରେ ଏକ ପାରମ୍ପରିକ ସାଂସ୍କୃତିକ ମହୋତ୍ସବ ପ୍ରତ୍ୟେକ ବର୍ଷ ଶ୍ରୀରାମଲୀଳା ଭିଆଣକୁ ଜୀବନ୍ତ କରିବା ପାଇଁ ଅନୁଷ୍ଠିତ ହୋଇଆସୁଅଛି ଯାହା ସାହିଯାତ୍ରା ନାମରେ ଖ୍ୟାତ । ଶ୍ରୀମନ୍ଦିରର ସୁରକ୍ଷା ସହିତ ସାଂସ୍କୃତିକ ପ୍ରବହମାନ ଧାରାକୁ ମାର୍ଗ ଦର୍ଶନ ଦେବା ପାଇଁ ପୁରୀର ସଂସ୍କୃତି କେନ୍ଦ୍ର 'ଯାଗା ଆଖଡ଼ା' ପ୍ରାଚୀନ କାଳରୁ ନେତୃତ୍ୱ ନେଇଆସୁଅଛି ।

ଶ୍ରୀରାମ ଜନ୍ମଠାରୁ ରାବଣ ବଧ ଓ ରାମାଭିଷେକ ପର୍ଯ୍ୟନ୍ତ ପ୍ରତ୍ୟେକ ଲୀଳା ଭିଆଣ ସାତସାହି ଆଖଡ଼ାରୁ ବିଭିନ୍ନ ସଂଧ୍ୟାରେ ପ୍ରସ୍ତାବନା ଉପସ୍ଥାପନ କରିଥାଆନ୍ତି ସାହିନାୟକମାନେ । ଏହି ପ୍ରସ୍ତାବନା କ୍ରମରେ ବିଭିନ୍ନ ସାହିର ଯାଗାଘରୁ ସଂଧ୍ୟାରେ ସକାଳ ପର୍ଯ୍ୟନ୍ତ ସାହିଯାତ୍ରା ବାଦୀସାହିକୁ ପଟୁଆରରେ ଯାଏ, ରାସ୍ତା କଡ଼ରେ ଏ ଲୋକନାଟ୍ୟ ପରମ୍ପରା ଶ୍ରୀଜଗନ୍ନାଥ ଧର୍ମ ସଂସ୍କୃତିର ସୁରକ୍ଷା ସହିତ ତାରୁଣ୍ୟର ଜୟଯାତ୍ରା ରୂପେ ରୂପାନୁରାଗ ରସ ପିପାସାକୁ ଚରିତାର୍ଥ କରିଆସିଛି ।

ସାହିଯାତ୍ରା ପଟୁଆରରେ ଆଖଡ଼ାର ନିଶାଣ ସମ୍ମାନର ସହ ବିଜେ କରିବା ସହିତ ବିଭିନ୍ନ ଲୋକନୃତ୍ୟ ଓ ନାଟ୍ୟ ପରମ୍ପରା ଭିତ୍ତିରେ ଚିତାକର୍ଷକ କାର୍ଯ୍ୟକ୍ରମମାନ ଉପସ୍ଥାପନା କରାଯାଇଥାଏ । ଆଖଡ଼ା ପକ୍ଷରୁ ସମ୍ପୃକ୍ତ ଦିବସର ଲୀଳାକୁ ସୃଷ୍ଟି ରାମ, ଲକ୍ଷଣ, ସୀତା, ପର୍ଶୁରାମ, ରାବଣ, ନାକକାନ ଆଦି ବିଭିନ୍ନ ରାମକଥା ଚିତ୍ରିତ ଚରିତ୍ର ପ୍ରସ୍ତାବନାରେ ରୂପ ନେଇଥାଆନ୍ତି ।

ପଟୁଆରରେ ମେଢ଼ନୃତ୍ୟ ଓଡ଼ିଶୀ ବୀରବାଦ୍ୟ ଛନ୍ଦରେ ନୃତ୍ୟ ବିଳାସ ଅନୁଷ୍ଠିତ ହୁଏ । ମେଢ଼ନାଟରେ ଦୁର୍ଗା, କାଳୀ, ଗଣେଶ, ମହାଦେବ, ସପ୍ତଶିରା, ନିଶିରା ଇତ୍ୟାଦି ରୂପକଥାର ମେଳଣସ୍ଥାନ ପାଇଥାଏ ।

ଅନ୍ୟାନ୍ୟ କେତୋଟି ନୃତ୍ୟପାଟକତାରେ ନାଗାନୃତ୍ୟ, ଢ଼ାଲ, ସୁପାରିଖେଳ, ସଠେରା ଗୀତ, କେଳାକେଲୁଣୀ, ବୁଢ଼ାବୁଢ଼ୀ ଓ ପରୀନାଟ ବେଶ ମନୋଜ୍ଞ ହୋଇଉଠେ ।

ସାହିଯାତ୍ରାର ବିଶେଷ ଆକର୍ଷଣ ହେଉଛି ଯାଗୁମେଳ । ଏହି ମେଳରେ ଯାଗା ଭେଣ୍ଟିଆମାନେ ହାତ ବାଡ଼ଦେଇ କ୍ରୀଡ଼ା କୌଶଳ ପ୍ରଦର୍ଶନ କରିଥାଆନ୍ତି । ପାଇକ ଖେଳରେ ଏହା ଏକ ଅଂଶ ବିଶେଷ କହିଲେ ଅତ୍ୟୁକ୍ତି ହେବନାହିଁ । ବିଦେଶୀ ଆକ୍ରମଣକାରୀଙ୍କ କବଳରୁ ଶ୍ରୀମନ୍ଦିରକୁ ରକ୍ଷା କରିବା ପାଇଁ ଯାଗାଘରେ ମାଲ, ଭେଣ୍ଟିଆମାନେ ଯେଉଁ ରଣ କୌଶଳ ଶିକ୍ଷା କରିଥାଆନ୍ତି ତାହା ପ୍ରତିଯୋଗିତା ଭିତ୍ତିରେ ବାଦୀସାହିରେ ପ୍ରଦର୍ଶନ କରିବା ପାଇଁ ସାହିଜାତ ମେଳରେ ବାହାରି ଆସନ୍ତି । ବାଙ୍କ, ଛୁରୀ, ପଟା, ବିନାପଟା, ଫରି, ବାଡ଼ି, ଛଡ଼ି, ନିଶାମ ଆଦି ବିରାଟ ଶୋଭାଯାତ୍ରା ମଧ୍ୟରେ ବୀରବେଶରେ ପଲାସି ବୀରବାଦ୍ୟ, ଢ଼ୋଲ, ଘୁଡ଼େଡ଼ି, ମହୁରୀର ତାଳେ ତାଳେ ସୁରାଟ ମାରି ଆଗେଇ ଚାଲନ୍ତି । ସାରା ରାତି ଉଜାଗର ରହି ସାହି ବସ୍ତିର ଆବାଳ ବୃଦ୍ଧବନୀତା ଏହି ରାସ୍ତାକଡ଼ର ନାଟ୍ୟ ରୂପକୁ ଉପଭୋଗ କରିଥାଆନ୍ତି ।

ଓଡ଼ିଶାର ଲୋକ ନାଟକର ପରିସୀମା ଦିଗନ୍ତ ପରିବ୍ୟାପ୍ତ । ଅସୁମାରି ଲୋକନୃତ୍ୟ ଓଡ଼ିଆ ଜନଜୀବନ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଗ୍ରାମେ ଗ୍ରାମେ ଭିନ୍ନ ଭିନ୍ନ ରୂପରେ ବହୁ ଲୋକନୃତ୍ୟ ପରିବେଷିତ ହୋଇ ଲକ୍ଷ ଲକ୍ଷ ଦର୍ଶକଙ୍କୁ ବିମୁଗ୍ଧ କରିଥାଏ । କ୍ଷୁଦ୍ର ପ୍ରବନ୍ଧର କଳେବର ମଧ୍ୟରେ ସମସ୍ତ ଲୋକନୃତ୍ୟକୁ ବର୍ଣ୍ଣନା କରିବା ସମ୍ଭବ ହୋଇପାରି ନାହିଁ । ତଥାପି ବହୁ ପରିଚିତ ଲୋକନୃତ୍ୟର ସଂକ୍ଷିପ୍ତ ସୂଚନା ମାତ୍ର ଏଠାରେ ଦିଆଗଲା । ଏହାକୁ ଓଡ଼ିଶାର ଲୋକନୃତ୍ୟର ଏକ ମୁଖଶାଳା ବା ପରିଚୟ ନିବନ୍ଧ ଭାବେ ଗ୍ରହଣ କରାଯାଉ ।

---

ସମ୍ପାଦକ,
ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ।

# ଓଡ଼ିଶାର ଚିତ୍ରକଳା

● ରବୀନ୍ଦ୍ର ମୋହନ ସେନାପତି

ଚିତ୍ର ହେଉଛି ଆଦିମାନବର ସର୍ବପ୍ରଥମ ଭାଷା ଏବଂ ଚିତ୍ର ଆଙ୍କିବା ମନୁଷ୍ୟର ପ୍ରଥମ କଳା । ଆମ ଦେଶରେ ହଜାର ହଜାର ବର୍ଷ ପୂର୍ବରୁ ଗୁମ୍ଫାଚିତ୍ର ଆବିଷ୍କୃତ ହୋଇଛି । ଓଡ଼ିଶାର ଗୁମ୍ଫାଚିତ୍ରମାନଙ୍କ ମଧ୍ୟରୁ କଳାହାଣ୍ଡି ଜିଲ୍ଲାର ଗୁଡ଼ହାଣ୍ଡି ଗୁମ୍ଫାଚିତ୍ର ପ୍ରାଗୈତିହାସିକ ଯୁଗର ବୋଲି ଅନୁମାନ କରାଯାଏ । ଏ ଚିତ୍ରରେ ରଙ୍ଗ ଦିଆଯାଇଛି ଓ ଚିତ୍ରମାନ ସବୁ ଶିକାର କରିବା ଦୃଶ୍ୟ । କେନ୍ଦୁଝର ଜିଲ୍ଲାର ସୀତାଭିଞ୍ଜି ପାହାଡ଼ର ଏକାଂଶରେ ରାବଣଛାୟା ନାମକ ଗୁମ୍ଫାର ଛାତ ଉପରେ ଏକ ବିରାଟ ଅଙ୍କିତ ଚିତ୍ର ଦେଖିବାକୁ ମିଳେ । ଏହା ଗୁପ୍ତ ରାଜତ୍ୱର ପରବର୍ତ୍ତୀ କାଳରେ ଅଙ୍କିତ । ପ୍ରାଚୀନ ଭଞ୍ଜବଂଶୀୟ କୌଣସି ନରପତିଙ୍କର ଦିଗ୍‌ବିଜୟ ପଟୁଆର ଏଠାରେ ପ୍ରଧାନ ବିଷୟ ରୂପେ ଅଙ୍କିତ ହୋଇଅଛି ।

ଓଡ଼ିଶାର ଆଦିବାସୀମାନଙ୍କର କଳାତ୍ମକ ଗୁଣ ସେମାନଙ୍କର ଏକ ସହଜାତ ପ୍ରବୃତ୍ତି । ଏବେ ଏହା ବିଲୁପ୍ତ ହେବାକୁ ବସିଲାଣି । ତଥାପି ଆଦିବାସୀ କଳାର ନମୁନା ଏବେବି ଦେଖିବାକୁ ମିଳେ । ସାନ୍ତାଳମାନଙ୍କର ଘର ସଜାଇବା ଏକ ଆଦର୍ଶ କଳା । ଘର ଭିତର ଓ ବାହାର କାନ୍ଥ ପରିଷ୍କାର କରି ଲିପିବା ସମୟରେ ହସ୍ତର ଗୁହୁରୀ ଦ୍ୱାରା ଧଳାକାନ୍ଥ ଉପରେ ଇଷତ୍ ନାଲିବର୍ଣ୍ଣର ଅଙ୍ଗୁଳି ସାହାଯ୍ୟରେ ବିଭିନ୍ନ ପ୍ରକାର ତରଙ୍ଗାୟିତ ରେଖା ଆଙ୍କିଛନ୍ତି । କୁଟିଆକନ୍ଧମାନେ ନୂଆ ଘରକାନ୍ଥ ଦେବାବେଳେ ଆଙ୍ଗୁଳିଟିପ ସାହାଯ୍ୟରେ ତରଙ୍ଗାୟିତ ରେଖା ଦ୍ୱାରା ସଜାଇଥାନ୍ତି । ଲାଞ୍ଜିଆ ସଉରାମାନେ ଘରକାନ୍ଥରେ ଚିତ୍ରକଳା ଆଙ୍କିଥାନ୍ତି । ସଉରା ଚିତ୍ରକଳାକୁ 'ଇଡ଼ିତାଲ' କହନ୍ତି । ଇଡ଼ିର ଅର୍ଥ ଚିତ୍ର ଓ ତାଲର ଅର୍ଥ କାନ୍ଥ ।

ପୁରୀ ଶ୍ରୀମନ୍ଦିରର ଭିତ୍ତିଚିତ୍ର ଏକ ନୂତନ କଳା ଦୃଷ୍ଟି କୋଣର ଆଭାସ ଦିଏ । ଜନମାନସରେ ଧର୍ମ ଭାବକୁ ସୁଦୃଢ଼ କରିବାପାଇଁ ଓଡ଼ିଶାର ରାଜାମାନେ ଶ୍ରୀମନ୍ଦିର ପରିସରରେ କୋଣ ଅନୁକୋଣକୁ ଚିତ୍ରକଳାରେ ମଣ୍ଡିତ କରିଥିଲେ । ନରପତି ଅନଙ୍ଗଭୀମଦେବ ଜଗନ୍ନାଥ ମନ୍ଦିରରେ ଛତିଶନିଯୋଗ ଗଠନ କରିଥିଲେ । ଏହି ଛତିଶନିଯୋଗରେ ଚିତ୍ରକର ସମ୍ପ୍ରଦାୟ ଅନ୍ତର୍ଭୁକ୍ତ । ସେ ସମୟରେ ଚିତ୍ରକାରମାନେ ଚିତ୍ରକଳାକୁ ନିଜର ବୃତ୍ତିରୂପେ ପରମ୍ପରା କ୍ରମେ ଅବଲମ୍ବନ କରିଆସୁଥିଲେ । ସେମାନଙ୍କ ଦ୍ୱାରା ଶ୍ରୀମନ୍ଦିର, ଲକ୍ଷ୍ମୀମନ୍ଦିର, ବିମଳା ମନ୍ଦିର ଇତ୍ୟାଦିରେ ଶତ ଶତ ଭିତ୍ତିଚିତ୍ର ଅଙ୍କିତ ହୋଇଥିଲା । ଏଗୁଡ଼ିକ ଓଡ଼ିଶୀ ଶୈଳୀରେ ରୂପାୟିତ । ବର୍ତ୍ତମାନ ଶ୍ରୀମନ୍ଦିର ପରିସରରେ ବହୁ ମୌଳିକ ଭିତ୍ତିଚିତ୍ରର ପୁନଃଚିତ୍ରଣ ହୋଇଅଛି ।

ଅଷ୍ଟାଦଶ ଶତାବ୍ଦୀର ପରବର୍ତ୍ତୀ କାଳରେ ଗଞ୍ଜାମ ଜିଲ୍ଲାର ଧରାକୋଟ ରାଜପ୍ରାସାଦ ଓ ବୁଗୁଡ଼ାର ବିରଞ୍ଚି ନାରାୟଣ ମନ୍ଦିର କାନ୍ଥରେ ଭିତ୍ତିଚିତ୍ରମାନ ଅଙ୍କିତ ହୋଇଥିଲା । ଏଗୁଡ଼ିକ ଓଡ଼ିଶୀ ଶୈଳୀରେ ଅଙ୍କିତ । ପୂର୍ବକାଳରେ ଓଡ଼ିଶାର ବହୁ ମନ୍ଦିର ଓ ମଠମାନଙ୍କରେ ଭିତ୍ତିଚିତ୍ର ଅଙ୍କିତ ହୋଇଥିଲା ।

ଲୋକମାନେ ଝାଟିମାଟିରେ ପରିବାର ନେଇ ବସବାସ କରୁଥିଲେ ମଧ୍ୟ ଚିତ୍ରକଳା ସଉକକୁ ଛାଡ଼ିପାରି ନଥିଲେ । ଏହାକୁ ଲୋକଚିତ୍ର କୁହାଯାଏ । ନୂତନ ଧର୍ମ ଓ ସାମାଜିକ ପରିସ୍ଥିତିରେ ଚିତ୍ରକଳା ପୁରପଲ୍ଲୀରେ ପ୍ରବେଶ କରି ଠାଁପ୍ରଭୃତ ଓ ଚିତା-ଏହିପରି ନୂତନ ରୂପରେ ଆତ୍ମପ୍ରକାଶ କଲା । ଓଡ଼ିଆ ରମଣୀମାନେ ଭୂମି ଓ କାନ୍ଥ ଉପରେ ପିଠଉପାଣିରେ, ଧଳାପଥର ଚୂନ ଗୁଣ୍ଡରେ ତାକୁ ଚୁଟି ଚୁଟି ଚିତ୍ର କଲେ । ଝୋଟି ଏହାର ନିଦର୍ଶନ । ପୁଣି ଭୂମିରେ ରଙ୍ଗମାଟି ଓ ପଥରଚୂନ ଦେଇ ଯେଉଁ ଚିତ୍ର କଲେ ତାହାକୁ ମୁରୁଜ କୁହାଗଲା । ଲୋକଚିତ୍ର ଓଡ଼ିଆଙ୍କର ପଲ୍ଲୀ ଜୀବନ ସହ ଓତଃପ୍ରୋତ ଭାବରେ ଜଡ଼ିତ । ପର୍ବପର୍ବାଣି ଓ ବିବାହାଦି ଉତ୍ସବରେ ସ୍ୱସ୍ତିକ, ଘଟ ଓ ପାଲର ପଞ୍ଚଦେବତା, ଦାଣ୍ଡିଚିତା, ବର, ପାଲିଙ୍କି, ସବାରି ପୂର୍ଣ୍ଣକୁମ୍ଭ, ଦହିମାଛ ପ୍ରଭୃତି ଚିତା ଆଦି କ୍ରମେ ଲୁପ୍ତ ହେବାକୁ ଲାଗିଲାଣି । ଗ୍ରାମ୍ୟକଳାର ଅବସାନ ଆସନ୍ନ ।

ରାଜ ପୃଷ୍ଠପୋଷକତା ନପାଇ ବହୁ ଚିତ୍ରକାର ଗ୍ରାମାଞ୍ଚଳରେ ବାସକଲେ । ସେ ସମୟରେ ପୁରାଣ, କାବ୍ୟ ଇତ୍ୟାଦି ପୋଥିମାନ ତାଳପତ୍ରରେ ଲେଖାଯାଉଥିଲା । ଏହି ଲେଖା ସାଙ୍ଗକୁ ମଝିରେ ମଝିରେ ଚିତ୍ର ରହୁଥିଲା । ଏହାକୁ ଚିତ୍ରପୋଥି କୁହାଯାଉଥିଲା । ପୋଥି ଚିତ୍ରରେ ରେଖାର ଗତି ମଧ୍ୟରେ ପଶୁପକ୍ଷୀ, ନରନାରୀ, ବୃକ୍ଷଲତା, ଘଟଣାମାନ ବର୍ଣ୍ଣାନୁରଞ୍ଜିତ ହୋଇ ସ୍ଥାନ ପାଉଥିଲା । ଭୁବନେଶ୍ୱର ମ୍ୟୁଜିୟମରେ ବହୁ ଚିତ୍ର ପୋଥି ରଖାଯାଇଛି । ପୋଥିଚିତ୍ରକଳା ବର୍ତ୍ତମାନ ଲୁପ୍ତ ।

ଲୋକଚିତ୍ର ପସନ୍ଦରେ ଆଗର୍ଭ କୁହାଯାଉଅଛି । ବର୍ତ୍ତମାନ ଓଡ଼ିଶାର ପଟ୍ଟଚିତ୍ର ଯାହାକି ଏକ ପାରମ୍ପରିକ ଚିତ୍ରକଳା ତାହା

ଉପରେ ଆଲୋଚନା କରାଯିବ। ପଟ୍ଟଚିତ୍ର ଧର୍ମ ସମ୍ବନ୍ଧୀୟ ବିଷୟକୁ କେନ୍ଦ୍ର କରି ଅଙ୍କିତ ହୋଇଅଛି। ଓଡ଼ିଶାର ପଟ୍ଟଚିତ୍ରରେ ଓଡ଼ିଶୀ ଶୈଳ ବିଦ୍ୟମାନ। କନା ଉପରେ ବିଭିନ୍ନ ପ୍ରକାର ଲେପ ଦେଇ ଏକ ପ୍ରକାର ମସୃଣ ଭୂମି ସୃଷ୍ଟି କରାଯାଏ, ଯାହାକୁ ପଟ୍ଟ କୁହାଯାଏ। ଏହା ଉପରେ ଚିତ୍ର କରାଯାଏ। ତେଣୁ ଏହାର ନାମ ପଟ୍ଟଚିତ୍ର। ପୌରାଣିକ ଓ ସାମାଜିକ ପଟ୍ଟଚିତ୍ର ପ୍ରଚଳନ ଅଛି। ବହୁ ପଟ୍ଟଚିତ୍ର ଶ୍ରୀଜଗନ୍ନାଥଙ୍କ ଧର୍ମ ଓ ସଂସ୍କୃତିକୁ ବହନ କରିଅଛି। ଆଗରୁ ପଟ୍ଟଚିତ୍ରରେ ପ୍ରାକୃତିକ ରଙ୍ଗ ବ୍ୟବହାର କରାଯାଉଥିଲା। ଏବେ ରଙ୍ଗଗୁଣ୍ଡ ବ୍ୟବହାର କରାଯାଉଛି। ଚିତ୍ରଟି ସମ୍ପୂର୍ଣ୍ଣ ହେଲା ପରେ ପଟିଟି ସାମାନ୍ୟ ଗରମ କରି ତାହା ଉପରେ ଝୁଣା ଓ ରଙ୍ଗିକ ଗୁଣ୍ଡ ଦେଇ ତାକୁ ଚିକ୍କଣ ଓ ଝଲସିତ କରି ଦିଆଯାଏ। ଓଡ଼ିଶୀ ପଟ୍ଟଚିତ୍ରଗୁଡ଼ିକରେ ରେଖାର ସାବଲୀଳ ଗତି, ଦୃଢ଼ତା ଓ ବର୍ଣ୍ଣଲେପନର ଔଜ୍ଜଲ୍ୟ ବହୁ ଅଧିକ। ଦେଶ ବିଦେଶର ବହୁ ଲୋକ ନିଜର ବୈଠକଖାନା ସଜାଇବା ପାଇଁ ଓଡ଼ିଶୀ ପଟ୍ଟଚିତ୍ର କିଣୁଛନ୍ତି।

ପଟ୍ଟଚିତ୍ରଣ ଶୈଳୀରେ ଗଞ୍ଜପା ମୁଠା ଚିତ୍ର କରାଯାଏ। ଗଞ୍ଜପା ହେଉଛି ଗୋଲାକାର ଖେଳିବା ତାସ। ଗଞ୍ଜପା ପାର୍ସି ଶବ୍ଦରୁ ଉଦ୍‌ଭବ। ଓଡ଼ିଶାର ଦକ୍ଷିଣ ଜିଲ୍ଲାମାନଙ୍କରେ ଏହାକୁ ସାର କହନ୍ତି। ଆମ ଦେଶରେ ତାସଖେଳ ୧୫୦୦ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହେଲା। ଗଞ୍ଜପାର ତାସ ଖେଳ ଓଡ଼ିଶାରେ ମଧ୍ୟ ପ୍ରଚଳିତ ଥିଲା। ଏହି ଗଞ୍ଜପାରେ ଦଶାବତାର ରାମାୟଣ ପ୍ରଭୃତିର ଚିତ୍ର ବର୍ଣ୍ଣନା କରାଯାଇ ଥାଏ।

ଊନବିଂଶ ଶତାବ୍ଦୀଠାରୁ ଓଡ଼ିଶା ରୀତିଚିତ୍ରଣ ଜୀବିକାର୍ଜନ ପାଇଁ କେବଳ କେତେଜଣ ଚିତ୍ରକାରଙ୍କ ସମ୍ପତ୍ତି ହୋଇ ରହିଲା। ଏତିକି ବେଳେ ଦେଶରେ ଇଂରେଜମାନେ ଶାସନ କଲେ ଓ ଚିତ୍ରଶିକ୍ଷା ପାଇଁ କଲିକତାରେ ବିଦ୍ୟାଳୟ ମାନ ପ୍ରତିଷ୍ଠା କଲେ। ଏହି ସମୟରେ ହିଁ ନୂତନ ଚିତ୍ରକଳା ଯୁଗର ଅଭ୍ୟୁଦୟ ହେଲା। ବଙ୍ଗ ଦେଶର କଳା ବିଦ୍ୟାଳୟରେ ହାଭେଲ୍ ଓ ପ୍ରସିବ୍ରାଉନ ଅଧକ୍ଷ ରହି ପାଶ୍ଚାତ୍ୟ ଚିତ୍ରକଳା ଶିଖାଇଲେ ମଧ୍ୟ ଭାରତୀୟ ଚିନ୍ତାଧାରା ଗ୍ରହଣ କଲେ। ବଙ୍ଗୀୟ ଶିକ୍ଷକମାନେ ପାଶ୍ଚାତ୍ୟ କଳା କୌଶଳ (ଟେକନିକ) ସହ ଦେଶୀୟ କଳା ଚିନ୍ତାଧାରାର ସମିଶ୍ରଣ କରାଇ ଥିଲେ। ଓଡ଼ିଶାର ବହୁ ତରୁଣ କଳାଶିକ୍ଷାର୍ଥୀ ଏଠାରେ ପଢ଼ିଛନ୍ତି ଏବଂ ପ୍ରାଚ୍ୟ–ପାଶ୍ଚାତ୍ୟ ଧାରାକୁ ଅନୁସରଣ କରିବା ସଙ୍ଗେ ସଙ୍ଗେ ନିଜ ନିଜର ସ୍ୱତନ୍ତ୍ର ଚିତ୍ରଣ ରୀତି ପ୍ରବର୍ତ୍ତନ କରିଛନ୍ତି। ଏହି କଳାକାରମାନଙ୍କ ମଧ୍ୟରେ ପୁରୀର ଆନନ୍ଦ ମିଶ୍ର ଅନ୍ୟତମ। ସେ ଗଜ ଉଦ୍ଧାରଣ ବେଶର ରେଖାଚିତ୍ର ଅଙ୍କନ କରି ଥିଲେ। ବାଲେଶ୍ୱରର ବସନ୍ତ କୁମାର ପଣ୍ଡା ଆଲେଖ୍ୟା ପ୍ରତିକୃତି ଓ ଦୃଶ୍ୟ ଚିତ୍ରରେ ପାରଦର୍ଶିତା ଦେଖାଇଥିଲେ। ବାଣପୁରର ଉପେନ୍ଦ୍ର ମହାରଥୀ ଆଲେଖ୍ୟରେ ସୃଷ୍ଟିଶୀଳତା ଦେଖାଇଛନ୍ତି। କଟକର ଯଶସ୍ୱୀ ଶିଳ୍ପୀ ବିଦ୍ୟାଧର ବର୍ମା ସ୍ୱୟଂ ପ୍ରକୃତି ଦେବୀଙ୍କୁ ତାଙ୍କର ଶିକ୍ଷାଦାତ୍ରୀ ରୂପେ ଗ୍ରହଣ କରି ଆପଣା ଛାଏଁ କଳାଶିକ୍ଷା କରିଥିଲେ। ତାଙ୍କ ଚିତ୍ରରେ ଓଡ଼ିଶାର ବେଶଭୂଷା ଅଳଙ୍କାର ଓ କୋମଳ ରେଖାବିନ୍ୟାସ ଫୁଟି ଉଠିଥିଲା। ଏହାଙ୍କର ପଲ୍ଲୀବଧୂ ଚିତ୍ରଟି ବଙ୍ଗଳାରେ ଖ୍ୟାତି ଅର୍ଜନ କରିଥିଲା। ବାରିପଦାର ପୂର୍ଣ୍ଣଚନ୍ଦ୍ର ସିଂହ କାବ୍ୟମୟ ଚିତ୍ର ସବୁ ରଚନା କରିଥିଲେ ଯାହାକି ପ୍ରବାସୀ ଓ ବସୁମତିରେ ପ୍ରକାଶ ପାଇଥିଲା। ପୁରୀ ଜିଲ୍ଲାର ଗୋପାଳ କାନୁନଗୋ ତୈଳଚିତ୍ରରେ ନିପୁଣତା ଦେଖାଇଥିଲେ। ଏହାଛଡ଼ା ଚରିତ୍ର ଚିତ୍ରଣ ସ୍କେଚ୍‌ରେ ସେ ପାରଦର୍ଶିତା ଦେଖାଇଥିଲେ। ସେ ଆଭାସବାଦ ଓ ଘନବାଦରେ ତୁଳୀଚାଳନା କରିଛନ୍ତି। ସମ୍ବଲପୁରର ମୁରଲୀଧର ଟାଲି ତୈଳଚିତ୍ର ଓ ଆଲେଖ୍ୟରେ ଉଚ୍ଚକୋଟିର ଚିତ୍ରକଳା ପ୍ରଦର୍ଶନ କରିଛନ୍ତି। ଦୃଶ୍ୟ ଚିତ୍ରରେ ତାଙ୍କର ବାସ୍ତବବାଦୀ ମନୋଭାବର ପରିଚୟ ମିଳେ। ବାଲେଶ୍ୱରର ଗୌରାଙ୍ଗ ସୋମ ଭିତ୍ତି ଚିତ୍ରଣ ଓ କ୍ଷୁଦ୍ର ଚିତ୍ରଣରେ ଯଥେଷ୍ଟ ପାରଦର୍ଶିତା ଦେଖାଇଥିଲେ। ବିନୋଦ ରାଉତରାୟ ଚିତ୍ରଗୁଡ଼ିକରେ ଅପୂର୍ବ ରୂପସଜ୍ଜା ଓ ରେଖା ବିନ୍ୟାସ କରି ତାକୁ ରମଣୀୟ କରିଛନ୍ତି। ପୁରୀର ଲକ୍ଷ୍ମୀଧର ଦାସ ଦ୍ରୁତ ଚିତ୍ରରେ ପାରଦର୍ଶିତା ଦେଖାଇଛନ୍ତି। ବିଭୂତି କାନୁନ୍‌ଗୋ ବୟନଶିଳ୍ପ ପାଇଁ ନକ୍ସାଙ୍କନ କରିଥିଲେ। ସେ ଅନେକଗୁଡ଼ିଏ ଚିତ୍ରାଙ୍କନ କରିଛନ୍ତି ଯେଉଁଥିରୁ ଖାରବେଳଙ୍କ ମଗଧ ବିଜୟ ଚିତ୍ରଟି ଅତି ରମଣୀୟ। ତାଙ୍କ ପୂର୍ବରୁ ନାରାୟଣ ପାଢ଼ୀ, ସୀତା ଓ ସୁନାମଣି ସାମଲ ବିଜ୍ଞାପନ ଚିତ୍ରଣରେ ଦକ୍ଷତା ଦେଖାଇଛନ୍ତି। କଟକର ଯୁବକଶିଳ୍ପୀ ଶିଳ୍ପୀ ବିପିନ ବିହାରୀ ଚୌଧୁରୀ ରୟାଲ କଲେଜ ଅଫ୍ ଆର୍ଟସ୍‌ରେ ଅଧ୍ୟୟନ କରି ପ୍ରତିକୃତି ଅଙ୍କନରେ ଅପୂର୍ବ ପ୍ରତିଭା ଦେଖାଇଛନ୍ତି। ଏବେ ଓଡ଼ିଶାର କଳା ବିଦ୍ୟାଳୟମାନଙ୍କର ଶିକ୍ଷକ ଓ ଉତ୍ତୀର୍ଣ୍ଣ ଛାତ୍ରମାନେ ନୂତନ ଧରଣର ଚିତ୍ରମାନ ଅଙ୍କନ କରୁଛନ୍ତି।

ଓଡ଼ିଶାର ଚିତ୍ରକଳା ପାରମ୍ପରିକ ରୀତିରୁ ଆରମ୍ଭ କରି ଆଧୁନିକ ରୀତି ପର୍ଯ୍ୟନ୍ତ ଗଲାଣି। କିନ୍ତୁ ପଟ୍ଟଚିତ୍ର ଏବେ ମଧ୍ୟ ଦେଶ ଓ ବିଦେଶରେ ଲୋକପ୍ରିୟ। ତଥାପି ଆଧୁନିକ ଚିତ୍ରକଳାରେ ଦେଶରେ ପ୍ରତିଷ୍ଠା ଲାଭ କରିବା ଓଡ଼ିଶାର ନୂତନ ଚିତ୍ର ଶିଳ୍ପୀମାନଙ୍କର ଧ୍ୟେୟ ହେବା ଉଚିତ।



ଲଳିତ କଳା ଏକାଡେମୀଠାରେ ଆୟୋଜିତ ନିଖିଳ ଓଡ଼ିଶା ସ୍କୁଲ୍ ଶିଶୁ ଚିତ୍ରକଳାପ୍ରଦର୍ଶନୀକୁ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ବୁଲି ଦେଖୁଛନ୍ତି (୨୫/୯)।

# ପାଇକ ଆଖଡ଼ା

● ଅନାଦି ସାହୁ

କଳିଙ୍ଗ, କଙ୍ଗୋଦ, କୋଶଳ, ଉତ୍କଳ—ଏହି ସବୁର ସମ୍ମିଶ୍ରଣରେ ଓଡ଼ିଶା ଗଠିତ ହେବାର ବାରଶହ ବର୍ଷତଳେ କଳିଙ୍ଗ ଓ କଙ୍ଗୋଦ ଏକ ହୋଇଯାଇଥିଲା । ତାର ଶହେ ଦେଢଶହ ବର୍ଷ ପରେ କୋଶଳ ଅଧିପତି ଉତ୍କଳ ଓ କୋଶଳର ଏକୀକରଣ କରାଇଲେ ଦକ୍ଷିଣରେ କଳିଙ୍ଗର ରାଜ୍ୟସୀମା ପ୍ରାୟତଃ ମହାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏବଂ ଉତ୍ତରରେ ଉତ୍କଳର ସୀମା ମହାନଦୀଠାରୁ ବାଁଶିପା ଅଥବା ଅକସ୍ମାତ୍ ଗଙ୍ଗା ପର୍ଯ୍ୟନ୍ତ ବିସ୍ତୃତ ଥିଲା ।ଏତେବଡ଼ ରାଜ୍ୟ ଏକାଠି ରଖିବାପାଇଁ ସୈନ୍ୟବଳର ଆବଶ୍ୟକତା ଅନେକ । ସେ ଗଙ୍ଗ ହୁଅନ୍ତୁ ଅଥବା କେଶରୀ ହୁଅନ୍ତୁ ରାଜ୍ୟର ରକ୍ଷା ପାଇଁ ଅନେକ ଲୋକଙ୍କୁ କାମରେ ଲଗେଇଲେ । ସବୁ ଜାତିର ଲୋକ ଯଦିଚ ଯୁଦ୍ଧ ପାଇଁ ଆଗୁସାର ନଥିଲେ ତଥାପି ତତ୍କାଳୀନ ସମାଜରେ ଅନେକ ଜାତି ଯୁଦ୍ଧପାଇଁ ଆଗଭର ହେଉଥିଲେ ।ତା'ର ବଡ କାରଣ ଥିଲା ସମାଜରେ ପ୍ରତିଷ୍ଠା ଏବଂ ଯୁଦ୍ଧରେ ମୃତ୍ୟୁପରେ ସ୍ୱର୍ଗପ୍ରାପ୍ତିର ଲୋଭ ।

କଳିଙ୍ଗରେ ମୁଖ୍ୟତଃ କାମ୍ପି, କାଳିନ୍ଦି, କୁନ୍ତୁମ, ଗୋଲା, ଚଷା, ବେଗେଇତ ଓଡ଼ିଆ, ଶୁଦ୍ଧ ଶବର, ପନ୍ଦରା ପ୍ରଭୃତି ଜାତି ଯୁଦ୍ଧ କରୁଥିଲେ । ଉତ୍କଳରେ ଉଗ୍ର, ଓଡ଼ଚଷା, ଚଷା, ଗଉଡ଼, ଦଳେଇ, ଖଣ୍ଡୁ, ମାଳୀ, ତାମ୍ବୁଲି, ଗଣ୍ଡ ପ୍ରଭୃତି ଜାତି ଯୁଦ୍ଧ କରୁଥିଲେ । ରାଜାମାନେ ସେମାନଙ୍କ ପାଇଁ ନିଷ୍କର ଜମି ଗଡି ଦେଉଥିଲେ ।

ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗଦେବ କଳିଙ୍ଗକୁ ବିସ୍ତାର କରି ଉତ୍କଳକୁ ନିଜ ରାଜ୍ୟସହ ମିଶାଇ ଦେଲେ ଏକାଦଶ ଶତାବ୍ଦୀରେ । ଯେତେବେଳେ ତାଙ୍କ ଦାୟାଦ ଅନଙ୍ଗଭୀମଦେବ ରାଜ୍ୟଭାର ଗ୍ରହଣକଲେ ସେତେବେଳେ ତ୍ରିକଳିଙ୍ଗ ସୀମା ବହୁତ ବଢ଼ିଯାଇଥିଲା । ତ୍ରିକଳିଙ୍ଗକୁ ବାହ୍ୟଶତ୍ରୁର ଆକ୍ରମଣରୁ ରକ୍ଷା କରିବା ପାଇଁ ତଥା ଆଭ୍ୟନ୍ତରୀଣ ବିଦ୍ରୋହ ଦମନ ପାଇଁ ଅନଙ୍ଗଭୀମ ଅନେକ ଅଭିନବ ଚିନ୍ତା କରିଥିଲେ । ତା'ଭିତରୁ ପ୍ରଥମ ଏବଂ ପ୍ରଧାନ ଚିନ୍ତା ହେଲା ଦେଶଟାକୁ ଜଗନ୍ନାଥଙ୍କୁ ଅର୍ପଣ କରିଦେବା, ଦ୍ୱିତୀୟ ହେଲା ସେନାବାହିନୀକୁ ସୁଦୃଢ଼ କରିବା । ହୁଏତ ସେତିକିବେଳେ ପାଇକ ଜାତିର ଉଦ୍ଭବ ହୋଇଥିବ ।

ପାଇକ ଜାତିଟା ଯେବେ ଆସୁନା କାହିଁକି ଓଡ଼ିଶା ନାମଟା ପ୍ରଥମେ ଆସିଥିଲା ଅନଙ୍ଗଭୀମଙ୍କ କେତେ ପୁରୁଷ ପରେ ତାଙ୍କ ଦାୟାଦ କାମାର୍ଣ୍ଣବ ଦେବଙ୍କ ସମୟରେ । ବାହ୍ୟଶତ୍ରୁ ଆକ୍ରମଣରେ ଖଣ୍ଡବିଖଣ୍ଡିତ ହୋଇଆସୁଥିଲା ଏହି ରାଜ୍ୟ । ରାଜ୍ୟର ଶକ୍ତେ ନିଜକୁ ସ୍ୱାଧୀନ ଘୋଷଣାକରି ପିଷ୍ଟପୁର (ଆଧୁନିକ ପିଠାପୁରମ୍) ଠାରେ ରାଜଧାନୀ ସ୍ଥାପନ କରିଥିଲେ । ତା'ର ରାଜା ଥିଲେ ବାହାଲୋକ ରେଡ୍ଡି । ସେ ସଙ୍ଗୀତ ପ୍ରିୟ ରାଜାଥିଲେ । ସେ ଯେଉଁ ସଙ୍ଗୀତର ଧାରାଗୁଡ଼ିକୁ ଏକାଠି କରିଥିଲେ ତାର ନାମକରଣ କରିଥିଲେ ଓଡ଼ିଶୀ ସଙ୍ଗୀତ । ସାଧାରଣତଃ କଳିଙ୍ଗୋଡ୍ର, ସାବେରୀ ଓ ଘଣ୍ଟାରବ ରାଗଗୁଡ଼ିକ ଓଡ଼ିଶାର ନିଜସ୍ୱ ରାଗ ବୋଲି ମତ ଦିଆଯାଏ । ମହାକାନ୍ତାରରେ (କୋରାପୁଟ, କଳାହାଣ୍ଡି ଓ ବସ୍ତରକୁ ନେଇ) ଚତୁର୍ଥ ଶତାବ୍ଦୀରେ ସ୍ଥାପିତ ରାଜ୍ୟ ମଧ୍ୟ ଭାଗରେ ପ୍ରବାହିତ, ପରବର୍ତ୍ତୀ କାଳରେ ଓଡ଼ିଶାର ସୀମା ନିର୍ଦ୍ଧାରଣ କରୁଥିବା ପାହାଡ଼ୀନଦୀ ସାବେରୀର କଳ କଳ ମୁର୍ଚ୍ଛନାରୁ ବୋଧହୁଏ ସାବେରୀ ରାଗର ଜନ୍ମ ଘଣ୍ଟାରବ ଜଗନ୍ନାଥଙ୍କ ରଥଯାତ୍ରା ସମୟର ଘଣ୍ଟାନାଦରୁ ଉଦ୍ଭବ । ପରବର୍ତ୍ତୀ କାଳରେ ପାଇକ ଓ ଘଣ୍ଟାରବ ଓତଃପ୍ରୋତଃ ଭାବେ ଜଡ଼ିତ ହୋଇଗଲେ ।ଢୁମ୍ପା, ଡାପ ଓ ଘୁମୁରାର ରାଗ ରାଗିଣୀ ଓଡ଼ିଶାର ନିଜସ୍ୱରାଗ —ତାହା କଳିଙ୍ଗୋଡ୍ର ରାଗର ପରବର୍ତ୍ତୀ ରୂପାୟନ ହୋଇପାରେ । ଭେରୀ, ତୂରୀ, କାହାଳୀ, ଢୁମ୍ପା, ଡାପ, ଘୁମୁରା, ଟିକିରା, ଝାଞ୍ଜ, ଶଙ୍ଖ, ମାଦଳ, ଢୋଲ, ଦାଉଣ୍ଡି, ପୁଟହ ପ୍ରଭୃତି ବାଦ୍ୟଯନ୍ତ୍ର ପାଇକର —ଯୁଦ୍ଧଯାତ୍ରା ଓ ଯୁଦ୍ଧ ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

ପାଇକ ଜୀବନଧାରାକୁ ଶୃଙ୍ଖଳିତ କରିଥିଲେ ଗଜପତି କପିଳେନ୍ଦ୍ର ଦେବ । ଅନଙ୍ଗଭୀମ ଦେବଙ୍କ ପରି ସେ ଥିଲେ ଦୂରଦର୍ଶୀ । ତାଙ୍କ ବିରୁଦା ବଳୀରୁ ଏବଂ ବିଭିନ୍ନ ଶୀଳାଲେଖ, ଜଗନ୍ନାଥ ମନ୍ଦିରରେ ଉତ୍କୀର୍ଣ୍ଣ ଲେଖାରୁ ଜଣାଯାଏ ସେ ବିଶାଳ ସାମ୍ରାଜ୍ୟର ଅଧିଶ୍ୱର ହୋଇଥିଲେ । ଗୋଟିଏ ବିଶାଳ ସାମ୍ରାଜ୍ୟକୁ ଆଭ୍ୟନ୍ତରୀଣ ଅସ୍ଥିରତାରୁ ରକ୍ଷା କରିବା, ବାହ୍ୟ ଶତ୍ରୁର ଆକ୍ରମଣରୁ ରକ୍ଷାକରିବା ସହଜ କଥା ନୁହେଁ । ସେଥିପାଇଁ ସେ ବିଶାଳ ସୈନ୍ୟ ଦଳ ଗଠନ କରିଥିଲେ । ବିଶାଳ ସୈନ୍ୟ ଦଳ ଗଠନ ପାଇଁ ଅନେକ ପ୍ରଶାସନିକ ବ୍ୟବସ୍ଥା ହାତକୁ ନେବାକୁ ପଡେ । ପ୍ରଥମ ହେଉଛି, କାହାକୁ ସୈନ୍ୟ ବାହିନୀ ପାଇଁ ବଛା ଯିବ । ଦ୍ୱିତୀୟ ତା'ର ପ୍ରଶିକ୍ଷଣ କେମିତି ହେବ । ତୃତୀୟ ତା'ର ପରିବାରର ଭରଣ ପୋଷଣ କେମିତି କରାଯିବ ଏବଂ ଚତୁର୍ଥ ସେ

ବୃଦ୍ଧାବସ୍ଥାକୁ ଆସିଗଲେ ତା'ର ଥଇଥାନ କେମିତି କରାଯିବ । ସବୁଠାରୁ ବଡ ହେଲା ଯୁଦ୍ଧାବସ୍ଥା ନ ଥିଲେ ସେ କ'ଣ କରିବ ?

ତା'ଙ୍କୁ ଆଖି ଆଗରେ ରଖି ପାଇକ ବାହିନୀ ଗଢ଼ାଗଲା, ଯେଉଁମାନେ କେବଳ ଯୁଦ୍ଧ ପାଇଁ ରହିଲେ, ସେମାନଙ୍କର କାମ ହେଲା ଆକ୍ରମଣ ହେଲେ ଯୁଦ୍ଧ କରିବେ । ଯୁଦ୍ଧ ଯାତ୍ରାରେ ସବୁବେଳେ ଆଗୁସାର ହେବେ, ସେମାନେ ହେଲେ ପାଇକ ଜାତି ଓ କ୍ଷତ୍ରୀୟ ଜାତି । ପାଇକ ଭିତରେ ଅନେକ ଗୋଷ୍ଠୀ—କିଏ ଆଗକୁ ଦୌଡ଼ିବା ପାଇକ, କିଏ ଗଛ ଡ଼ାଳରେ ଚୁପ୍ କରି ବସି ଶତ୍ରୁର ଗତିବିଧି ଦେଖିବା ପାଇକ, କିଏ ଅତର୍କିତ ଆକ୍ରମଣ କରିବା ପାଇକ, କିଏ ଗଡ଼ ରକ୍ଷା କରିବା ପାଇକ । ଯେଉଁମାନେ ବାହ୍ୟ ଶତ୍ରୁ ଆକ୍ରମଣ ବେଳେ ଯୁଦ୍ଧକୁ ଯିବେ, ଗଜପତି ଅନ୍ୟ କୌଣସି ରାଜ୍ୟ ଜୟ ପାଇଁ ନିଜେ ସୈନ୍ୟଚାଳନା କରିବେ, ସେତେବେଳେ ନିଜ କାମ ଧନ୍ଦାରେ ଲାଗିଥିବା ମୌଳିକ ବୃତ୍ତି ପ୍ରତି ନଜର ଦେଉଥିବା ଯୁଦ୍ଧପ୍ରିୟ ଜାତି ହୋଇଗଲେ ଖଣ୍ଡାୟତ । ଆଜି କାଲିର ମିଲିସିଆ ସେମାନେ । ଶାନ୍ତି ସମୟରେ ନିଜର ମୌଳିକ କାର୍ଯ୍ୟ କରିବେ, ଯୁଦ୍ଧ ବେଳେ ଯୁଦ୍ଧ ।

ସେ ପ୍ରକାର ଲୋକଙ୍କୁ ତାଲିମ୍ ନ ଦେଲେ ଯୁଦ୍ଧ କରିବେ କେମିତି ? ସେଥିପାଇଁ ପ୍ରତି ଗାଁରେ ଆଖଡ଼ା ସବୁ ପ୍ରତିଷ୍ଠିତ ହେଲା । ଆଖଡ଼ାର କାମ ହେଲା ପିଲାରୁ ଜେଷ୍ଠିଆ ପର୍ଯ୍ୟନ୍ତ ସମସ୍ତଙ୍କୁ ଦଣ୍ଡ ବୈଠକ, ମଲ୍ଲଯୁଦ୍ଧ ଶିଖେଇବା, ଶୁନଚିତ୍, ମାଙ୍କଡ଼ଚିତ୍ ମାରିବା, ଫରୀ, ଜମଦାଢ଼, ଖଣ୍ଡା, ଗଦା, ବର୍ଚ୍ଛା, ବାଙ୍କଛୁରୀ ଚଳେଇବା, ବାଲୁତ ଦାନ୍ତି ବାଘନଖିଆ ବ୍ୟବହାର କରିବା, ବନାଟ, ବାଡ଼ି ବୁଲେଇବା ଶିଖେଇବା, ରଣପା ଚଢ଼ିବା ଏବଂ ଧନୁର୍ବିଦ୍ୟା ଶିକ୍ଷା ଦେବା ।

ଆଖଡ଼ାରେ କ'ଣ ହେଉଥିଲା ତାକୁ ଜାଣି ହେବ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଲେଖାରୁ—

ପୋଏ ସଜାଡ଼ି କାଛଟା ଭିଡ଼ି
ଧାଡ଼ିକିଧାଡ଼ି ଆଗେ ଦଉଡ଼ି
ଯୋଡ଼ିକି ଯୋଡ଼ି ବୁଲାନ୍ତି ବାଡ଼ି ତନୁକୁ ଆଡ଼ି ଯେ,
କେହୁ ପଉଡି ନିଅଇ ତଡ଼ି
କେହୁ ବାହୁଡ଼ି ମାରଇ ଓଡ଼ି
କାହାକୁ ମୋଡ଼ି ଛାଡ଼ଇ ଉଡ଼ି ଶିରକୁ ଝାଡ଼ି ଯେ,
ଏକ ମାଲ ବିକ୍ଷେପରେ ଯାଉଛି ଗଡ଼ି ଯେ,
କେ କାହା ଉପରେ ପୁଣି ବସଇ ମାଡ଼ି ଯେ,
କେ ମୋଡ଼ା ମୋଡ଼ି କେ ଭିଡ଼ା ଭିଡ଼ି
କେ ଜଡ଼ା ଜଡ଼ି କେ ଛଡ଼ା ଛଡ଼ି
କେ ପଡ଼ାପଡ଼ି କେ କୋଡ଼ାକୋଡ଼ି କେ ହୁଡ଼ାହୁଡ଼ି ଯେ ।

ଏବେ ଯେମିତି ଭାର ଉତ୍ତୋଳନ ହେଉଛି, ସେତେବେଳେ ସେମିତି ଭାରଉଠା କାମ ଆଖଡ଼ା ଘରେ ହେଉଥିଲା ।ଗୋଲ— ଗୋଲ ପଥରକୁ ଉଠେଇବା ପାଇଁ ଗୁରୁମାନେ ଆଖଡ଼ାରେ ତାଲିମ୍ ଦେଉଥିଲେ । ଏବେ ସୁଦ୍ଧା ପୁରୀ ଓ ଖୋର୍ଦ୍ଧା ଅଞ୍ଚଳରେ ଖଣ୍ଡାୟତ ଗାଁରେ ଅକଳନ୍ ଛୁହାଯାଉଥିବା ଓଜନଉଠା ପଥର ଦେଖିବାକୁ ମିଳେ ।

ପାଇକ ପଟା ସାଧନ ଥିଲା ଅନ୍ୟଏକ ରଣ କୌଶଳ । ଦୁଇହାତ ଖୋପଭିତରେ ଭର୍ତ୍ତି କରି ପ୍ରତିପକ୍ଷକୁ ଆକ୍ରମଣ କରିବା ଓ ନିଜକୁ ପ୍ରତିପକ୍ଷ ଆକ୍ରମଣରୁ ରକ୍ଷାକରିବା ଏହି ସାଧନାର ନୀତି, ଏଥିରେ ଲଫା, ଗୋଡିଆ ଫରୀ ଏମିତି ଗୁନ୍ଥିତ ହୁଏ ଯେ ନିଜକୁ ରକ୍ଷା କରିବା ପାଇଁ ଢ଼ାଲର ଆବଶ୍ୟକତା ପଡ଼େନାହିଁ । ମୁଣ୍ଡ ପାପୁଲି ଖୋପଭିତରେ ଥିବାରୁ ହାତଉପରେ କୌଣସି ଘାତ ହୁଏନାହିଁ ।

ଆଦିକବି ସାରଳାଦାସ, ଓଡ଼ିଆ ପାଇକର ଖଣ୍ଡା ଓ ଗଦା ସାଧନାକୁ ଆଖିଆଗରେ ରଖି ଥିଲେ:—

ଛେଇ ଶିଳମଣି ଟିଗାରେ ଛେଲ ଛନ୍ଦି ମାରିବୁ
ଶ୍ୟାମଘନ ଗଦା ସାମ୍ବଣା ଆଡ଼ଧରି ପିଟିବୁ

ପବନ ପରଞ୍ଜି ଖଣ୍ଡାକୁ ଶୂନ୍ୟେ ଉଡାଣି ଟେକ
ଶିଶୁମୁନେ ଖଣ୍ଡା ଗଳିରେ ତୁଯେ ହେବୁ ନିବକ
ଭାବଗ୍ରାହୀ ଭୂତନାଥଙ୍କୁ ତୁଲ୍ୟକରି ଗୁହିବୁ
ଦୁଷ୍ଟ ଦଳନ ଦାଉଣିରେ ଖଣ୍ଡାହାତ ଥୋଇବୁ

ମାଙ୍କଡ଼ଚିତ୍, ଶୁନ୍ୟଚିତ୍ ମାରିବା ଏବଂ ବାଡ଼ି ବୁଲେଇ ନିଜକୁ ରକ୍ଷାକରିବା, ଖଣ୍ଡା ଚଳେଇ ପ୍ରତିପକ୍ଷର ଆକ୍ରମଣରୁ ରକ୍ଷାକରିବା ପାଇଁ ଖାଲିହାତରେ କାମ ବା ବଳ ହେଲେ ଚଳିବନାହିଁ । ସେଥିପାଇଁ ପାଦର ଅବସ୍ଥିତି, ଗୁଳି ଓ ପଛକୁ ହଟିଯିବା କୌଶଳ ନିହାତି ଦରକାର । ଆଧୁନିକ ମୁଷ୍ଟି ଯୁଦ୍ଧର ଉଦାହରଣ ଦେଲେ ସାଧାରଣ ପାଠକ ବୁଝିପାରିବେ ।ମୁଷ୍ଟି ଯୁଦ୍ଧରେ ମୁଠାହାତ ସାହାଯ୍ୟରେ ପ୍ରତିପକ୍ଷର କମରପଟିଠାରୁ ମୁଣ୍ଡ ପର୍ଯ୍ୟନ୍ତ ଆଘାତ କରାଯାଏ । ଗୋଟିଏ ଜାଗାରେ ଖମ୍ବ ପରି ଛିଡା ହୋଇ ଆଘାତ କଲେ ପ୍ରତିପକ୍ଷ ତରକା ହୋଇ ବାଁ ଡ଼ାହାଣରୁ ଯୋଡାଏ ମୁଷ୍ଟି ଲଗାଇ ଦେବ । ସେ ପ୍ରକାର ତରକା ଆକ୍ରମଣରୁ ରକ୍ଷା ପାଇଁ ଏବଂ ମଉକା ଦେଖି ଆଗକୁ ବଢ଼ି ଯୋଡାଏ ମୁଷା ମାରିବା ପାଇଁ ପାଦ ଗୁଳିର ଆବଶ୍ୟକତା ବେଶୀ ।

ପାଇକମାନଙ୍କ ରଣ କୌଶଳ ପାଇଁ ଦଶ ପାଦ ଗୁଳି ଶିକ୍ଷା ଦିଆ ଯାଉଥିଲା । ଏବେ ଦଶ ପାଦ ଗୁଳି କୌଣସି ଆଖଡ଼ାରେ ନାହିଁ ।ଅଧି ଅଧିକା ହେଲେ ଚାରିପାଦ ଗୁଳି । ଦଣ୍ଡନାଚର ଚଟେଶ୍ୱାର ଚମ୍ପାକୃତି ଗତି ସେହି ଦଶ ପାଦ ଗୁଳିର ଗୋଟାଏ ଅଂଶ । ଦଶପାଦ ଗୁଳିକରି ଓ ପ୍ରବଳ ବେଗରେ ବାଡ଼ି ବୁଲେଇ ଓଡ଼ିଆ ପାଇକ ନିଜକୁ ରକ୍ଷାକରିପାରୁଥିଲା ଶତ୍ରୁର ତୀର ବର୍ଷଣରୁ । ବୋଧହୁଏ ସେଇଥି ପାଇଁ ଗଜପତି ପ୍ରତାପରୁଦ୍ରଙ୍କ ମୁଖ୍ୟ ବୀରଭଦ୍ର ଦେବ ଦକ୍ଷିଣ ଭାରତରେ ଦକ୍ଷ ଅଶୀ ଗୁଳକର ପ୍ରସିଦ୍ଧି ଲାଭ କରିଥିଲେ । ପାଇକ ପଟ୍ଟା ସାଧନ ସହିତ ଦଶ ପାଦ ଗୁଳିର ସମନ୍ୱୟ ଯୋଦ୍ଧାକୁ ବୀର ପାଇକ କରାଏ ।

ଆଖଡାର ଶିକ୍ଷା ପରେ କୋଡିଏ ବର୍ଷ ବୟସରେ ପାଇକ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲା । ହଳଦୀ, ଚୂନା ମାଖି ଓ ଚୂନା ଚୂଳ

ପ୍ରତି ଗ୍ରାମ ଦେବତୀଙ୍କ ପାଖରେ ଶପଥ ନେଉଥିଲା ପାଇକ । କିଏ ପାଇକ ହେବ ସେଥିପାଇଁ ଜାତିଗତ ବାଛ ବିଚାର ନଥିଲା । ଯିଏ ବଳୁଆ ହେଲା ସେ ହେଲା ପାଇକ । ସବୁ ପାଇକ ଯେ ଯୁଦ୍ଧକୁ ଯିବେ ତାହା ନ ଥିଲା । ପରିବାରର ସୁବିଧା ଅସୁବିଧାକୁ ନେଇ ପାଇକ ଯୁଦ୍ଧକୁ ଯାଉଥିଲା । ଯୁଦ୍ଧକୁ ଯିବା ଦରକାର ପଡିଲେ ନାଗରା ବାଜୁଥିଲା । ଗାଁ ଗାଁକୁ ନାଗା ଆସୁଥିଲା, ଦଳବେହେରାଙ୍କୁ ଯୁଦ୍ଧକୁ ନିମନ୍ତ୍ରଣ ଆସୁଥିଲା । ଯୁଦ୍ଧକୁ ଯିବାବେଳେ ଗ୍ରାମ ଦେବତୀଙ୍କ ପାଖରେ ଗୋଟାଏ ଉତ୍ସବ ହେଉଥିଲା । ଶ୍ରୁଳିଶ ବର୍ଷ ହେବା ପରେ ପାଇକକୁ ଯୁଦ୍ଧକୁ ଯିବାମନା, ସେ ଦୁର୍ଗ ରକ୍ଷକ ହୋଇପାରେ, ଗୁରୁ ହୋଇପାରେ ଅଥବା ଯୁଦ୍ଧ ପାଇଁ ପଠାଯାଉଥିବା ଶଗଡ଼ିଗୁଡ଼ିକର ଦାୟିତ୍ୱରେ ରହିପାରେ ।

ହଳଦୀ ଲଗେଇବା, ସିନ୍ଦୁର କଲି କରିବା ଏବଂ ପାଇକଛା ମାରିବା ଥିଲା ପାଇକର ପ୍ରଧାନ ପରିପାଟୀ । ହଳଦୀ ଲଗେଇଲେ ମଶା କାମୁଡ଼ିବ ନାହିଁ । ପାଇକଛା ମାରି ପିନ୍ଧିଲେ ଅଣ୍ଟା ମଜବୁତ୍ ହେବ ଓ ଚାଲିବା ସହଜ ହେବ । ଏବେ ବି ଗଞ୍ଜାମର ଗୋଲା ସମ୍ପ୍ରଦାୟ ହଳଦୀ ଲଗେଇ ଥାଆନ୍ତି ଓ ପାଇକଛା ମାରି ଆଣ୍ଠୁ ପର୍ଯ୍ୟନ୍ତ ରହିଥିବା ମୋଟା ଖଦୀ ପିନ୍ଧନ୍ତି ।

ପାଇକର ପରିଧାନ ଶିରସ୍ତ୍ରାଣ, ଅଙ୍ଗୀ, ପାଇକଛା ମରା ଧୋତି, ବାହୁବନ୍ଧ ଓ ପାଞ୍ଜୋଇ । ଅସ୍ତ୍ରଥିଲା, ଢାଲ କଟିଢାଲ, ଖଣ୍ଡା, ବାଙ୍କଚୁରୀ, ଧନୁତୀର ଓ ଶିବୁଳୀ । ପରବର୍ତ୍ତୀ କାଳରେ ଓଡ଼ିଆ ନଳିର ପ୍ରଚଳନ ପରେ ରଂଜକ ରଣି ଅଣ୍ଟା ପାଖରେ ରହିଲା । ଯେଉଁ ପାଇକ ଯେତେ ବଳବାନ୍ ଥିଲା, ଯୁଦ୍ଧ କ୍ଷେତ୍ରରେ ଗଦା ବୁଲେଇ ଅଥବା ଯମଦାଢ ଉଞ୍ଚେଇ ଶତ୍ରୁକୁ ନିପାତ କରୁଥିଲା ସେ ସେତିକି ପଦୋନ୍ନତି ପାଉଥିଲା । କିନ୍ତୁ ଏହି ପଦୋନ୍ନତି ସୀମିତ ଥିଲା । ସେମାନେ ସେନାପତି ହୋଇ ପାରୁ ନ ଥିଲେ । ସେନାପତି ହେଉଥିଲେ ବ୍ରାହ୍ମଣ ଓ କ୍ଷତ୍ରୀୟ । କ୍ଷତ୍ରୀୟଙ୍କର ସଂଜ୍ଞାଥିଲା ଦେବ, ବାଘ, ନାଗ, ସିଂହ, ଭଞ୍ଜ ଇତ୍ୟାଦି । ବ୍ରାହ୍ମଣଙ୍କର ସଂଜ୍ଞାଥିଲା ବହିଁପାତ୍ର, ଖଡ୍ଗ ରାୟ, ସାମନ୍ତ ରାୟ, ସେନାପତି, ଦଳବେହେରା, ଦଳେଇ, ବାହିନୀପତି । ସେନାପତି ହେବାପାଇଁ ସେମାନଙ୍କୁ ଅନ୍ୟ ଏକ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡୁଥିଲା । ସେମାନେ ଅସ୍ତ୍ର ଶସ୍ତ୍ର, ହାତୀ ଘୋଡ଼ା ବିଭିନ୍ନ ଶସ୍ତ୍ର ଯୁଦ୍ଧ ଓ ସନ୍ଧି ସମ୍ବନ୍ଧୀୟ ଜ୍ଞାନ ଆହରଣ କରିବା ନିହାତି ଆବଶ୍ୟକ ଥିଲା । ଘୋଡା ଚଢ଼ି ନ ଜାଣିଲେ କି ସେନାପତି ହେବ । କେତେ ପ୍ରକାର ଘୋଡ଼ା ଅଛି ଜାଣି ନ ପାରିଲେ ସେନାପତି ଅଯୋଗ୍ୟ ବିବେଚିତ ହେବ । କେତେ ପ୍ରକାରର ଘୋଡ଼ା ଅଛନ୍ତି ତା' ସମ୍ପର୍କରେ ସାରଳା ଦାସ ସୁଚେଇ ଦେଇଛନ୍ତି ତାଙ୍କ ମହାଭାରତରେ ଏଠାରେ ଅପ୍ରାସଙ୍ଗିକ ମନେହେଲେ ସୁଦ୍ଧା ସୁଚେଇଦେବା ଉଚିତ୍ ହେବ:– ବିକଟ, ବିକରାଳ, ବିକଟାଳ, ବିଲୋପା, ଧୋକଡ଼ା, ବାଣୁଆ, କରକଟା ବାଧକା କାମୋଡ଼ା ବିହଡ଼ା ଅବିକାର ସୁଅ, ଗଣ୍ଡକ ପାଙ୍ଗୁରା ଶିରଟା, ବିଜଡା ରଣଭଙ୍ଗୀ ଘେ ମେଦୁଆ ନହସୁଟା, ବାନ୍ତିଲା ବାଟିଲା ଯେ ଟରକା ଅଣ୍ଟାଭଙ୍ଗା ରଶୀକଳା, ତାଲୁକା କଙ୍କାଳ ଭଙ୍ଗା ବିରଳା ଜଳକା ପାଗଳା, ଇତ୍ୟାଦି ।

ପାଇକ ଯୁଦ୍ଧ ଯାତ୍ରାରେ ଗଲାବେଳେ ଅଥବା ଯୁଦ୍ଧ କଲାବେଳେ କେତେ ପ୍ରକାରର ରଡ଼ି କରେ । ରଡ଼ି ନକଲେ ମନରେ ସାହାସ ଆସିବ ନାହିଁ, ରାଗ ଲାଗିବ ନାହିଁ । ସେ ପ୍ରକାରର ରଡ଼ିକୁ କୁହାଯାଏ ପାଇକ କୁହାଟ । ବାଟ ଚାଲିଲା ବେଳେ, ଯୁଦ୍ଧ ପାଇଁ ଉଦ୍ଦିପନା ଦେବାପାଇଁ ଦରକାର ପଡ଼ିଲେ ବୀରତ୍ୱ ବ୍ୟଞ୍ଜନ, ଦେଶପ୍ରେମ ସମ୍ବଳିତ ଓ ରାଜ ଅନୁଗତ ଅନେକ ସଙ୍ଗୀତ ଗାନ କରାଯାଉଥିଲା । ପରବର୍ତ୍ତୀ ଯୁଗରେ ସେଗୁଡ଼ିକ ପାଇକ ଖେଦା ଆକାରରେ ଆଖଡ଼ାରେ ରହିଲା ଓ ତାକୁ ପାଇକମାନେ ଗାଇବାରେ ଲାଗିଲେ – ସେମାନେ ରଣହୁଙ୍କାର ଦେଇ କହିଲେ–

ମହୀରେ ମହୀପତି–ତଳେ ବସୁମତୀ,
କଳିଯୁଗ ଖଣ୍ଡା–ଖାଡ଼ ପରଙ୍ଗ ଖଣ୍ଡା ।

ଆଲଟ ଚାମର, ଢାଲ, ତଲୁଆର ଦେବଙ୍କ ମଣ୍ଡବେ ଛାଡ଼ିକି ଦୁଆର ପାଗ ଶତ୍ରୁ ବରହେ ଆଗ ।

ବନାଟି ବୁଲେଇବା, ବାଙ୍କଚୁରୀ ଚଳେଇବା ଆଦି ସଙ୍ଗୀତ ଓ ନୃତ୍ୟ ମାଧ୍ୟମରେ ପରିବେଷିତ ହେଲା ।

ଗୋହୀରା ଟିକିରି, ଶିଖ୍ରୁ ମନାଇ, ଚରଣ ପଟ୍ଟନାୟକ ଓ ପାଇକ ବିଦ୍ରୋହ ପରେ ପାଇକର ଯୁଦ୍ଧ ପ୍ରବୃତ୍ତି ନଷ୍ଟ ହୋଇଗଲା, କିନ୍ତୁ ପୁରୁଷାନୁକ୍ରମେ ଅଭ୍ୟାସ କରୁଥିବା ଶାରୀରିକ କୌଶଳକୁ ଛାଡ଼ି ପାରିଲେ ନାହିଁ । ସଙ୍ଗୀତପ୍ରିୟ, ନୃତ୍ୟପ୍ରିୟ ଜାତିଟା ଖଣ୍ଡାଖେଳ, ବାଡ଼ିଖେଳ ଓ ଦଣ୍ଡ ଗୁଡ଼ିକୁ ମିଶେଇ ତାଳଲୟ ଠିକ୍ କରି ଅଳ୍ପ କେତୋଟି ବାଜା ସାହାଯ୍ୟରେ ତା'ର ପୁରୁଣା ଅଭ୍ୟାସଗୁଡ଼ିକୁ ପୁରୁଷାନୁକ୍ରମେ ବଞ୍ଚେଇ ରଖିଲା । ବେଶୀକରି ଗଡ଼ଜାତ ରାଜାମାନଙ୍କର ପୃଷ୍ଠପୋଷକତାରେ ପାଇକ ଆଖଡ଼ା ସଙ୍ଗୀତ ମୁଖର ହୋଇପଡ଼ିଲା । ବିଶି, ମୁନ୍ଦ୍ରିକ (ମୁଣ୍ଡଛିଣ୍ଡା) ଦଳେଇ, ବିଶୋୟୀ, ଚମ୍ପତି, ଦଣ୍ଡସେନା, ରାଉତ, ପ୍ରଭୃତି ସଂଜ୍ଞାଧାରୀ ଲୋକ ପାଇକ ଆଖଡ଼ାକୁ ବଞ୍ଚେଇ ରଖିଲେ ।

ଯାତ୍ରା ପ୍ରତ୍ୟେକ ଗାଁରେ ଥିଲା, ଏବେ ଅଳ୍ପ କେତୋଟି ଗାଁରେ ସୀମାବଦ୍ଧ ହୋଇଯାଇଛି । ୧୯୯୦ ମସିହାରେ ଏ [illegible]ରେ ତଥ୍ୟ ସଂଗ୍ରହ କରାଯାଇ ଦେଖା ଯାଇଥିଲା ଯେ [illegible]ମୋଟେ ସତସ୍ତରୀଟି ପାଇକ ଆଖଡ଼ା ଦଳ ଓଡ଼ିଶାରେ ରହିଛି । ସେମାନଙ୍କର ନିଜସ୍ୱ ଗାରିମା ରହିଛି, ଅଭିମାନ ରହିଛି । ଗଡ଼ ମାଣିକୀ ପାଇକ ଆଖଡ଼ା କହେ ଦିଲ୍ଲୀ ବାଦଶାହ ବିରୁଦ୍ଧରେ ଗଜପତିକୁ ଦେଇଥିବା ଆଶ୍ୱାସନା, ମାଣିକୀ ଗଡରୁ ଯୁଦ୍ଧଯାତ୍ରାର ଅନୁଭୂତି ଶେବେଣା ନୂଆଗାଁ ପାଇକ ଆଖଡ଼ା କହି ଥାଏର ଲୋମହର୍ଷଣ, ରୋମାଞ୍ଚକର କାହାଣୀ ଶୁଣାଏ । ପାଟଳାଖେମୁଣ୍ଡି ଆଖଡ଼ା କହେ ଦୀର୍ଘ ଜୈତ ଯାତ୍ରାର କାହାଣୀ – ତିନିଶହ ବର୍ଷ ପୂର୍ବେ ମର୍ଯ୍ୟ ଗଜପତି ସିଂହାସନରୁ ବଞ୍ଚିତ ରାଜାର ଶେଷ ପ୍ରଚେଷ୍ଟା । ବାଙ୍କୋଇ ବୁଢ଼ ପାଇକ କହେ ଇଂରାଜୀର ତୋପ କମାଣ ବିରୁଦ୍ଧରେ ତା'ର ଶେଷ ଅସ୍ଫୋଳନ । ଘୁଡ଼ାପଙ୍କ ବିଶୋୟୀ ବର୍ଣ୍ଣନା କରେ ସତେ ଯେମିତିକି ସେ ନିଜେ ଭାଗ ନେଇଥିଲା ମରହଟ୍ଟା ବିରୁଦ୍ଧରେ– ଢେଙ୍କାନାଳ ଅବରୋଧ ବେଳେ । ସେ ଦୃଷ୍ଟି, ସେହି ଗାରିମାର ବର୍ଣ୍ଣନା ବେଳେ ମନେ ହୁଏ ଆଖି ଝଲସି ଉଠୁଛି । ହୁଏତ ଏହା ଗୋଟିଏ ରଣ ଦୁର୍ମଦ ଜାତିର ଅସ୍ତମିତ ଅଗ୍ନିଶିଖାର ଶେଷ କମ୍ପନ । କମ୍ପନ କ୍ଷୀଣହୋଇ ଉଠୁଛି– ପାଇକ ଆଖଡ଼ା ସଂଖ୍ୟା କମିବାରେ ଲାଗିଛି ।

ଏବେ ଯେଉଁ ପାଇକ ଆଖଡ଼ା ହେଉଛି ସେଥିରେ ଗୋଟାଏ ପଦ୍ଧତିକୁ ପ୍ରାୟ ଭୁଲି ଗଲେଣି । ପାଇକ ଆଖଡ଼ା ସମର କୌଶଳ ପ୍ରଦର୍ଶନ ଓଡ଼ିଶୀ ନୃତ୍ୟ ପରି । ଓଡ଼ିଶୀ ନୃତ୍ୟରେ ଯେମିତି ମଙ୍ଗଳା ଚରଣ ସେମିତି ପାଇକ ଆଖଡ଼ାରେ ଗଡ଼ ବନ୍ଦନା କରିବା କଥା । ପ୍ରଥମେ ଆଖଡ଼ା କରୁଥିବା ଯାଗାକୁ ଗୋଟାଏ ଗଡ଼ ଭାବେ ପ୍ରତିଷ୍ଠା କରିବା, ଖେଳ ପରେ ପରେ ଖେଳ ଦେଖାଉଥିବା ପାଇକ ରାଜା, ସାମନ୍ତ ବା ଅଧିକାରୀଙ୍କ ସମ୍ମୁଖକୁ ଆସି ଅଣୀ ଗ୍ରଳନା କରି, ପାଦ ଟିପରେ ଗୁଳି, ପ୍ରଣତ ହୋଇ, ମୁହଁ ପଛକୁ ନବୁଲେଇ କୁଦାମାରି ଫେରିଯିବ । ତାପରେ ଆସି ବିଭିନ୍ନ ରଣ କୌଶଳ ଦେଖାଇବ । ସେଥିପାଇଁ ରହିଥିବା ସ୍ୱତନ୍ତ୍ର ପଦ୍ଧତି ବର୍ତ୍ତମାନ କାର୍ଯ୍ୟକାରୀ ହେଉନାହିଁ । ସବୁଥିରେ ଯେମିତି ଅବକ୍ଷୟ ସେମିତି ପାଇକ ସମର କୌଶଳର ଅବକ୍ଷୟ । ଖାଲିଗୁଡ଼ାଏ ନାଁ ରହିଯାଉଛି– ବିଶୋଢ଼ୀ, ଦଣ୍ଡପାଟ, ସାହସାମଲ, ଦକ୍ଷିଣ କବାଟ, ଉତ୍ତର କବାଟ, ଖଡ଼୍ଗରାୟ, ସେନାପତି, ବାହିନୀପତି ଇତ୍ୟାଦି । ପାଇକ ପଟ୍ଟା ପରିବର୍ତ୍ତେ ଏବେ ଯୋଡ଼ାଏ ବାଡ଼ି ବ୍ୟବହାର କରାଯାଉଛି । କିଛି ବର୍ଷ ପୂର୍ବେ ଗାଁଗାଁ ଭିତରେ ଝଗଡ଼ା ହେଲାବେଳେ କଣାସ, ବ୍ରହ୍ମଗିରି ଅଞ୍ଚଳରେ ଖଣ୍ଡାୟତମାନେ ସାଞ୍ଜୁ ପିନ୍ଧି ଏକମୁନ, ଦୁଇମୁନ କୁନ୍ତଧରି ବାହାରି ଆସୁଥିଲେ । ଏବେ ବୋମା ବାହାରିବା ପରେ ସଞ୍ଜୁ ନାହିଁ କି କୁନ୍ତ ନାହିଁ ।

ପାଇକ ଆଖଡ଼ାର ବହୁଳ ପ୍ରସାର ହେଲା ପରେ ଅନେକ ଲୋକନାଟକରେ ତା'ର ପ୍ରଭାବ ପଡ଼ିଥିଲା, ପ୍ରହ୍ଲାଦ ନାଟକରେ ରଣପା ଖେଳି ଏକ ବିଶେଷ ଅଂଶ ହୋଇଥିଲା । ଜଳନ୍ତର, ଟରଳା, ଲୁଗୁରସିଂ, ଚିକିଟି, ସୁରଙ୍ଗୀ ଓ ଖେମୁଣ୍ଡି ଜମିଦାରୀଗୁଡ଼ିକରେ ବହୁଳ ପ୍ରସାରିତ ପ୍ରହ୍ଲାଦ ନାଟକର ଗୋଟିଏ ଆକର୍ଷଣୀୟ ଅଂଶ ଥିଲା ରଣପା ଖେଳି, ଏବେ ତାହା ଅବଲୁପ୍ତ ପ୍ରାୟ ।

ସୁଖର କଥା, ଓଡ଼ିଆ ଜାତି ଓ ପାଇକ ଜାତି ପାଇଁ ଗର୍ବ ଅନୁଭବ କରୁଥିବା ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବା ପରେ ମାନ୍ୟବର କ୍ରୀଡ଼ା ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଉଦ୍ୟମରେ ଗଲା ଦୁଇ ବର୍ଷ ଧରି ରାଜ୍ୟ ସ୍ତରୀୟ ପାଇକ ଆଖଡ଼ା ସମାରୋହ ଅନୁଷ୍ଠିତ ହୋଇ ପାଇକ ଆଖଡ଼ାକୁ ଉତ୍ସାହିତ କରାଯାଉଛି । ପାଇକ ଆଖଡ଼ାକୁ ଅଧିକ ସୁସଙ୍ଗଠିତ କରିବା ପାଇଁ ବୈଜ୍ଞାନିକ ଓ ଶାରୀରିକ ଶିକ୍ଷା ଏକାଡେମୀ ନାମରେ ଏକ ସ୍ୱତନ୍ତ୍ର ଏକାଡେମୀ କରିବା ପାଇଁ ରାଜ୍ୟ ସରକାର ବର୍ତ୍ତମାନ ସଚେଷ୍ଟ ହେଉଛନ୍ତି । ହେଲେ ଅସଲ କଥା ହେଉଛି, ସବୁକଥା ଯେ କେବଳ ସରକାରୀ ସ୍ତରରେ ହୋଇଯିବ ଭାବିବା ପୁରାପୁରି ଠିକ୍ ହେବ ନାହିଁ । ଏଥିପାଇଁ ଜନସାଧାରଣଙ୍କ ପୂର୍ଣ୍ଣ ସହଯୋଗ ଏକାନ୍ତ ଆବଶ୍ୟକ ।

ଦନେଇ ଦାସ କହିଥିଲା– କାତି ଧରିବା ପାଇଁ ଛାତି ଦରକାର । ଏବେ ଛାତି ନାହିଁ, ତେଣୁ କାତିଟା ପାଟକନାରେ ବନ୍ଧାହୋଇ ରହୁଛି । ଦଶହରା ବେଳେ ଖୋଲାଯାଇ ପୂଜା ହେଉଛି ।

କିଏ ଜାଣେ ଏ ଜାତିର ଛାତିଟା ପୁଣି କେବେ ଓସାରିଆ ହେବ ?

---

ଏ–୫, ସୁନାବେଡ଼ା, କୋରାପୁଟ ।



ଜଗନ୍ନାଥ ମନ୍ଦିର ସୁରକ୍ଷା ସମ୍ପର୍କରେ ରାଜ ଭବନଠାରେ ଅନୁଷ୍ଠିତ ଏକ ବୈଠକରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ସଭାପତିତ୍ୱ କରୁଛନ୍ତି । ଉକ୍ତ ବୈଠକରେ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର, ସଂସ୍କୃତି ସଚିବ ଶ୍ରୀ ଅଶୋକ କୁମାର ମିଶ୍ର, ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାର ପଦାଧିକାରୀ ଓ ସଂସ୍କୃତି ବିଭାଗର ପଦାଧିକାରୀମାନେ ଯୋଗଦାନ କରିଛନ୍ତି (୧୫/୯) ।




ଭୁବନେଶ୍ୱରଠାରେ ଅନୁଷ୍ଠିତ ଭାରତୀୟ ସାମ୍ବାଦିକ ସଂଘର ଜାତୀୟ ପରିଷଦ ବୈଠକୀ-'୮୮ରେ
ରାଜ୍ୟର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କ ଉଦ୍‌ବୋଧନ (୨୭/୧୦)।




ସୂଚନା ଭବନଠାରେ ଆୟୋଜିତ ସଚିବାଳୟ ଅମଲା ସଂଘର ବାର୍ଷିକ ଉତ୍ସବରେ ଅର୍ଥ ମନ୍ତ୍ରୀ ଶ୍ରୀ ଦେବ
ପ୍ରସାଦ ପଟ୍ଟନାୟକ, ଯୋଗାଣ ମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଏବଂ ସାଧାରଣ ଅଭିଯୋଗ ଓ
ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀଙ୍କ ଯୋଗଦାନ (୯/୯)।





ସଚିବାଳୟଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ (୮/୯୦)।



ରାଜ୍ୟ ସଚିବାଳୟଠାରେ ଅନୁଷ୍ଠିତ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ଏକ ଉଚ୍ଚସ୍ତରୀୟ କମିଟି ବୈଠକରେ ପଥ ମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲ, ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା, ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି, ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ, ମୁଖ୍ୟ ଶାସନ ସଚିବ ଶ୍ରୀ ରମାକାନ୍ତ ରଥ ଓ ଉନ୍ନୟନ କମିଶନର ଶ୍ରୀ ଏନ୍. ସୁନ୍ଦରରାଜନ୍ (୮/୯୦)।

# କାଳିଆ

● ହାଡ଼ିବନ୍ଧୁ ମିଶ୍ର

ଦାରୁ ରୂପେ ଦରିଆରେ ଭାସିଆସି ମୁହାଣେ ଲାଗିଲୁ
ନୀଳାଚଳେ ରହିବାକୁ ନୃପତିରେ ସ୍ୱପ୍ନାଦେଶ ଦେଲୁ
ଅଣାକାର ହୋଇ ତୁଇ ଇଚ୍ଛା କଲୁ ହେବୁ ମୂର୍ତ୍ତିମନ୍ତ
କି ରୂପ କେ ଦେବ ତୋ'ର ଜଣାନାହିଁ ଯା'ର ଆଦିଅନ୍ତ
ନିଜ ରୂପ ନିଜେ ଚିନ୍ତି ଆପଣାକୁ ଆପେ ତୁ' ଗଢ଼ିଲୁ,
ହାତ ଅଛି ଗୋଡ଼ ନାହିଁ
ଆଖି ଅଛି କାନ ନାହିଁ
ମୁହଁଯାକ କଳା ସାଲୁବାଲୁ,
ତୋ'ର ସେ କିମ୍ଭୂତ ରୂପେ ଜଗତକୁ ସ୍ତମ୍ଭୀଭୂତ କଲୁ ।୧।

ମର୍ତ୍ତ୍ୟରେ ବୈକୁଣ୍ଠ ରଚି ବିଶ୍ୱ ଆତ୍ମା କଲୁ ଆକର୍ଷଣ
ଝିଅର ଅଦ୍‌ଭୁତ ମାୟା ବଶ କଲୁ ନିଖିଳର ପ୍ରାଣ
କ୍ଷୁଧିହୀନ ହୋଇ ନିତି ଭୁଞ୍ଜିଲୁ ତୁ' ଛାଠିଏ ପଉଟୀ
ଭକତିରେ ଯେ ଯା' ଦେଲା ତାକୁ ପୁଣି ଖାଇଲୁ ତୁ ଗୁଟି
ତୁ' ସେଇ ବିଚିତ୍ରକର୍ମା ଜଗତର ନାଥ ବୋଲାଇଲୁ,
ମଣ୍ଡାଠାରୁ କାଞ୍ଜିଯାଏ
କ୍ଷୀରିରୁ ଖୁରିସାଯାଏ
ସବୁକୁ ତୁ କଇବଲ୍ୟ କଲୁ,
ଦୂର କରି ଭେଦଭାବ ସାମ୍ୟତାର ମହାଶିକ୍ଷା ଦେଲୁ ।୨।

ବରଷକୁ ଥରଟିଏ ସ୍ନାନ କରି ଭୋଗିଲୁ ତୁ' ଜ୍ୱର
ପଥ୍ୟ ପାଚନ ବିଶ୍ରାମ ଆମ ଭଳି ଲୋଡ଼ାହେଲା ତୋ'ର
ପାରିସିଲୁ ରଥଯାତ୍ରୀ ବଡ଼ଦାଣ୍ଡେ ଆସିଲୁ ଓହ୍ଲାଇ
ଅଚଳ ତୁ' ମହାମେରୁ ହେଲୁ ଚଳଚଞ୍ଚଳ ଗୋସାଇଁ
ଦରଦୀ ଆଖିରେ ତୋ'ର ସଭିଙ୍କର ମୁହଁକୁ ଚୁହିଁଲୁ,
ସଭିଏଁ କୋଳେଇ ନେଲେ
ତୁ' ସଭିଙ୍କୁ କୋଳେଇଲୁ
ବଡ଼ ସାନ ଏକାକାର କଲୁ,
ଜଗଜନେ ମୈତ୍ରୀ ଆଉ ଏକତାର ମନ୍ତ୍ର ଶିଖାଇଲୁ ।୩।

କେ କହେ ତୁ' ନାରାୟଣ ବିଷ୍ଣୁ ଅବା ଗୋଲକବିହାରୀ
କିଏ କହେ ପରଂବ୍ରହ୍ମ ପରମେଶ ଶଙ୍ଖ ଚକ୍ରଧାରୀ
ମୁଁ ବୁଝେନା ତତ୍ତ୍ୱଜ୍ଞାନ ଅନ୍ତହୀନ ତୋ' ଗୂଢ଼ ଦର୍ଶନ
ମୁଁ କେବଳ ଜାଣେ ତୋତେ ତୁ' 'କାଳିଆ' ମୋ ପ୍ରାଣର ଧନ
ସେଇ ନାମେ ଡାକୁଛି ମୁଁ ଡାକୁଥିବି ଯିବାଯାଏ ଜୀବ,
ବରଷକେ ଥରୁଟିଏ
ଆଖି ମୋର କାଳିଆରେ
ତୋ' ସୁନ୍ଦର ମୁହଁ ଦେଖୁଥିବ,
ନହେଲେ କେମିତି ଭଲା ଅପରା ଏ ଦିନ ମୋ ସରିବ ?।୪।

ଜାଣେନା ମୁଁ ସ୍ତୋତ୍ର ମନ୍ତ୍ର କରିବାକୁ ତୋ'ର ଆରାଧନା
ଦେବା ପାଇଁ ନାହିଁ କିଛି ନେବା ପାଇଁ ନାହିଁ ବି କାମନା
ଅନାବିଳ ମନଟିଏ ସମ୍ଭାଳି ମୁଁ ରଖିଛି ତୋ' ପାଇଁ
କାୟା ସଙ୍ଗେ ଛାୟା ପରି ପଛେ ତୋ'ର ଥିବ ସଦା ଧାଇଁ
ଚତୁର୍ବର୍ଗ ମାଗିବାରେ ଆଉ ମୋର କିବା ପ୍ରୟୋଜନ,
ତୁ' ଥିଲେ ମୋ ସବୁ ଅଛି
ଧର୍ମ ଅର୍ଥ କାମ ମୋକ୍ଷ
କାଳିଆ ରେ, ତୁ' ତ ମୋର ଧନ,
ସଂସାରେ ତୋ'ଠାରୁ ବଳି ଆଉ କିଛି ଅଛି ମୂଲ୍ୟବାନ ?।୫।

ନବ କଳେବର ରୋଡ୍,
ପୁରୀ–୨।



# ଓଡ଼ିଶାର ତନ୍ତ୍ର ପରମ୍ପରା

● ଗଣେଶ ପ୍ରସାଦ ପରିଜା

ଭାରତୀୟ ସଂସ୍କୃତି ଦୁଇଟି ଧାରା ଉପରେ ନିର୍ଭରଶୀଳ । ଗୋଟିଏ ବୈଦିକ, ଅପରଟି ତାନ୍ତ୍ରିକ । ବୈଦିକ ଧାରାରେ ଅଗ୍ନି ପ୍ରଜ୍ୱଳିତ କରି ଦେବତାମାନଙ୍କ ଉଦ୍ଦେଶ୍ୟରେ ଘୃତ, ସୋମରସ, ପୁରୋଡାଶ, ପଶୁ ମାଂସ ଓ ଚର୍ବି ଆହୁତି ପ୍ରଦାନ କରି ଦେବତାଙ୍କୁ ସନ୍ତୁଷ୍ଟ କରାଯାଏ । ମାତ୍ର ତନ୍ତ୍ର ଉପାସନାରେ ପ୍ରତୀକ ବା ମୂର୍ତ୍ତି ସ୍ଥାପନ କରି ବିଭିନ୍ନ ଉପଚାରରେ ଦେବତାଙ୍କ ତୁଷ୍ଟି ବିଧାନ କରିଥାନ୍ତି । କେତେକ ନିଷ୍ଠାପର ବୈଦିକ ପନ୍ଥୀ ମୂର୍ତ୍ତି ଉପାସନାକୁ ବିରୋଧ କଲାବେଳେ କେତେକ କହିଥାନ୍ତି ବେଦରେ ଦେବତାଙ୍କ ରୂପ କଳ୍ପନା କରାଯାଇଛି । ସେହିଭଳି ତନ୍ତ୍ର ଉପାସନାରେ ହୋମ ରହିଥିବା ଦେଖାଯାଏ । କେତେକ ପଣ୍ଡିତ ମତବ୍ୟକ୍ତ କରନ୍ତି ଯେଉଁ ପୂଜାରେ ହୋମ ଓ ବଳି ଥାଏ ତାହା ହେଉଛି ମହାପୂଜା । ପୂଜା ଶବ୍ଦ ବେଦରେ ନାହିଁ । ତନ୍ତ୍ର ଉପାସନାକୁ ପୂଜା କୁହାଯାଏ । ଓଡ଼ିଶା ଶବର, ନିଷାଦ ଅଧ୍ୟୁଷିତ ଅଞ୍ଚଳ । ଏ ଅଞ୍ଚଳରେ ବୈଦିକ ଜାତି କେବେ ପ୍ରବେଶ କଲେ ତା'ର ଇତିହାସ ଓ କାଳ ନିରୂପଣ ହୋଇନାହିଁ । ପୂର୍ବେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗ ରାଜ୍ୟ ଥିଲା । ବାଲ୍ମୀକି ରାମାୟଣ ଲେଖିଲା ବେଳେ ଶ୍ରୀରାମଙ୍କୁ ସାହାଯ୍ୟ କରିଥିବା ଯେଉଁ ବାନର ଭଲ୍ଲୁକଙ୍କ କଥା କହିଛନ୍ତି ସେମାନେ କଳିଙ୍ଗର ଶାବରୀୟମାନଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ସେହିଭଳି ମହାଭାରତରେ ବ୍ୟାସ ଉଲ୍ଲେଖ କରିଛନ୍ତି ନିଷାଦ ରାଜ ଶ୍ରୁତାୟୁ ନିଷାଦ ବାହିନୀ ଧରି କୌରବଙ୍କୁ ସାହାଯ୍ୟ କରିଥିଲେ । କାହିଁକି ନା ଦୁର୍ଯ୍ୟୋଧନ ତତ୍କାଳୀନ କଳିଙ୍ଗ ରାଜ ଚିତ୍ରାଙ୍ଗଦାଙ୍କ କନ୍ୟା ଭାନୁମତୀଙ୍କୁ ବିବାହ କରିଥିଲେ । ତେଣୁ ରାମାୟଣ ଯୁଗ ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀଠାରୁ କାଳିଙ୍ଗମାନେ ଉତ୍ତର ଭାରତ ସହିତ ସମ୍ପର୍କ ସ୍ଥାପନ କରି ସାରିଲେଣି । ତଥାପି ଶାବରୀୟଙ୍କ ଦେବତା ଉପାସନାରେ ବୈଦିକ ଧାରାର କୌଣସି ସଙ୍କେତ ଦେଖିବାକୁ ମିଳେନାହିଁ । ମାତ୍ର ଶାବରୀୟମାନେ ଦେବତାଙ୍କ ସ୍ଥିତି ପାହାଡ଼ ପର୍ବତ, ଝରଣା, ନଦୀ, ଗଛ ଆଦିରେ ଅନୁଭବ କରନ୍ତି । ତେଣୁ ସେମାନଙ୍କର ଦେବତା ପାହାଡ଼, ନଦୀ, ଗଛ ଆଦି । ସେହି ବୃକ୍ଷ ପୂଜାରୁ ଓଡ଼ିଆ ଜାତିର ପରମ ଦେବତା ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଚତୁର୍ଦ୍ଧାମୂର୍ତ୍ତିଙ୍କ ଉତ୍ପତ୍ତି । ଅନୁଧ୍ୟାନରୁ ଜଣାପଡ଼ିଛି ହିନ୍ଦୁ ସମାଜରେ ବର୍ତ୍ତମାନ ଯୁଗରେ ଯେତେ ଦେବତା ଆରାଧିତ ହେଉଛନ୍ତି, ସେମାନଙ୍କ ମଧ୍ୟରୁ କେହି ବୈଦିକ ଦେବତା ନୁହନ୍ତି । ଯଦିଓ କେତେକ ବୈଦିକ ଦେବତାଙ୍କ ନାମରେ ହିନ୍ଦୁମାନେ କେତେକ ଦେବତାଙ୍କୁ ଉପାସନା କରନ୍ତି ସେମାନେ ଠିକ୍ ସେହି ଦେବତା ବୋଲି ଧାରଣା କରାଯାଏ ନାହିଁ ।

ବିସ୍ତାରାର୍ଥକ ତନ୍ ଧାତୁରୁ ତନ୍ତ୍ର ଶବ୍ଦଟି ନିଷ୍ପନ୍ନ । ପୁଣି ତନୁ ଅର୍ଥାତ୍ ଶରୀର ଯାହା ଦ୍ୱାରା ତ୍ରାଣ ହୁଏ ତାହା ତନ୍ତ୍ର । ଏହି ତନ୍ତ୍ର ମଣିଷ ସମ୍ମୁଖରେ ପରମ ବିସ୍ମୟ ଆଣିଦିଏ ଶକ୍ତି ମାଧ୍ୟମରେ । ଶକ୍ତି ହେଉଛି ତନ୍ତ୍ର ସାଧନାର ମୂଳ ଉତ୍ସ । ଏହି ଶକ୍ତିକୁ ଯେ ବୈଦିକ ଋଷିମାନେ ଦେଖିନାହାନ୍ତି ଏହା କହିଲେ ଠିକ୍ ହେବନାହିଁ । ଋଗ୍ ବେଦର ସପ୍ତମ ମଣ୍ଡଳର ଋଷି ବଶିଷ୍ଠ ବିଂଶ ସଂଖ୍ୟକ ସୂକ୍ତରେ ଗାଇଛନ୍ତି – "ବସ୍ୱୀ ଷୁ ତେ ଜରିତ୍ରେ ଅସ୍ତୁ ଶକ୍ତିଃ" – "ଅତ୍ୟନ୍ତ ପ୍ରଶସ୍ତ ସ୍ତୁତି କରିବାକୁ ଆସମାନଙ୍କର ଶକ୍ତି ହେଉ" । ତେଣୁ ଶକ୍ତି ପାଇଁ ଦେବତା ଆରାଧନା କରାଯାଏ । ପ୍ରତ୍ୟେକଙ୍କ ମଧ୍ୟରେ ଶକ୍ତି ନିହିତ ଅଛି । ସେହି ଶକ୍ତି ସେମାନଙ୍କଠାରୁ ଅନ୍ତର ହେଲେ ସେମାନେ ଶବ ପ୍ରାୟ ହୋଇଯା'ନ୍ତି । ସେଥିପାଇଁ ଶଙ୍କରାଚାର୍ଯ୍ୟ ଆନନ୍ଦ ଲହରୀରେ ଗାଇଛନ୍ତି – "ମାତଃ ! ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି ତାହାହେଲେ ସେ ପ୍ରଭାବଶାଳୀ ହୋଇ ସୃଷ୍ଟି, ସ୍ଥିତି, ଲୟ ପ୍ରଭୃତି ସମସ୍ତ କାର୍ଯ୍ୟ କରିପାରନ୍ତି । ତା' ନହେଲେ ସେ ସ୍ପନ୍ଦିତ ହେବାକୁ ସମର୍ଥ ହୁଅନ୍ତି ନାହିଁ" । ସପ୍ତଶତ ଚଣ୍ଡୀରେ ଉଲ୍ଲେଖ ହୋଇଛି ବିଭିନ୍ନ ଦେବତାଙ୍କଠାରୁ ତାଙ୍କର ଶକ୍ତିମାନେ ଆସି ଅସୁର ବଧ ନିମିତ୍ତ ଦେବୀ ଦୁର୍ଗାଙ୍କୁ ସାହାଯ୍ୟ କରିଥିଲେ । ଏବେ ବି ଓଡ଼ିଶାର ତନ୍ତ୍ର ପୀଠମାନଙ୍କରେ ସପ୍ତ ମାତୃକା ଆରାଧିତା । ଏହି ସପ୍ତ ମାତୃକା ହେଉଛନ୍ତି ବୈଷ୍ଣବୀ, ବ୍ରାହ୍ମୀ, ମହେଶ୍ୱରୀ, କୌମାରୀ, ଐନ୍ଦ୍ରୀ, ବରାହୀ ଓ ଚାମୁଣ୍ଡା । ଚଣ୍ଡୀର ଅଷ୍ଟମ ଅଧ୍ୟାୟରେ ଯେଉଁ ଅଷ୍ଟ ଚଣ୍ଡୀଙ୍କ କଥା ଉଲ୍ଲେଖ ହୋଇଛି, ତନ୍ମଧ୍ୟରୁ ନାରସିଂହୀଙ୍କୁ ବାଦ ଦେଲେ ଅବଶିଷ୍ଟ ସପ୍ତ ଚଣ୍ଡୀ ହେଉଛନ୍ତି ସପ୍ତ ମାତୃକା । ଏହି ସପ୍ତ ମାତୃକାଙ୍କ ସାହାଯ୍ୟରେ ଦେବୀ ଦୁର୍ଗା ଶୁମ୍ଭ ନିଶୁମ୍ଭ ଓ ତାଙ୍କ ସୈନ୍ୟ ସେନାପତିମାନଙ୍କୁ ବଧ କରିଥିଲେ ।

ଶାବରୀୟମାନେ ମୂଳତଃ ବୃକ୍ଷ ଉପାସନା କରନ୍ତି । ଦୁର୍ଗା ପୂଜା ସମୟରେ ନବ ପତ୍ରିକାର ପ୍ରଚଳନ ରହିଛି । ଏହି ନବ ପତ୍ରିକା ନବ ଦୁର୍ଗା ରୂପେ ଅର୍ଚ୍ଚିତା । ଏମାନେ ଯେ ଶସ୍ୟ ଦେବୀ ଏହା ଲେଖିବା ଅନାବଶ୍ୟକ । ଏହି ନବ ପତ୍ରିକା ହେଉଛନ୍ତି ରମ୍ଭା, ସାରୁ, ହରିଦ୍ରା, ଜୟନ୍ତୀ, ବେଲ, ଡାଳିମ୍ବ, ଅଶୋକ, ମହଣ ଓ ଧାନ । ଏହି ନବ ବୃକ୍ଷରୁ ରମ୍ଭା ବା କଦଳୀ ବୃକ୍ଷରେ ବ୍ରାହ୍ମଣୀ

ତାଳିପତ୍ରରେ ଶଙ୍ଖ ଦନ୍ତିକା, ଧାନରେ ଲକ୍ଷ୍ମୀ, ହରିଦ୍ରାରେ ଦୁର୍ଗା, ମହଣରେ ଶ୍ରୁମୁଣ୍ଡା, ସାରୁରେ କାଳିକା, ବେଲରେ ଶିବା, ଅଶୋକରେ ଶୋକ ରହିତା, ଜୟନ୍ତୀରେ କାର୍ତ୍ତିକୀ ବା କୌମାରୀ ଦେବୀଙ୍କୁ ଉପାସନା କରାଯାଏ । କାରଣ ଏହି ପତ୍ରିକାରେ ଦେବୀମାନେ ରହିଥାନ୍ତି । ତାହାକୁ ଖାଦ୍ୟ ରୂପେ ଗ୍ରହଣ କଲେ ସେହି ଦେବୀମାନଙ୍କର ଶକ୍ତି ଦେହରେ ପ୍ରବେଶ କରିଥାଏ । ଶକ୍ତି ହେଉଛି ତନ୍ତ୍ର — ସାଧନାର ପ୍ରଧାନ ସ୍ତମ୍ଭ । ଏହି ଶକ୍ତିଙ୍କ ସ୍ମରଣରେ ବିଭିନ୍ନ ତତ୍ତ୍ୱ ଓ ପରମ ତତ୍ତ୍ୱ ଅନୁଭବ ହୁଏ । ଶକ୍ତି କ'ଣ ଏହା ହେଉଛି — ତନ୍ତ୍ରର ପ୍ରଧାନ କଥା । ଅଦ୍ୱୈତ ବେଦାନ୍ତ ଶକ୍ତିକୁ ଅନିର୍ବଚନୀୟ ରୂପେ ପ୍ରତିପନ୍ନ କରିଛି । ଅର୍ଥାତ୍ ପୂର୍ଣ୍ଣ ରୂପେ ସେ ସତ୍ ନୁହନ୍ତି ବା ଅସତ୍ ବା ଅଳୀକ ମଧ୍ୟ ନୁହନ୍ତି । ଏଥିପାଇଁ ଶକ୍ତି ଅନିର୍ବଚନୀୟ । ମାତ୍ର ଅନ୍ୟାନ୍ୟ ବେଦାନ୍ତ ଯଥା ଦ୍ୱୈତା ଦ୍ୱୈତ, ବିଶିଷ୍ଟା ଦ୍ୱୈତ ପ୍ରଭୃତିରେ ଶକ୍ତି ନିତ୍ୟ ପଦାର୍ଥ ରୂପେ ଅଙ୍ଗୀକୃତ । କିନ୍ତୁ ତନ୍ତ୍ରରେ ଶକ୍ତି ନିତ୍ୟ ତତ୍ତ୍ୱ । ତାଙ୍କର ଉନ୍ମେଷ, ବିକାଶ, ନିମୀଳନ ଅଛି । ତେଣୁ ଶକ୍ତି ଅନାଦି, ଅନନ୍ତ । ଶକ୍ତିଙ୍କ ସହିତ ପରମ ତତ୍ତ୍ୱ (Reality) ଶିବଙ୍କ ସମ୍ବନ୍ଧ ଅଭିନ୍ନ । ଶୈବ ଓ ବୈଷ୍ଣବ ଶକ୍ତିଙ୍କୁ ଗ୍ରହଣ କଲେ ମଧ୍ୟ ସେମାନେ ଧାରଣା କରନ୍ତି ପରମ ତତ୍ତ୍ୱ ଶିବଙ୍କଠାରେ ଶକ୍ତି ନିତ୍ୟ ଭାବେ ବିଦ୍ୟମାନା । ତାଙ୍କୁ ସେ କଦାପି ତ୍ୟାଗ କରିପାରନ୍ତି ନାହିଁ । କିନ୍ତୁ ଶକ୍ତିବାଦ କହେ ଶକ୍ତି ଯେତେବେଳେ ଶିବଙ୍କୁ ତ୍ୟାଗ କରିବେ ସେତେବେଳେ ଶିବ ଶବ ହୋଇଯିବେ । ବୈଷ୍ଣବ ମତରେ ଶକ୍ତିର ବିକାଶ ହେଉଛି ବିଶେଷ ବିକାଶ, ନିର୍ବିଶେଷ ବିକାଶ ନୁହେଁ । କାହିଁକି ନା ଷୋଳ ସହସ୍ର ଗୋପୀ — ଶକ୍ତି ପ୍ରାଣ କୃଷ୍ଣଙ୍କୁ କେନ୍ଦ୍ର କରି ରାହାସ ରଚନା କରନ୍ତି । କୃଷ୍ଣଙ୍କୁ ତ୍ୟାଗ କଲେ ଗୋପୀଙ୍କର କୌଣସି ପ୍ରଭାବ ନାହିଁ । କିନ୍ତୁ ସେମାନେ ଧାରଣା କରନ୍ତି ନାହିଁ ଯେ କୃଷ୍ଣ ଗୋପୀମାନଙ୍କୁ ଛାଡ଼ି ମଥୁରା ଗଲେ ମଧ୍ୟ ସେମାନଙ୍କ ସ୍ନେହ, ପ୍ରେମ, ସଦ୍ ଇଚ୍ଛା କୃଷ୍ଣଙ୍କ ପ୍ରତି ରହିଥିଲା ।

ତନ୍ତ୍ର ହେଉଛି ସାଧନାମୁଖୀ ବିଦ୍ୟା । ବିନା ଗୁରୁରେ ତନ୍ତ୍ର ଶିକ୍ଷା ହୋଇପାରେନି । ତନ୍ତ୍ର ଯେ କେବଳ ଜ୍ଞାନ ଦାନ କରେ ଏହା ନୁହେଁ, ସେ ବିଜ୍ଞାନ ମଧ୍ୟ ଦାନ କରିଥାଏ । ତନ୍ତ୍ର ମତରେ ସିଦ୍ଧି ଲାଭ କରିବାକୁ ହେଲେ ତିନୋଟି ପ୍ରକ୍ରିୟାରେ ଅଗ୍ରସର ହେବାକୁ ହୁଏ । ଏହି ତିନୋଟି ପ୍ରକ୍ରିୟା ହେଉଛି ଶବ ସାଧନା — ଷଟ୍ ଚକ୍ର ଭେଦ — ପଞ୍ଚ 'ମ' କାର । କେତେକ ଧାରଣା ଏହି ତିନୋଟି ମଧ୍ୟରୁ ଯେ କୌଣସି ଗୋଟିକରେ ସିଦ୍ଧି ଲାଭ କଲେ ମୁକ୍ତି ମିଳେ । ମାତ୍ର ସେଭଳି ଭାବିବା ଠିକ୍ ନୁହେଁ । ଏହି ତିନୋଟି ଅଙ୍ଗାଙ୍ଗୀ ଭାବେ ପରସ୍ପର ପରସ୍ପର ସହିତ ଜଡ଼ିତ । ସ୍ତର ପରେ ସ୍ତର ଅତିକ୍ରମ କରି ସାଧକ ଶେଷ ସ୍ତରରେ ପହଞ୍ଚିଥାଏ । ଶବ ସାଧନାରେ ସାଧକ ନିର୍ଭୟ ହୃଦୟ ହୋଇ ଷଟ୍ ଚକ୍ର ଭେଦ କରି ନିର୍ବିକାର ଚିତ୍ତ ନହେଲେ ମୁକ୍ତି ମିଳେ ନାହିଁ । ଏଥିପାଇଁ ଗୁରୁଙ୍କ ଉପଦେଶ ଏକାନ୍ତ ଆବଶ୍ୟକ । ତେଣୁ ତିନୋଟି ସ୍ତର ଦେଇ ବଦ୍ଧ ମଣିଷ ଜ୍ଞାନ ବିଜ୍ଞାନର ଅଧିକାର ପାଇଥାଏ। ଚଣ୍ଡୀର ଉତ୍ତର ଚରିତରେ କୁହାହୋଇଛି ବଦ୍ଧ ଜୀବ ଶୁମ୍ଭ ଦେବୀଙ୍କୁ ଆପଣାର କରିବା ପାଇଁ ତା'ର ସୈନ୍ୟ ସେନାପତି ମରାଇ ଦେବୀଙ୍କ ପାଖକୁ ଆସି ଦେଖିଲା ଦେବୀ ଦୁର୍ଗା ବିଭିନ୍ନ ଶକ୍ତି ପରିବୃତ୍ତ ହୋଇଛନ୍ତି । ସେ ତାଙ୍କୁ କହିଲା, ହେ ବଳଗର୍ବ ଦୁର୍ବିନିତେ ଦୁର୍ଗେ ଗର୍ବମାବହ । କାହିଁକି ନା ଅନ୍ୟାସାଂ ବଳମାଶ୍ରିତା ଯୁଧ୍ୟସେ ଯାତିମାନିନୀ ଅର୍ଥାତ୍—ପର ବଳ ଆଶ୍ରୟ କରି ରହିଥିବା ଦୁର୍ଗେ, ତୁମେ ଗର୍ବ କରନାହିଁ । କାହିଁକି ନା ତୁମେ ପର ବଳ ଆଶ୍ରୟ କରି ଯୁଦ୍ଧ କରୁଛ । ଉତ୍ତରରେ ଦେବୀ କହିଲେ, "ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ସମାପରା" । ଅର୍ଥାତ୍—ଏ ବିଶ୍ୱରେ ଏକମାତ୍ର ମୁଁ ଅଛି — ମୋ ଛଡ଼ା ଦ୍ୱିତୀୟା ଆଉ କେହି ନାହାନ୍ତି । ଏହାପରେ ତାଙ୍କୁ ବେଢ଼ି ରହିଥିବା ଶକ୍ତିମାନେ ଦୁର୍ଗାଙ୍କ ମଧ୍ୟରେ ଲୀନ ହୋଇଗଲେ । ଅସୁର ଶୁମ୍ଭ ଏହା ଦେଖି ବିସ୍ମିତ ହୋଇଗଲା । ବିଭିନ୍ନ 'ରୂପରେ: ଦୃଶ୍ୟମାନା ଦେବୀ ଏକ ଏବଂ ଅଦ୍ୱିତୀୟା ଏହା ପ୍ରତ୍ୟକ୍ଷ କଲାପରେ ତା'ର ସୀମିତ ଜ୍ଞାନ ଅସୀମରେ ପଦାର୍ପଣ କଲା । ତା'ପରେ ହେଲା ଶୁମ୍ଭର ବଧ । ଏହା ହେଉଛି ପଶୁ—ବୀର—ଦିବ୍ୟ ସ୍ତରର କଥା । ପ୍ରତ୍ୟେକ ପଶୁ ସ୍ତରରେ ଥାନ୍ତି — ସାଧନା ଦ୍ୱାରା ସେମାନେ ପଶୁ ସ୍ତରରୁ ଦିବ୍ୟ ସ୍ତରକୁ ଯାନ୍ତି ଏବଂ ଶେଷରେ ଦିବ୍ୟ ସ୍ତରରେ ପ୍ରବେଶ କରି ପରମା ପଦରେ ଲୀନ ହୁଅନ୍ତି ।

କାଳୀ, ତାରାଦିଙ୍କ ବହୁ ମୂର୍ତ୍ତି ଓଡ଼ିଶାର ତନ୍ତ୍ର ପୀଠମାନଙ୍କରେ ଆରାଧିତା । କାଳୀ, ତାରାଙ୍କ ପଦ ଶିବଙ୍କ ଉପରେ ସ୍ଥିତ ଥିବାର ଦେଖାଯାଏ । ସେହିଭଳି ମହିଷାସୁର ଅସୁର ହେଲେ ମଧ୍ୟ ସାଧନା ଦ୍ୱାରା ଦେବୀଙ୍କ ପଦ ପ୍ରାପ୍ତ ହୋଇଛି । ଦେବୀଙ୍କ ପଦ ପ୍ରାପ୍ତ ହେବା ପାଇଁ ଏ ତନୁ ବା ଦେହ ହେଉଛି ବିଶେଷ ବାଧା । ସାଧାରଣ ଭାବେ ଦେଖାଯାଏ ତଡ଼ିତ୍ ବା ବିଜୁଳିକୁ ଏ ଦେହ ସହ୍ୟ କରିପାରେ ନାହିଁ । ତେଣୁ ତା'ର ସଂଘାତରେ ମଣିଷ ମରିଯାଏ । ପରମାତ୍ମାମୟୀ ମହାଶକ୍ତି ଆଭା ଓ ଶକ୍ତିରେ ମହିୟାନ । ସାଧନା ଦ୍ୱାରା ଏ ଦେହକୁ ସେହିଭଳି ନକଲେ ଶତ ବିଦ୍ୟୁତର ଆଲୋକ ଝଲକ ମହାଶକ୍ତିଙ୍କ ସହିତ ଯୁକ୍ତ ହେବ କିପରି ? ସେଥିପାଇଁ ଚଣ୍ଡୀ ପାଠ ପୂର୍ବରୁ ଅର୍ଗଳ ଖୋଲି ଦେବାକୁ ହୁଏ: କୀଳକକୁ ଅପସାରିତ କରିବାକୁ ହୁଏ ଓ କବଚ ଦ୍ୱାରା ଆବୃତ୍ତ ହେବାକୁ ହୁଏ । ଚଣ୍ଡୀର ସମସ୍ତ ବିଷୟ ପାଠ କରି ଯେତେବେଳେ ଜ୍ଞାନକୁ ପ୍ରସାରିତ କରି ବିଜ୍ଞାନମୟୀର ସମସ୍ତ ତତ୍ତ୍ୱ ସାଧକ ଅବଗତ ହୁଏ, ତା'ପରେ ଋଗ୍ବେଦରେ ଲିଖିତ ଦେବୀ ସୂକ୍ତକୁ ପାଠ କରି ଦେବୀ କିଏ ତାହା ସାଧକ ଅବଗତ ହୁଅନ୍ତି । ତେଣୁ ଚଣ୍ଡୀ ଗ୍ରନ୍ଥର ଏକାଦଶ ଅଧ୍ୟାୟରେ ପ୍ରାର୍ଥନା କରା ହୋଇଛି: "ସର୍ବ ବାଧା ପ୍ରଶମନଂ ତ୍ରୈଲୋକ୍ୟସ୍ୟାଖିଳେଶ୍ୱରୀ — ଏବମେବ ତ୍ୱୟା କାର୍ଯ୍ୟ ମସ୍ମଦ ବୈରି ବିନାଶନମ୍" ସଦ୍ଗୁରୁ ନହେଲେ ସାଧକ ସିଦ୍ଧିଲାଭ କରିବା ସହଜ ନୁହେଁ । ସେହି ଗୁରୁ ହେଉଛନ୍ତି ଶିବ । ତନ୍ତ୍ର ଦେବତାଙ୍କୁ ପୂଜା କଲାବେଳେ ସେଥିପାଇଁ ସାଧକ ନିଜକୁ ଶିବ ପଦରେ ଅଭିଷିକ୍ତ କରି କହିଥାନ୍ତି ଅହଂ ଶିବ । କିନ୍ତୁ ତନ୍ତ୍ର ଗ୍ରନ୍ଥମାନଙ୍କରେ ଦେଖିବାକୁ ମିଳେ ସମସ୍ତ ତନ୍ତ୍ର ଶିବ କହିଛନ୍ତି ଓ ପାର୍ବତୀ ଶୁଣିଛନ୍ତି । ତନ୍ତ୍ରାଲୋଚନାରୁ ସ୍ପଷ୍ଟ ଭାବେ ପ୍ରମାଣିତ ହୋଇଛି ଏହି ପାର୍ବତୀ ଓ ମହାଶକ୍ତି ପାର୍ବତୀ ଏକା ନୁହନ୍ତି । ଗୁରୁ ଭାବେ ଶିବ ତନ୍ତ୍ର ବିଷୟ କହି ଅନୁମୋଦନ ପାଇଁ ଅପେକ୍ଷା କରନ୍ତି । ମହାଶକ୍ତିଙ୍କ ଅନୁମୋଦନ ନହେଲେ ଶିବ କହିଥିବା ବାକ୍ୟ ସିଦ୍ଧ ହେବ ନାହିଁ । ଏହି ପରମ୍ପରା ଓଡ଼ିଶାରେ ଏଭଳି ଅଛି ଯେ ମହା ଭୈରବ ଶ୍ରୀଜଗନ୍ନାଥଙ୍କ ନିକଟରେ ନିବେଦିତ ହେଉଥିବା ପ୍ରସାଦ ଭୈରବୀ ବିମଳାଙ୍କୁ ସମର୍ପଣ ନକଲେ ମହାପ୍ରସାଦ ହୁଏ ନାହିଁ ।

ତନ୍ତ୍ର ପରମ୍ପରାରେ କୁଳାର୍ଣ୍ଣବ ଓ ପଞ୍ଚତତ୍ତ୍ୱ ବିଶେଷ ଭାବେ ପ୍ରଭାବ ବିସ୍ତାର କରିଛି । ତନ୍ତ୍ରରେ କୁହାହୋଇଛି; କୁଳାର୍ଣ୍ଣବେଣ ଦେବେଶି । ବ୍ରହ୍ମଜ୍ଞାନଂ ପ୍ରକାଶତେ – ହେ ଦେବେଶି ! କୁଳାର୍ଣ୍ଣବ ଦ୍ୱାରା ବ୍ରହ୍ମଜ୍ଞାନ ପ୍ରକାଶ ପାଏ । ସେହିଭଳି କୌଳାବଳୀ ନିର୍ଣ୍ଣୟରେ କୁହାହୋଇଛି; ପଞ୍ଚତତ୍ତ୍ୱେନ କର୍ତ୍ତବ୍ୟଂ ସଦୈବ ପୂଜନଂ ମହତ୍ – ପଞ୍ଚତତ୍ତ୍ୱ ଦ୍ୱାରା ସର୍ବଦା ଦେବୀଙ୍କର ଆରାଧନା କରିବାକୁ ହୁଏ । କୁଳାର୍ଣ୍ଣବ ବା କୌଳିକ ମତ ତନ୍ତ୍ର ସାଧନାର ଏକ ବିଶେଷ କଥା । କୌଳିକ ମତ ମୂଳ ସିଦ୍ଧାନ୍ତର ଆଦିରୂପ କ'ଣ ତାହା ଜାଣିବା ସହଜ ନୁହେଁ । କୁହାହୋଇ ଆସିଛି ଦୁର୍ବାସାଙ୍କ ସହିତ ଏହି ମତର ସମ୍ବନ୍ଧ ଥିଲା । ଶ୍ରୀକୃଷ୍ଣଙ୍କୁ ଦୁର୍ବାସା ଆଗମ ବିଦ୍ୟା ଶିକ୍ଷା ଦେଇଥିବା ଜଣାଯାଏ । କେତେକ ତାଙ୍କୁ ଗର୍ଗ ବୋଲି ଅଭିହିତ କରିଥାନ୍ତି । ପରବର୍ତ୍ତୀ କାଳରେ କାମରୂପରୁ ମୀନନାଥ ଏହି ମତ ପ୍ରଚାର କରିଥିବା ପ୍ରସିଦ୍ଧି ରହିଛି । ଖୁବ୍ ସମ୍ଭବତଃ ମୀନନାଥ ଓ ମତ୍ସ୍ୟେନ୍ଦ୍ରନାଥ ଏକ ଲୋକ । ମତ୍ସ୍ୟେନ୍ଦ୍ରନାଥ ନାଥ ସମ୍ପ୍ରଦାୟର ଆଦିଗୁରୁ । ମତ୍ସ୍ୟେନ୍ଦ୍ରଙ୍କ ପ୍ରବର୍ତ୍ତିତ ମତ ଓ ଗୋରେକ୍ଷଙ୍କ ମତ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ମତ୍ସ୍ୟେନ୍ଦ୍ର ଶକ୍ତି ଉପାସନାକୁ ବିଶେଷ ପ୍ରାଧାନ୍ୟ ଦେଉଥିଲା ବେଳେ ଗୋରକ୍ଷ ଶିବ ଉପାସନାକୁ ମୁଖ୍ୟ ବୋଲି ଧାରଣା କରନ୍ତି । ଜୈନମାନେ ସେମାନଙ୍କର ତାନ୍ତ୍ରିକ ପ୍ରସ୍ଥାନରେ ଶାକ୍ତ ମତ ପ୍ରତି ଆନୁଗତ୍ୟ ଦେଖାଇଛନ୍ତି । ଏ ବିଷୟରେ ପରବର୍ତ୍ତୀ କାଳରେ ଅଧିକ ଆଲୋଚନା ମହାଯାନ ବୌଦ୍ଧ ସମ୍ପ୍ରଦାୟରୁ ମିଳେ । ସେମାନଙ୍କର କାଳଚକ୍ର ଯାନ ଓ ସହଜ ଯାନ ପ୍ରଭୃତି ଶାକ୍ତ ସମ୍ପ୍ରଦାୟକୁ ଅଧିକ ପ୍ରଭାବିତ କରିଛି । ତିବ୍ବତରେ ବହୁ ପୁରାତନ କାଳରୁ ଏହି ଅଦ୍ୱୈତ ତନ୍ତ୍ର ମତ ପ୍ରଚଳିତ । ଏଠାରେ ସ୍ମରଣ କରାଯାଇ ପାରେ ତିବ୍ବତୀୟମାନଙ୍କର ଆଦିଗୁରୁ ପଦ୍ମସମ୍ଭବ । ସେ ଓଡ଼ିଶା ସମ୍ବଲର ରାଜା ଇନ୍ଦ୍ରଭୂତିଙ୍କ ପୁତ୍ର । ଜାହେର ବା କେନ୍ଦୁଝର ରାଜାଙ୍କ କନ୍ୟା ରାଜା ତଥା ଭିକ୍ଷୁ ଶାନ୍ତିରକ୍ଷିତଙ୍କ ଭଗିନୀ ମନ୍ଦାରଓ୍ୱାଙ୍କୁ ସେ ବିବାହ କରିଥିଲେ । ତେଣୁ ଓଡ଼ିଶାରେ ଥିବା ବଜ୍ରଯାନ ମତକୁ ସେ ତିବ୍ବତରେ ପ୍ରଚାର କରିଥିଲେ । ସେହିଭଳି ମତ୍ସ୍ୟେନ୍ଦ୍ରନାଥ ଗୋରେକ୍ଷନାଥ ଓଡ଼ିଶାରେ ଥିବା ନାଥ ସମ୍ପ୍ରଦାୟଙ୍କ ଗୁରୁ । ଓଡ଼ିଶାରେ ଗୋରେକ୍ଷନାଥ ମଠ ରହିଛି । ସେମାନେ ସେମାନଙ୍କର କୌ..ମତ ପ୍ରଚାର କରି ଆସିଛନ୍ତି । ଗୁରୁ ପରମ୍ପରାରୁ ଜଣାଯାଇଛି ମତ୍ସ୍ୟେନ୍ଦ୍ର ବୌଦ୍ଧ ବଜ୍ରଯାନର ଅନ୍ୟତମ ଗୁରୁ ଜାଳନ୍ଧରୀଙ୍କ ଶିଷ୍ୟ ଓ ମତ୍ସ୍ୟେନ୍ଦ୍ରଙ୍କ ଶିଷ୍ୟ ଥିଲେ ଗୋରେକ୍ଷ ଓ ଚୌରଙ୍ଗୀ । ବଜ୍ରଯାନର ଆଦିଗୁରୁ ଥିଲେ ସରହ – ଯେକି ରାହୁଲ ଭଦ୍ର ନାମରେ ନାମିତ । ସେ ମଧ୍ୟ ଥିଲେ ଓଡ଼ିଆ । ନାଥ ସମ୍ପ୍ରଦାୟ ବୌଦ୍ଧପନ୍ଥୀ ନହେଲେ ମଧ୍ୟ ତାଙ୍କର ଆଦିଗୁରୁ ବୌଦ୍ଧ ସମ୍ପ୍ରଦାୟରୁ ଆସିଥିଲେ । ୮୪ ସିଦ୍ଧ ସାଧକଙ୍କ ମଧ୍ୟରେ ଗୋରେକ୍ଷଙ୍କ ନାମ ରହିଥିବା ଦେଖାଯାଏ ।

ବୌଦ୍ଧମାନେ ଯେଉଁ ଶୂନ୍ୟକୁ ଧାରଣା କରୁଥିଲେ ସେହି ଶୂନ୍ୟ ଭଜନ ନାଥମାନଙ୍କ ମୁଖରୁ ଶୁଣାଯାଏ । ତନ୍ତ୍ର ପରମ୍ପରାରେ ବୌଦ୍ଧମାନଙ୍କର ମଧ୍ୟ ସହଯୋଗ ରହିଛି । ବୈଷ୍ଣବମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ ଓ ରାଧାଙ୍କୁ ଇଷ୍ଟ ଭାବେ ଧାରଣା କରୁଥିବା ସାଧକ ଅଧିକ । କୃଷ୍ଣଙ୍କ ସହିତ କଦମ୍ବର ସମ୍ବନ୍ଧ ନିବିଡ଼ । ଶ୍ରୀକୃଷ୍ଣଙ୍କ ସହିତ କଦମ୍ବ ବୃକ୍ଷ ଓ ଫୁଲର କି ସମ୍ପର୍କ ତାହା ବହୁ ବୈଷ୍ଣବ ଜାଣନ୍ତି ନାହିଁ । ଯେଉଁମାନେ ଶ୍ରୀବିଦ୍ୟା ଅନୁଶୀଳନ କରନ୍ତି ସେମାନେ ଜାଣନ୍ତି କଦମ୍ବର ସ୍ଥାନ କେଉଁଠି । ତନ୍ତ୍ରରେ କୁହାହୋଇଛି, କଦାଚିଦାଦ୍ୟା ଲଳିତା ପୁଂ ରୂପା କୃଷ୍ଣ ବିଗ୍ରହା ଇତ୍ୟାଦି । ଲଳିତା ଶ୍ରୀବିଦ୍ୟାଙ୍କର ନାମାନ୍ତର । ପକ୍ଷାନ୍ତରେ ଏହି ଲଳିତା ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ସହଚରୀ । କେବଳ ସହଚରୀ ନୁହନ୍ତି, ସେ ସମସ୍ତ ସଖୀମାନଙ୍କ ନାୟିକା । ଯେଉଁମାନେ ଯୋଗ ସାଧନାର ରହସ୍ୟ ଜାଣନ୍ତି. ସେମାନେ ଏହାର ମର୍ମ ବୁଝିଛନ୍ତି । ପୁରାଣ ସଂହିତା ଗ୍ରନ୍ଥରେ ସୁମଙ୍ଗଳା ଶକ୍ତି ରୂପେ ବର୍ଣ୍ଣିତା । ତାଙ୍କର ପରିଚୟ ବୈଷ୍ଣବ ଶାସ୍ତ୍ରରେ ଉଲ୍ଲିଖିତ । ବୈଷ୍ଣବମାନେ 'କ୍ଲୀଂ' ବୀଜକୁ ଗ୍ରହଣ କରିଛନ୍ତି । ସେହିଭଳି ମାୟା ବୀଜ 'ହ୍ରୀଂ' ତନ୍ତ୍ର ଦେବୀଙ୍କ ଅର୍ଚ୍ଚନାରେ ବ୍ୟବହୃତ । ହିନ୍ଦୁ ତାରା ଦେବୀଙ୍କ ଉଦ୍ଦେଶ୍ୟରେ ରଚିତ ମନ୍ତ୍ର – ଓଁ ହ୍ରୀଂ ସ୍ତ୍ରୀଂ ହୁଁ ଫଟ । ସେହିଭଳି ଦୁର୍ଗାଙ୍କ ମନ୍ତ୍ର ହେଉଛି ଓଁ ହ୍ରୀଂ ଦୁଂ ଦୁର୍ଗାୟୈ ନମଃ । ମହାଲକ୍ଷ୍ମୀଙ୍କ ମନ୍ତ୍ର – ଓଁ ଏଂ ହ୍ରୀଂ ଶ୍ରୀଂ କ୍ଲୀଂ ହେଂ ସୌ ଜଗତ୍ପ୍ରସୂତେ ନମଃ ମନ୍ତ୍ର ସବୁ ତନ୍ତ୍ର ଶାସ୍ତ୍ରରେ ଉଲ୍ଲିଖିତ । କେଉଁ ଶବ୍ଦରେ କେଉଁ ବୀଜ ବ୍ୟବହାର ହୁଏ ତାହା ତନ୍ତ୍ରରେ ବର୍ଣ୍ଣିତ । ମହାମାୟା, ହୃଲ୍ଲେଖା, ଶମ୍ଭୁପତ୍ନୀ, ମହେଶ୍ୱରୀ, ଦେବୀ ପ୍ରଣବ, ଶିବଶକ୍ତି, ତ୍ରିଜଗଦ୍ଧାତ୍ରୀ, ଭୁବନେଶ୍ୱରୀ ଆଦି ବତିଶିଟି ଶବ୍ଦ ହ୍ରୀଂ ବୀଜ ବାଚକ । ସେହିଭଳି ମନ୍ମଥ, କାମ, ସ୍ମର, ମଦନ କେତନ, ତ୍ରିମୂର୍ତ୍ତି, ତ୍ରୈଲୋକ୍ୟ ମୋହନ, ଚୋକବନ୍ଧ୍ୟ ଆଦି ଦ୍ୱାଦଶ ଶବ୍ଦ କାମବୀଜ ବା କ୍ଲୀଂ କାର ବାଚକ । ଶ୍ରୀରାଜ, ବିଷ୍ଣୁବନିତା, ବିଜୟା, ଜଗତ୍ପ୍ରିୟା, ଲକ୍ଷ୍ମୀ, ବିଷ୍ଣୁଶକ୍ତି ଆଦି ଏଗାରଟି ଶବ୍ଦ ଶ୍ରୀଂ ବିଜ ଦ୍ୱାରା ଜ୍ଞାତ । ସେହିଭଳି ମନ୍ତ୍ରାଦ୍ୟ, ପ୍ରଣବ, ତାର, ବିଷ୍ଣୁଶକ୍ତି, ଆଦିବୀଜ ଆଦି ଚବିଶିଟି ଶବ୍ଦ ଓଁ ଦ୍ୱାରା ଜ୍ଞାପକ ହୁଏ । କେଉଁ କେଉଁ ଶବ୍ଦରେ କେଉଁ ବୀଜ ଲାଗିବ ତାହା ଗୁରୁ ପରମ୍ପରାରେ କଥିତ ତଥା ଉଲ୍ଲିଖିତ ହୋଇଛି ।

ଯୋଗୀମାନେ ଜାଣିଛନ୍ତି ନିତ୍ୟ ଲୀଳା କେଉଁଠି କେଉଁ ଭାବେ ସମ୍ଭବପର ହୁଏ । ପରମ ପୁରୁଷ ଓ ପରମା ପ୍ରକୃତିର ମିଳନ ବ୍ୟତୀତ ନିତ୍ୟ ଓ ଲୀଳା ସମ୍ଭାବନା ହୁଏ ନାହିଁ । ସାଧାରଣତଃ ଯୋଗୀମାନେ ଭୂତ ଶୁଦ୍ଧି ଓ ଚିତ୍ତ ଶୁଦ୍ଧି ସମାପ୍ତି ପାଇଁ ଷଟ୍ ଚକ୍ର ଭେଦର ଅନୁଷ୍ଠାନ କରନ୍ତି । ଭୂତ ଶୁଦ୍ଧି ଓ ଚିତ୍ତ ଶୁଦ୍ଧି ସମ୍ପନ୍ନ ହେଲେ ଭୌତିକ ଜଗତ ଓ ମନୋମୟ ଜଗତର ସଂସ୍କାରରୁ ସାଧକ ମୁକ୍ତ ହୋଇଥାନ୍ତି । ମାତ୍ର କେବଳ ଆଜ୍ଞା ଚକ୍ରର ବିନ୍ଦୁ ପର୍ଯ୍ୟନ୍ତ ଗତି ହେଲେ ସହସ୍ରାରସ୍ଥ ପରମାତ୍ମାଙ୍କ ସହିତ ମିଳନ ସମ୍ଭବପର ହୁଏ ନାହିଁ । ଏହି ଉଭୟ ମଧ୍ୟରେ ଅନନ୍ତ ଚିଦାକାଶ ବିଦ୍ୟମାନ । ତାହା ଭେଦ କରିବାକୁ ଖେଚରୀ ଶକ୍ତି ବା ଆକାଶ ଭେଦିନୀ ଗତି ଆବଶ୍ୟକ । କୌଣସି ଯୋଗୀ ପଞ୍ଚଭୂତ ଶୁଦ୍ଧି ବା ଚିତ୍ତ ଶୁଦ୍ଧି କରିଦେଲେ ହେବ ନାହିଁ । ଉଭୟ ଶୁଦ୍ଧି ହେଲେ ସାଧକ ନାନା ପ୍ରପଞ୍ଚରୁ ମୁକ୍ତି ଲାଭ କରିପାରେ, କିନ୍ତୁ ପ୍ରପଞ୍ଚାତୀତ ପରମଧାମକୁ ଯିବା ପାଇଁ ପୌରାଣିକ ପରିଭାଷାର ସହସ୍ର ଦଳ କମଳ କୁହ ବା ବୈଷ୍ଣବ ପରିଭାଷାରେ ଗୋଲକ ଧାମ କୁହ, ଯେଉଁ ନାମରେ ତାହାକୁ ଅଭିହିତ କରନା କାହିଁକି ସେହି ପରମ ଧାମରେ ପ୍ରବେଶ କରିବାକୁ ହେଲେ ଚିଦାକାଶ ଭେଦ କରିବାକୁ ହୁଏ । ଏହା ହିଁ ଓଡ଼ିଶା ତନ୍ତ୍ର ପରମ୍ପରା ଯୋଗୀମାନଙ୍କ ମତ । ଯେଉଁମାନେ ଯୋଗ କୁହନ୍ତି ସମାଧି ଦ୍ୱାରା ତାହା ସମ୍ଭବପର, ସେମାନେ ଯୋଗ ବାଇଗଣ ଦେଖୁ ନାହାନ୍ତି । ବାଇଗଣ ଦେଖୁଥାଇ ପାରନ୍ତି, ବାଡ଼ି ବାଇଗଣ ଦେଖୁ ନାହାନ୍ତି ।

ଗୁହ୍ୟ ଦ୍ୱାରରେ ସୁପ୍ତ ଥିବା କୁଣ୍ଡଳିନୀ ବା ଅବଧୂତୀଙ୍କୁ ଜାଗ୍ରତ କରି ନାଭିସ୍ଥିତ ଶକ୍ତିକୁ ଆୟତ୍ତ କରିବାକୁ ହୁଏ । ତା' ନହେଲେ ଊର୍ଦ୍ଧ୍ୱଗତି ସମ୍ଭବପର ହୋଇପାରେ ନାହିଁ । ଊର୍ଦ୍ଧ୍ୱ ଗତିରେ ସମସ୍ତ ଆକାଶ ଭେଦ କରିବାକୁ ହୁଏ । ଏଥିପାଇଁ ଖେଚରୀ ଶକ୍ତିଙ୍କ ସାହାଯ୍ୟ ନିତାନ୍ତ ଆବଶ୍ୟକ । ନାଭିଚକ୍ର ଭେଦ ହେଲେ ସେଠାରୁ ଏକ ନାଦ୍ ପ୍ରକାଶ ହୁଏ – ତାହା ଠିକ୍ ପ୍ରସିଦ୍ଧ ବ୍ରହ୍ମନାଦ୍ ଭଳି । ଏହା ଷଟ୍‌ଚକ୍ର ଅନ୍ତର୍ଗତ ନୁହେଁ – କାରଣ ଷଟ୍‌ଚକ୍ର ଭୌତିକ ଜଗତର ଅନ୍ତର୍ଗତ । ନାଭିଠାରୁ ଯେଉଁ ବ୍ରହ୍ମ ନାଦ୍‌ର ପ୍ରକାଶ ହୁଏ, ତାହାରି ଊର୍ଦ୍ଧ୍ୱରେ ସୁମଙ୍ଗଳା ଶକ୍ତିଙ୍କ ଅଭିବ୍ୟକ୍ତି ଘଟେ । ଏହି ସୁମଙ୍ଗଳା ଶକ୍ତି ହେଉଛନ୍ତି ଲଳିତା । ତାଙ୍କ ବିନା ସାହାଯ୍ୟରେ ସହସ୍ରାରେ ପ୍ରବେଶ କରି ହୁଏନାହିଁ । ଏହି ଲଳିତା ହେଉଛନ୍ତି ଶ୍ରୀବିଦ୍ୟା – ଷୋଡ଼ଶୀ । ଏ ହିଁ ସେହି ବୈଷ୍ଣବୀୟ ଲୀଳାର ନାୟିକା; ସମସ୍ତ ସଖୀମାନଙ୍କ ଅଗ୍ରଦୂତା ।

ତାନ୍ତ୍ରିକ ପରମ୍ପରାରେ ସାତଟି ଆଶ୍ରର କଥା ଦେଖିବାକୁ ମିଳେ । ଏହି ଆଶ୍ରଚଗୁଡ଼ିକ ହେଉଛି, ବେଦାଶ୍ରର, ବୈଷ୍ଣବାଶ୍ରର, ଶୈବାଶ୍ରର, ଦକ୍ଷିଣାଶ୍ରର, ବାମାଶ୍ରର, ସିଦ୍ଧାନ୍ତାଶ୍ରର ଓ କୌଳାଶ୍ରର । ପ୍ରତ୍ୟେକ ଆଶ୍ରର ଶ୍ରେଷ୍ଠ ହେଲେ ମଧ୍ୟ କୌଳାଶ୍ରର ସର୍ବୋତ୍ତମ – ଏପରି କି ଏହାଠାରୁ କୌଣସି ଶ୍ରେଷ୍ଠ ଆଶ୍ରର ନାହିଁ ବୋଲି କୁହାଯାଏ (କୌଳାତ୍ ପରତରଂ ନ ହି) ବେଦାଶ୍ରର କହିଲେ ବୈଦିକ କ୍ରିୟାନୁଷ୍ଠାନ ନୁହେଁ । ବେଦାଶ୍ରର ପରାୟଣ ତାନ୍ତ୍ରିକ ସାଧକ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରି ଗୁରୁଙ୍କ ନାମ ସ୍ମରଣ ପୂର୍ବକ ଆନନ୍ଦନାଥଙ୍କ ନାମ ଉଚ୍ଚାରଣ ଓ ତାଙ୍କୁ ପ୍ରଣାମ କରି ଏବଂ ସହସ୍ରାର ପଦ୍ମ ମଧ୍ୟେ ତାଙ୍କର ଧ୍ୟାନ କରିବା ପୂର୍ବକ ପଞ୍ଚୋପଚାରରେ ତାଙ୍କ ପୂଜା କଥା ତନ୍ତ୍ରରେ କୁହାହୋଇଛି । ପରେ ବାଗ୍‌ଭବ ବୀଜ ମନ୍ତ୍ର ଜପ କରି ଦେବୀଙ୍କ ଆରାଧନା କରାହୁଏ । ବୈଷ୍ଣବାଶ୍ରର ଗ ଅନେକାଂଶରେ ବେଦାଶ୍ରର ଭଳି । ମାତ୍ର ଏହି ପଦ୍ଧତିରେ ମୈଥୁନ ବା ତତ୍ ସମ୍ବନ୍ଧୀୟ ଜଳ୍ପନା ନିଷିଦ୍ଧ ଏବଂ ନିନ୍ଦା, କପଟାଚରଣ, ହିଂସା, ମାଂସ ଭୋଜନ ଆଦି ବର୍ଜନୀୟ । ଶୈବ ତଥା ଶକ୍ତ୍ୟାଶ୍ରର ଏହିଭଳି ହେଲେ ମଧ୍ୟ ପଶୁବଳି ନିଷିଦ୍ଧ ନୁହେଁ । ଦକ୍ଷିଣାଶ୍ରର ବେଦାଶ୍ରର ନିୟମ ପାଳନୀୟ ମାତ୍ର ଦେବୀଙ୍କ ପୂଜା ଓ ମନ୍ତ୍ର ଜପ କର୍ତ୍ତବ୍ୟ ରୂପେ ଧାରଣା କରାଯାଏ । ବାମାଶ୍ରର ପରାୟଣ ସାଧକ ବିହିତ ବିଧାନରେ କୁଳ ସ୍ତ୍ରୀ ପୂଜା କରନ୍ତି । କୁଳ ସ୍ତ୍ରୀ ବାମା ସ୍ୱରୂପା ପରମାଶକ୍ତିଙ୍କ ପ୍ରତୀକ ଏବଂ ଏହାଙ୍କ ପୂଜାରେ ପଞ୍ଚତତ୍ତ୍ୱ ଓ ଖପୁଷ୍ପାଦି ବ୍ୟବହାର କରାଯାଏ । ଏହି ଖପୁଷ୍ପ କହିଲେ ରଜଃସ୍ୱଳା ସ୍ତ୍ରୀଲୋକର ରଜକୁ ବୁଝାଏ । ତନ୍ତ୍ରରେ କୁହାହୋଇଛି ସ୍ୱୟମ୍ଭୁ ପୁଷ୍ପ, କୁଣ୍ଡ ପୁଷ୍ପ, ଗୋଲକ ପୁଷ୍ପ ଓ ବଜ୍ର ପୁଷ୍ପ ପ୍ରଦାନ କରିବାକୁ । ଏହି ଗୁଡ଼ି ପୁଷ୍ପ ଭାବେ ପ୍ରଥମ ରଜ, ସଧବା ସ୍ତ୍ରୀର ରଜ, ବିଧବା ନାରୀର ରଜ ଓ ଚଣ୍ଡାଳୀର ରଜକୁ ବୁଝାଏ । ତାହା କେଉଁଭଳି ଭାବରେ କିପରି ବ୍ୟବହାର କରାଯାଏ ସେ ସବୁ ବିଷୟ ତନ୍ତ୍ର ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଛି । ସିଦ୍ଧାନ୍ତ ଶ୍ରର ଅନେକାଂଶରେ ବାମାଶ୍ରର ଭଳି । ଏହି ପଦ୍ଧତିରେ ମତ୍ସ୍ୟ, ମାଂସ, ମଦ୍ୟ, ମୁଦ୍ରା ଓ ଖପୁଷ୍ପ (ମୈଥୁନ)କୁ ମନ୍ତ୍ର ସାହାଯ୍ୟରେ ଶୋଧନ କରିବାକୁ ହୁଏ । ଏହାକୁ ପଞ୍ଚ 'ମ'କାର ପୂଜା କୁହାଯାଏ । ଶ୍ୟାମା ରହସ୍ୟରେ କୁହାହୋଇଛି ବାମାଶ୍ରରୀମାନଙ୍କର ଏହି ପଞ୍ଚ 'ମ'କାର ମହାପାପ ବିନାଶ କରେ । ଓଡ଼ିଶାର ବହୁ ଦେବୀଙ୍କ ନିକଟରେ ପଞ୍ଚ 'ମ'କାର ପ୍ରଚଳନ ରହିଛି । ମୈଥୁନ ସ୍ଥାନରେ କୌଣସି ନାରୀର ରଜ ବା ନାରୀ ବଦଳରେ କୃଷ୍ଣ ଅପରାଜିତା ପୁଷ୍ପରେ ରକ୍ତ ଚନ୍ଦନ ପ୍ରଦାନ କରାଯାଏ । ମାତ୍ର ବାମାଶ୍ରରୀଙ୍କ ଚକ୍ର ପୂଜାରେ ମାଛ, ମାଂସ, ମଦ୍ୟକୁ ଶୋଧନ କରାଯାଇ ପ୍ରଦାନ କରାହୁଏ । ମହାନିର୍ବାଣ ତନ୍ତ୍ରାଦିରେ ଏ ସବୁ ବିଷୟ ଉଲ୍ଲେଖ ହୋଇଛି । ସିଦ୍ଧାନ୍ତଶ୍ରରୀ ଦିନରେ ବିଷ୍ଣୁ ପୂଜା କରି ରାତିରେ ଭକ୍ତି ପୂର୍ବକ ବିଧି ଅନୁସାରେ ପଞ୍ଚ 'ମ'କାର ପ୍ରଦାନ ଓ ନିବେଦିତ ଦ୍ରବ୍ୟକୁ ପ୍ରସାଦ ରୂପେ ଗ୍ରହଣ କରନ୍ତି ।

ନିତ୍ୟା ତନ୍ତ୍ରରେ ସର୍ବୋତ୍ତମ କୌଳାଶ୍ରରର ଯେଉଁ ବିବରଣ ଦିଆହୋଇଛି ତାହା ପାଠ କଲେ ସ୍ୱତଃ ଉଗ୍ର ତାନ୍ତ୍ରିକ ପାଶୁପତାଦି ସମ୍ପ୍ରଦାୟଙ୍କ ଆଚରିତ ବିଧି କଥା ବୋଲି ମନେହୁଏ । ତନ୍ତ୍ରାଚାର୍ଯ୍ୟ କହିଛନ୍ତି, ମହାମନ୍ତ୍ର ସାଧନାରେ ଦିଗ ଓ କାଳର ନିୟମ ନାହିଁ ଏବଂ ତିଥି, ନକ୍ଷତ୍ରାଦିର ଗଣନା କରାଯାଏ ନାହିଁ । କୌଣସି କୌଣସି ସ୍ଥାନରେ ଶିଷ୍ଟ, କେଉଁଠି ଭ୍ରଷ୍ଟ ବା କେଉଁଠି ଭୂତ ପିଶାଚ ଭଳି ବିଭିନ୍ନ ବେଶଧାରୀ କୌଳମାନେ ବିଚରଣ କରନ୍ତି । ଶିବ ପାର୍ବତୀଙ୍କୁ କହୁଛନ୍ତି: ପ୍ରିୟେ ! କର୍ଦ୍ଦମ ଓ ଚନ୍ଦନରେ, ପୁତ୍ର ଓ ଶତ୍ରୁରେ ଯାହାଙ୍କର ଭେଦଜ୍ଞାନ ନାହିଁ, ଆଉ ହେ ଦେବୀ ! ଶ୍ମଶାନ, ଗୃହ, କାଞ୍ଚନ ଓ ତୃଣରେ ଯାହାଙ୍କର ପ୍ରଭେଦବୋଧ ନାହିଁ, ସେହି ଲୋକ କୌଳ ବୋଲି ବର୍ଣ୍ଣିତ ।

ଓଡ଼ିଶାର ତନ୍ତ୍ର ପରମ୍ପରାକୁ ଲକ୍ଷ୍ୟ କଲେ ଏହି ସବୁ ବିଷୟ ସ୍ପଷ୍ଟ ବା ଅସ୍ପଷ୍ଟ ଭାବେ ପରିଲକ୍ଷିତ ହୁଏ । ମନେ ରଖିବାକୁ ହେବ କେହି ଲୋକ କୌଣସି ରୋଗ ପାଇଁ କୌଣସି ଗଛର ଚେର, ମୂଳ, ପତ୍ର କାଟି ଖାଇବାକୁ କହିଥାନ୍ତି ଓ ତାହା ବ୍ୟବହାର କଲାପରେ ବ୍ୟକ୍ତି ରୋଗମୁକ୍ତ ହୁଏ । ମାତ୍ର ଏହି ଲୋକକୁ କବିରାଜ କୁହାଯାଏ ନାହିଁ । ସେହିଭଳି ଡାଆଣୀ ଭୂତ ଝାଡ଼ଣ ବା କାହାକୁ କେଉଁ ଦ୍ରବ୍ୟରେ ବଶୀକରଣ କଥା କହିଲେ ବା କଲେ ସେ ତାନ୍ତ୍ରିକ ହୁଅନ୍ତି ନାହିଁ । ସେମାନଙ୍କୁ ଗୁଣିଗୁଣିଆ ଗୁଣି କୁହାଯାଏ । ତନ୍ତ୍ର ହେଉଛି ମହାନ୍ ବିଦ୍ୟା । ଏହା ସାଧନାମୁଖୀ । କେତେକ ଲୋକ ବିନା ସାଧନାରେ ନିଜକୁ ତାନ୍ତ୍ରିକ ବୋଲି ବିଜ୍ଞାପିତ କରନ୍ତି । ଥରେ ଜଣେ ନିଜକୁ ତାନ୍ତ୍ରିକ ବୋଲି କହି ଶବ ସାଧନା କରିଛନ୍ତି ବୋଲି ପ୍ରକାଶ କଲେ । ମାତ୍ର ଯେତେବେଳେ ତାଙ୍କୁ ପ୍ରଶ୍ନ ହେଲା ସେ ଶବଟି କାହାର ? ସେତେବେଳେ ସେ ଏଣୁତେଣୁ କଥା କହିବାକୁ ଲାଗିଲେ । ମନେ ରଖିବାକୁ ହେବ ଶବ ସାଧନା ଅମାବାସ୍ୟା ରାତିରେ ହୁଏ – ସେ ଶବଟି କୌଣସି ଚଣ୍ଡାଳର ହୋଇଥିବ ବା ବିସୂଚିକା ରୋଗରେ ମରିଯାଇଥିବା ଲୋକର ହୋଇଥିବ । ସେହି ଶବ ଗୃହରେ ସଂଗ୍ରହ କରିବାକୁ ହୁଏ । ତା'ପରେ ସେହି ଶବ ମହାଶ୍ମଶାନକୁ ନେଇ ସେଠାରେ ଶୁଦ୍ଧ ସ୍ନାନ କରାଇ ତା'ର ବକ୍ଷ ଉପରେ ସାଧକ ବସି ଇଷ୍ଟ ମନ୍ତ୍ର ଜପ କରେ । ତା' ପାଖରେ ମଦ, ମାଂସ, ମାଛ ଆଦି ପୂଜା ଦ୍ରବ୍ୟ ଥାଏ ଓ ତାହାରି ନିକଟରେ ଭଇରବ ... ସାଧକ ରୂପେ ଗୁରୁ ବସିଥାନ୍ତି । କାହିଁକି ନା କେଉଁଠି କିଛି ବ୍ୟତିକ୍ରମ ହେଲେ ତାହା ସଂଶୋଧନ କରି ଦେବାକୁ । ତାନ୍ତ୍ରିକ ... ନହେଲେ କିଛି କରିପାରେ ନାହିଁ । ଓଡ଼ିଶାର ବହୁ ମନ୍ତ୍ର ସିଦ୍ଧ ...

[illegible]

ସ୍ଥାନରେ ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ମାରଣ ବିଦ୍ୟା ଜାଣିଥିବା ତାନ୍ତ୍ରିକ ରହିଛନ୍ତି । ଗୁରୁଙ୍କଠାରୁ ଶିଷ୍ୟ ତାହା ଶିକ୍ଷା କରି କ୍ଷେତ୍ର ବିଶେଷରେ ପ୍ରୟୋଗ କରନ୍ତି ।

କାଳିକା ପୁରାଣରେ କୁହାଯାଇଛି ସାରା ଭାରତରେ ଓଡ଼ିଶା ହେଉଛି ପ୍ରଥମ ତନ୍ତ୍ର ପୀଠ ଏହାର ଅଷ୍ଟ ଦିଗରେ ଅଷ୍ଟ ମହାଶକ୍ତି ରହିଛନ୍ତି । ପ୍ରତି ମହାଶକ୍ତିଙ୍କର ମଧ୍ୟ ଅଷ୍ଟଶକ୍ତି ରହିଛନ୍ତି । ସେମାନଙ୍କୁ ଏକତ୍ର ଗଣନା କଲେ ଚଉଷଠି ସଂଖ୍ୟକ — ମଣିଷର ମସ୍ତକରେ ଚଉଷଠି ପାଖୁଡ଼ା ପଦ୍ମ ଥିବା ଚର୍ଯ୍ୟା ପଦରେ କୁହାଯାଇଛି । ତେଣୁ ବୌଦ୍ଧ ତାନ୍ତ୍ରିକମାନେ ପ୍ରଥମେ ଭୁବନେଶ୍ୱରର ପୂର୍ବକୁ ବର୍ତ୍ତମାନର ହୀରାପୁରଠାରେ ଚଉଷଠି ଯୋଗିନୀ ମନ୍ଦିର ନିର୍ମାଣ କରି ଦେବୀମାନଙ୍କୁ ଆରାଧନା କରୁଥିଲେ । ପରେ ଗଗନ ଶୈବାଚାର୍ଯ୍ୟ ରାଣୀପୁର ଝରିଆଲରେ ଆଉ ଗୋଟିଏ ଚଉଷଠି ଯୋଗିନୀ ମନ୍ଦିର ନିର୍ମାଣ କଲେ। ଉଭୟ ମନ୍ଦିର ଆଜି ଅନାଦୃତ । କେବଳ ଓଡ଼ିଶା ତନ୍ତ୍ରର ଏକ ମହାନ୍ ଭୂମି ଏହାର ନିଦର୍ଶନ ସ୍ୱରୂପ ବହୁ ସ୍ଥାନରେ ଏହିଭଳି ବହୁ ଦେବୀଙ୍କ ଆସ୍ଥାନ ରହିଛି । ସେହି ସବୁ ପୀଠରେ ଦେବୀମାନେ ଅପେକ୍ଷା କରିଛନ୍ତି ସାଧକର ସାଧନକୁ । ଯୁଗର ପରିବର୍ତ୍ତନ ଘଟିଛି ଓ ଘଟୁଛି । ଚକ୍ର ଘୂରିଲା ଭଳି କାଳଚକ୍ର ଘୂରି ପୁଣି ସେହି ତନ୍ତ୍ର ଯୁଗ ପ୍ରତ୍ୟାବର୍ତ୍ତନ କରିବ ଓ ସେହି ସବୁ ଦେବୀ ବରଦାୟିନୀ ହୋଇ ସାଧକଙ୍କୁ ବରଦାନ କରିବେ ଏବଂ ଦେଶ ସ୍ଥାନ ବିଜ୍ଞାନରେ ଅଗ୍ରଗତି କରିବ ଏଥିରେ ସନ୍ଦେହ ନାହିଁ ।

---

ଘର ନଂ ୨୭, ଟାଇପ୍-୪,
ଡେଲ୍‌ଟା କଲୋନୀ, ଭୁବନେଶ୍ୱର-୧୨ ।



ଖୋର୍ଦ୍ଧା ମହିଳା ମହାବିଦ୍ୟାଳୟ ଦ୍ୱାରା ଆୟୋଜିତ 'ମହିଳାଙ୍କ ପାଇଁ ସଂରକ୍ଷଣ' ଶୀର୍ଷକ ଏକ ଆଲୋଚନା ଚକ୍ରକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (୨୮/୧୦) ।

# ଦାସକାଠି ଓ
# ଗାୟକରତ୍ନ କୃଷ୍ଣଚନ୍ଦ୍ର

● ଅଧ୍ୟାପକ ଗୋବିନ୍ଦ ପାଢ଼ୀ

କଳା ଓ ସଂସ୍କୃତିର ଅଭିନବ ଗନ୍ତାଘର ଏ ଉତ୍କଳ । ନୃତ୍ୟ ଓ ସଙ୍ଗୀତର ଉତ୍କର୍ଷତା ଯୁଗେ ଯୁଗେ ଉଲ୍ଲେଖନୀୟ ଲଳିତ କଳା ଓ ସଂସ୍କୃତିର ମହାନ୍ ପରମ୍ପରାକୁ ଇତିହାସର ପୃଷ୍ଠା ମଣ୍ଡନ କରି ଆସିଅଛି । କିନ୍ତୁ ଅତୀତର ଏହି ସ୍ୱାଭିମାନୀ କଳାପ୍ରେମୀ ଜାତି କ୍ରମଶଃ ତା'ର ପ୍ରାଚୀନ କଳା ଓ ସଙ୍ଗୀତକୁ ପାଶୋରି ଯିବାରେ କୁଣ୍ଠାବୋଧ କରୁନି । ଯେଉଁ ଲୋକନୃତ୍ୟ ଯଥା, ରାମଲୀଳା, କୃଷ୍ଣଲୀଳା, ଭାରତଲୀଳା,ରାଧାପ୍ରେମଲୀଳା, ପ୍ରହ୍ଲାଦ ନାଟକ, ଗୋଟିପୁଅ ନାଚ, ଘୁଡୁକି ନାଚ, ଦଣ୍ଡନାଚ, ପାଇକ ନାଚ, ଛଉନୃତ୍ୟ, ଗାଥାଣୀ, ପାଲା, ଦାସକାଠି ପ୍ରଭୃତି ଏ ଜାତିର କଳାପ୍ରେମକୁ ପ୍ରାଣବନ୍ତ କରି ରଖିଥିଲା ସେ ସବୁ ଆଜିର ଏ ଦୃଶ୍ୟ-ଶ୍ରାବ୍ୟ ଯୁଗରେ ଆସ୍ତେ ଆସ୍ତେ ନିଷ୍ପ୍ରାଣ ହେବାକୁ ଲାଗିଲାଣି । ଏହି ପରିପ୍ରେକ୍ଷୀରେ ଗଞ୍ଜାମର ଏକ ଅନବଦ୍ୟ ଅବଦାନ 'ଦାସକାଠି'ର ଅବତାରଣା ଅପ୍ରାସଙ୍ଗିକ ନୁହେଁ ।

ଦାସକାଠି ନାଚର ଉତ୍ପତ୍ତି କିମ୍ବଦନ୍ତୀ ବହୁଳ । କେତେକଙ୍କ ମତରେ ତ୍ରେତୟା ଯୁଗରେ ଯେତେବେଳେ ମର୍ଯ୍ୟାଦା ପୁରୁଷ ରାମଚନ୍ଦ୍ର ବାନର ସେନା ଧରି ରାବଣ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ, ସେତେବେଳେ ବାନର ଦଳ ଦୁଇଟି ଲେଖାଏଁ କାଠିକୁ ଯୁଦ୍ଧର ବୀର ବାଦ୍ୟର ଯନ୍ତ୍ର ରୂପେ ବ୍ୟବହାର କରିଥିଲେ । ଯେହେତୁ ବାନରମାନେ ହେଲେ ପ୍ରଭୁଙ୍କ 'ଦାସ', ତେଣୁ ଏହା 'ଦାସକାଠି' ରୂପେ ପରେ ବିଖ୍ୟାତ ହେଲା । ଅନ୍ୟ ଏକ ମତର ଅବତାରଣା ହେଉଛି, ଗଞ୍ଜାମ ଜିଲ୍ଲାରେ 'ଦାସେରି' ନାମରେ ଏକ ଜାତି ପୂର୍ବେ ଭିକ୍ଷା କରୁଥିବା ବେଳେ ଦୁଇ କାଠିକୁ ବଜାଉଥିବା ପ୍ରମାଣରୁ ଏହାକୁ 'ଦାସକାଠି' ବୁଝାଯାଉଛି ।

କିନ୍ତୁ ଦାସକାଠି ନାଚର ଜନ୍ମ ହେଉଛି ଗଞ୍ଜାମ ଜିଲ୍ଲାର ଖଣ୍ଡରା ଗ୍ରାମରୁ । ଖଣ୍ଡରା ଗ୍ରାମ ନିବାସୀ ସ୍ୱର୍ଗତ ଅଗାଧୁ ସାହୁ ଥରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ପୁରୀ ଯାଇଥିଲେ । ଠାକୁରଙ୍କ ଦର୍ଶନାନ୍ତେ ଜଗତର ନାଥ ଜଗନ୍ନାଥଙ୍କ ବିଷ୍ଣୁ ପ୍ରେମରେ ସ୍ୱତଃ ବିଭୋର ହୋଇ ଉଠିଲେ । ତାଙ୍କମନରେ ଏକ ଅପୂର୍ବ ଭାବାନ୍ତର ଜାତ ହେଲା । ନିଜ ଗ୍ରାମ ଖଣ୍ଡରାକୁ ଆସି ବିଭିନ୍ନ ପୁରାଣ, ଛାନ୍ଦ, ଚଉପଦୀ, ଜଣାଣ ଅଧ୍ୟୟନ କରି ହରି କଥା ପ୍ରସ୍ତୁତ କରିବା ପାଇଁ ଦୃଢ଼ ନିଷ୍ପତ୍ତି ନେଲେ । ସେ ନିଜକୁ ବିଷ୍ଣୁଙ୍କ "ଦାସ" ମନେ କରି କାଠି ମାଧ୍ୟମରେ ଏହି ଉଲ୍ଲେଖନୀୟ କଳାକୁ ପ୍ରଥମେ ରୂପରେଖ ପ୍ରଦାନ କଲେ । ସମାକୃତି ଦୁଇ କାଠି ଦ୍ୱାରା ଅପୂର୍ବ ତାଳ ସୃଷ୍ଟି କରି ହରି କଥା ଗାୟନରେ ସେ ସର୍ବଜନ ମନ ହରଣ କରିବାରେ ଲାଗିଲେ ।

ଦାସକାଠି ନାଚରେ ଗାୟକଙ୍କ ସାହାଯ୍ୟକାରୀ 'ପାଳିଆ'ର ଭୂମିକା କୌଣସି ଗୁଣରେ ଗୌଣ ନୁହେଁ ଗାୟକ ଶ୍ରୀ ସାହୁ ପ୍ରଥମେ ଗଞ୍ଜାମ ଜିଲ୍ଲାର କବିସୂର୍ଯ୍ୟନଗର ନିକଟସ୍ଥ ସଦାବର୍ତ୍ତ ନୂଆଗାଁ ନିବାସୀ ସ୍ୱର୍ଗତ କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀଙ୍କୁ ପାଳିଆ ରୂପେ ଗ୍ରହଣ କଲେ । ପରେ ନିଜ ଜ୍ୟେଷ୍ଠ ପୁତ୍ର ଶ୍ରୀମାନ୍ କୃଷ୍ଣଚନ୍ଦ୍ରଙ୍କୁ ପାଳିଆ ରୂପେ ନେଇ ବିରୁଳି, ପାଲୁର ଓ ହୁମା ଜମିଦାରଙ୍କ ଦରବାରରେ ଦାସକାଠି ନାଚ ପ୍ରଦର୍ଶନ କରିବାର ପ୍ରମାଣ ରହିଛି ।

ଦାସକାଠି ନାଚକୁ ଉଲ୍ଲେଖନୀୟ ଗାୟନ କଳାର ମାନ୍ୟତା ଦେଇ ଶୀର୍ଷ ଦେଶ ପହଞ୍ଚାଇବାରେ ଦାସକାଠି ନାଚର ଜନକ ସ୍ୱର୍ଗତ ଅଗାଧୁ ସାହୁଙ୍କ ଜ୍ୟେଷ୍ଠ ପୁତ୍ର କୃଷ୍ଣଚନ୍ଦ୍ରଙ୍କ ଅବଦାନ ସର୍ବଜନ ସ୍ୱୀକୃତ । ଗାୟକ ରତ୍ନ କୃଷ୍ଣଚନ୍ଦ୍ର ଏକ ଅପୂର୍ବ ପ୍ରତିଭାର ଅଧିକାରୀ । ଐଶୀ ଶକ୍ତି ବଳରେ ବଳିୟାନ ହୋଇ ଦାସକାଠି ନାଚ କ୍ଷେତ୍ରରେ ସେ ଯେଉଁ ଇତିହାସ ସୃଷ୍ଟି କରି ଯାଇଛନ୍ତି ତାହା ତାଙ୍କୁ ଅମର କରି ରଖିବ ।

ଏହି ପ୍ରଚଣ୍ଡ ପ୍ରତିଭା ସମ୍ପନ୍ନ ବ୍ୟକ୍ତିଙ୍କ ଦାସକାଠି ନୃତ୍ୟକଳା ନିଜ ଅଦ୍ୟମ ସାଧନା ନିଷ୍ଠା ଏବଂ ଐଶୀ ଶକ୍ତି ପ୍ରଭାବ ବୋଲି ଏକ ମର୍ମସ୍ପର୍ଶୀ କାହାଣୀ ରହିଛି । ଷୋଳ ବର୍ଷ ବୟସ୍କ ଯୁବକ କୃଷ୍ଣଚନ୍ଦ୍ର ଏକଦା ତାଙ୍କ ପିତା ଅଗାଧୁ ସାହୁଙ୍କ ପାଳିଆ ରୂପେ ଗଞ୍ଜାମର ବିରୁଡ଼ି ଜମିଦାରଙ୍କ ଦରବାରରେ ଗାୟନ ପାଇଁ ଦଣ୍ଡାୟମାନ ହୋଇଥିଲେ । ଦରବାରର ଆଦବ କାଇଦା ଓ ଜନ ସମାବେଶ ଯୁବକ କୃଷ୍ଣଚନ୍ଦ୍ରଙ୍କ ମନରେ ଭୟ ସଞ୍ଚାର କରିଥିଲା । ନିର୍ବାକ ଭାବେ ଦଣ୍ଡାୟମାନ ଏହି ଯୁବକ ଭୟରେ ଥରିବାକୁ ଲାଗିଲେ । ପରେ ତାଙ୍କୁ ପିତା ଗାୟକ ଅଗାଧୁ ସାହୁଙ୍କ ଅଶ୍ରାବ୍ୟ ଭାଷାରେ ଭର୍ତ୍ସନାର ଶରବ୍ୟ ହେବାକୁ ପଡ଼ିଲା । ଏଥିରେ ଅପମାନିତ ଓ ମର୍ମାହତ ହୋଇ ସ୍ୱାଭିମାନୀ କୃଷ୍ଣଚନ୍ଦ୍ର ପିତାଙ୍କ ଅଜଣାରେ ନିଖୋଜ ହେଲେ । ବ୍ରହ୍ମପୁର ନିକଟସ୍ଥ ପଣ୍ଡମାଳ ସିଦ୍ଧ ବିନାୟକ ପୀଠରେ ସେ ଦାସକାଠି କଳାରେ ସିଦ୍ଧିଲାଭ ପାଇଁ ଗୁହାରିଆ ପଡ଼ିଲେ ।

କିଛି ଦିନ ପରେ ସିଦ୍ଧ ଗଣେଶଙ୍କ ଦ୍ୱାରା ସ୍ୱପ୍ନରେ ବର ପ୍ରାପ୍ତ ହୋଇ ଖଣ୍ଡରା ପ୍ରତ୍ୟାବର୍ତ୍ତନ କଲେ । ସେହି ଦିନଠାରୁ କୃଷ୍ଣଚନ୍ଦ୍ରଙ୍କ ଗାୟନ କଳାରେ ଅଦ୍ଭୁତ ପରିବର୍ତ୍ତନ ପରିଲକ୍ଷିତ ହେଲା । ସେ ଯେଉଁସବୁ ସ୍ଥାନମାନଙ୍କୁ ଗାୟନ କରିବାକୁ ଯାଉଥିଲେ ପ୍ରଥମେ ପଞ୍ଚମା ଗଣେଶଙ୍କ ସିନ୍ଦୁର ମସ୍ତକରେ ଧାରଣ କରି ଗାୟନର ଅଙ୍ଗମାରମ୍ଭରେ ଗଣେଶଙ୍କ ବନ୍ଦନା କରୁଥିଲେ ।

ଗାୟକରତ୍ନ କୃଷ୍ଣଚନ୍ଦ୍ର ଯେତେବେଳେ ଗାୟନ ଆରମ୍ଭ କଲେ ସେତେବେଳେ ସର୍ବ ପ୍ରଥମେ ନିଜ ପିତାଙ୍କ ପାଳିଆ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କୁ ନିଜର ପାଳିଆ ରୂପେ ଗ୍ରହଣ କରିଥିଲେ । ପରେ ନିଜ ପ୍ରଥମ କନିଷ୍ଠ ଭ୍ରାତା ଶ୍ରୀ କାଳୀଚରଣ ଓ ପରେ ଅନ୍ୟ କନିଷ୍ଠ ଭ୍ରାତା ଶ୍ରୀ ଗୋପିନାଥ ଓ ଜ୍ୟେଷ୍ଠ ପୁତ୍ର ଶ୍ରୀମାନ୍ ଅନ୍ତର୍ଯ୍ୟାମିଙ୍କୁ ପାଳିଆ ରୂପେ ନେଇ ଦାସକାଠି ନାଚ ପ୍ରଦର୍ଶନ କରିବାର ଦୃଷ୍ଟାନ୍ତ ରହିଛି । ନିଜ ପ୍ରିୟ ଶିଷ୍ୟମାନଙ୍କ ମଧ୍ୟରୁ ପି: ରାମଚନ୍ଦ୍ରପୁରର ଶ୍ରୀ ଆଦିକନ୍ଦ ପାଢ଼ୀ, ନଗରଡିହ ଶାସନର ଶ୍ରୀମାନ୍ ବୈଦ୍ୟନାଥ ଶତପଥୀଙ୍କୁ ମଧ୍ୟ ପାଳିଆ ରୂପେ ନେଇ ବହୁ ସ୍ଥାନରେ ଗାୟନ କରିବାର ସୂଚନା ମିଳେ ।

ସାରା ଓଡ଼ିଶାରେ ଗାୟକ ରତ୍ନ କୃଷ୍ଣଚନ୍ଦ୍ରଙ୍କ ଅନେକ ଶିଷ୍ୟ ଆଦି ଦାସକାଠି ଗାୟନରେ ରତ ଅଛନ୍ତି । ସେମାନଙ୍କ ମଧ୍ୟରୁ ନଗରଡିହ ଶାସନ ନିବାସୀ ସ୍ୱର୍ଗତ ବୈଦ୍ୟନାଥ ଶତପଥୀ ଓ ଶ୍ରୀ ଭୀମସେନ ଶତପଥୀ ବିଶିଷ୍ଟ ଗାୟକ ଓ ପାଳିଆ ରୂପେ ସର୍ବ ଭାରତୀୟ ସ୍ତରରେ ସମ୍ମାନିତ । ଅନ୍ୟମାନଙ୍କ ମଧ୍ୟରୁ ପି: ରାମଚନ୍ଦ୍ରପୁରର ଶ୍ରୀ ଆଦିକନ୍ଦ ପାଢ଼ୀ ଓ ଲାଠିର ଶ୍ରୀ କାଶୀନାଥ ପଣ୍ଡା ମଧ୍ୟ ଦାସକାଠି କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଛନ୍ତି । ଗାୟକ ରତ୍ନଙ୍କ ପ୍ରଥମ ଶିଷ୍ୟମାନଙ୍କ ମଧ୍ୟରୁ ହିଞ୍ଜିଳିର ସ୍ୱର୍ଗତ ବିନାୟକ ସାବତ ଓ ଗୌରହରି ବିଶ୍ୱାସରା, ଲାଠିର ଲକ୍ଷ୍ମଣ ପଣ୍ଡା ଓ ପଢ଼ାଳ ଜୟପୁରର କ୍ଷେତ୍ରବାସୀ ମାଷ୍ଟ୍ର ପ୍ରମୁଖ ଆଦି ଜନମାନସ ଅଗୋଚରରେ । କୃଷ୍ଣଚନ୍ଦ୍ରଙ୍କ ଜୀବଦ୍ଦଶାରେ ସେ ବହୁ ରାଜରାଜୁଡ଼ା ଓ ଜମିଦାରଙ୍କ ଦରବାରରେ ସ୍ୱକୀୟ କଳାକୃତି କୃତିତ୍ୱ ପ୍ରଦର୍ଶନ କରି ବହୁ ଉପାଧି ଓ ପ୍ରଶଂସା ପତ୍ରର ଅଧିକାରୀ ହୋଇଛନ୍ତି । ଗଞ୍ଜାମର ଶେରଗଡ଼ ରାଜ ଦରବାରରେ ସେ ଏକାଦି କ୍ରମେ ୬ମାସ ଗାୟନ କରି ୧୯୪୦ ମସିହାରେ 'ଗାୟକ ରତ୍ନ' ଉପାଧିରେ ଭୂଷିତ ହୋଇଥିବାର ପ୍ରମାଣ ରହିଛି । ସେହି ଦରବାରରେ ସେ ୧-୧-୧୯୪୭ରେ 'ସ୍ୱର୍ଣ୍ଣକୁଣ୍ଡଳ ଓ ତାଙ୍କ ପାଳିଆ ଶ୍ରୀ କାଳୀଚରଣ "ସ୍ୱର୍ଣ୍ଣଖଡ଼ୁ" ଆଭୂଷଣରେ ମଣ୍ଡିତ ହୋଇଥିବାର ମଧ୍ୟ ପ୍ରମାଣ ରହିଛି । ଏତଦ୍ ବ୍ୟତୀତ ସେ ଖଲ୍ଲିକୋଟ, ସୁରଙ୍ଗୀ, ଚିକିଟି, ଖେମଣ୍ଡି, ଧରାକୋଟ, ପୋଡ଼ାମାରି, ଆଠଗଡ଼, ରଣପୁର, ସମ୍ବଲପୁରର ବୋଡ଼ାସମ୍ବର ଓ ଖଡ଼େଇକଲା ରାଜ ଦରବାରମାନଙ୍କରେ ଗାୟନ କରି ଭୂରି ଭୂରି ପ୍ରଶଂସା ପ୍ରାପ୍ତ ହୋଇଥିଲେ । ୧୯୪୩ରେ ତତ୍କାଳୀନ ଓଡ଼ିଶାର ଶିକ୍ଷାମନ୍ତ୍ରୀ ସ୍ୱର୍ଗତ ଗୋଦାବରୀଶ ମିଶ୍ର ଓ ପରେ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଶ୍ୱନାଥ ଦାଶ, ହରେକୃଷ୍ଣ ମହତାବ, ବିରେନ୍ ମିତ୍ର ଓ ସଦାଶିବ ତ୍ରିପାଠୀ ଏବଂ ବରିଷ୍ଠ ସମ୍ପାଦକ ରାଧାନାଥ ରଥ ପ୍ରମୁଖଙ୍କ ଦ୍ୱାରା ସେ ଉଚ୍ଚ ପ୍ରଶଂସିତ ହୋଇଥିଲେ । ୧୯୬୩-୬୪ରୁ ଶେଷ ଜୀବନ ପର୍ଯ୍ୟନ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ବୃଦ୍ଧ କଳାକାର ଭାବେ ଅବସର କାଳୀନ ଭତ୍ତା ମଧ୍ୟ ପାଉଥିଲେ ।

ଗାୟକ ରତ୍ନଙ୍କ କୃତିତ୍ୱର ଅନ୍ୟ ଏକ ଦୃଷ୍ଟାନ୍ତ ହେଲା ରଣପୁର ରାଜ ଦରବାରରେ ଦାସକାଠି ପ୍ରତିଯୋଗିତା । ପୂର୍ବରୁ ରଣପୁର ରାଜା ବ୍ରହ୍ମପୁରର ଦାସକାଠି ଗାୟକ ସ୍ୱର୍ଗତ ଲକ୍ଷ୍ମଣ ନନ୍ଦଙ୍କୁ 'ଗାୟକ ରତ୍ନ' ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ପ୍ରତିଯୋଗିତାରେ କୃଷ୍ଣଚନ୍ଦ୍ରଙ୍କ ଅଲୌକିକ ଗାୟନ କଳା ଓ ଠାଣିରେ ଅଭିଭୂତ ହୋଇ ନିଜ ଭୁଲ୍ ପାଇଁ ପଶ୍ଚାତାପ କରିଥିଲେ ।

କୃଷ୍ଣଚନ୍ଦ୍ରଙ୍କ ଶିକ୍ଷାଗତ ଯୋଗ୍ୟତା ଅତି ନଗଣ୍ୟ ହେଲେ ମଧ୍ୟ ନିଜର ନିଷ୍ଠା ଓ କଠିନ ଅଧ୍ୟବସାୟ ବଳରେ ସେ ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ହୋଇଥିଲେ । ତାଙ୍କ ଗାୟନକଳାର ବୈଶିଷ୍ଟ୍ୟ ହେଲା ସେ ବିଭିନ୍ନ ପୁରାଣ ଯଥା, ରାମାୟଣ, ମହାଭାରତ, ହରିବଂଶ ପ୍ରଭୃତିର ଆଖ୍ୟାୟିକାକୁ କଣ୍ଠସ୍ଥ କରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତ କବି ଗୋପାଳକୃଷ୍ଣ, ସ୍ୱଭାବ କବି ଗଙ୍ଗାଧର ମେହେର, କବି ଅଭିମନ୍ୟୁ ସାମନ୍ତ ସିଂହାର, କବି ଦୀନକୃଷ୍ଣ ଦାସ, ରାଧାନାଥ ରାୟ ଓ ଗୋଦାବରୀଶ ମହାପାତ୍ର ପ୍ରମୁଖଙ୍କ ରଚନା ବଳୀରୁ ଛାନ୍ଦ, ଚଉପଦୀ, ଚଉତିଶା ଓ ଜଣାଣକୁ ନେଇ ସ୍ୱକୀୟ ଭଙ୍ଗୀରେ ଗାୟନକୁ ରସାପ୍ଳୁତ କରୁଥିଲେ । ଗାୟକରତ୍ନଙ୍କ ନିଜ ରଚନାବଳୀ, ନଳ-ଦମୟନ୍ତୀ ଚରିତ, ଲୀଳାବତୀ ହରଣ, କାମକଳା ହରଣ, ସୂର୍ଯ୍ୟକାନ୍ତି ହରଣ, ଉର୍ବଶୀ ହରଣ ଓ ଚିତ୍ରସେନ ଶରଣ ପ୍ରଭୃତି ଆଜିସୁଦ୍ଧା ଅପ୍ରକାଶିତ ପାଣ୍ଡୁଲିପି ରୂପେ ରହିଛି । ୧୯୪୬ ମସିହାରେ ସେ ୯୬୭୫ ପଦ ସମ୍ମିଳିତ ସୂର୍ଯ୍ୟକାନ୍ତି ହରଣ ରଚନା କରିଥିଲେ । ସେଥିର କିମ୍ବଦଂଶ ହେଲା, "ପୂର୍ବ ଖଣ୍ଡ ଖଣ୍ଡରା ଯେ ଜାତିରେ ବ୍ରାହ୍ମଣ ସାହୁ ସଂଜ୍ଞା କୃଷ୍ଣଚନ୍ଦ୍ର ଅଟେ ମୋର ନାମ ଭଦ୍ରଲୋକମାନଙ୍କର କୃପାପ୍ରସାଦେଣ ଶେରଗଡ଼ ରାଜଙ୍କର ଗାୟକ ରତନ ତେଲୁଗୁ ଭାରତରୁ ଏ ଉଦ୍ଧାର କରାଇ 'ସୂର୍ଯ୍ୟକାନ୍ତି ପରିଣୟ' କରି ଅଛି ମୁହିଁ, ତାଙ୍କ ରଚିତ ସୁଲଳିତ ଛାନ୍ଦଗୁଡ଼ିକ ମଧ୍ୟରୁ "ରାତିପାହି ଗଲା ହେ ହାତୀ ହୁଅ ଅପହୃତ ଦେଜ ସୁପାତି," "ଗଜପତି ମୋ ପ୍ରେମେ ଜଡ଼ିବ, ଲାଜମନରୁ ଆଜ ଛାଡ଼ିବ" ଓ "ଚନ୍ଦ୍ର ହାସି ମୋଧନ ଆସିବ ପ୍ରୀତିକୁ ମୋର ରସିବ" ପ୍ରଭୃତି ଅତି ଉଚ୍ଚ କୋଟୀର ରଚନା ଜନମାନସରେ ଆଜିସୁଦ୍ଧା ଅପାଶୋର ହୋଇ ରହିଛି ।

କୃଷ୍ଣଚନ୍ଦ୍ର ୧୯୦୦ ମସିହା ଜାନୁଆରୀ ୯ ତାରିଖରେ ଗଞ୍ଜାମର ହିଞ୍ଜିଳିକାଟୁ ନିକଟସ୍ଥ ଖଣ୍ଡରା ଗ୍ରାମରେ ଜନ୍ମଗ୍ରହଣ କରି ୧୯୭୪ ମସିହା ଜାନୁଆରୀ ୨୨ ତାରିଖରେ ହିଞ୍ଜିଳିକାଟୁଠାରେ ସ୍ୱର୍ଗାରୋହଣ କରିଥିଲେ । ଆଜିସୁଦ୍ଧା ତାଙ୍କରି ଓଡ଼ିଶା ବ୍ୟାପି ଶିଷ୍ୟବୃନ୍ଦ ଅଛନ୍ତି । କୃଷ୍ଣଚନ୍ଦ୍ରଙ୍କ ଅଲୌକିକ ପ୍ରତିଭା ଅପୂର୍ବ ଗାୟନ କଳା ଚାତୁରୀ, ଗଳାଝଙ୍କାର ଓ କାଠି ବାଦନର ଆକର୍ଷଣୀୟ ଭଙ୍ଗୀ ଉତ୍କଳୀୟ ଲଳିତ କଳା ଓ ସଙ୍ଗୀତ କ୍ଷେତ୍ରରେ ଅମ୍ଳାନ ହୋଇ ରହିଛି । ଦାସକାଠିକୁ ଆଜି ସରକାର ନିଜ ଯୋଜନାର ପ୍ରଚାର ଓ ପ୍ରସାରର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି ସତ, ତଥାପି ଏହି ଅବିସ୍ମରଣୀୟ କଳାକୁ ବଞ୍ଚାଇ ରଖିବାରେ ଯଥୋଚିତ ପ୍ରେରଣା ଓ ପ୍ରୋତ୍ସାହନର ଆବଶ୍ୟକତା ରହିଛି ।

---

ଗଞ୍ଜାମ ମହାବିଦ୍ୟାଳୟ,
ଗଞ୍ଜାମ ।

# ଓଡ଼ିଶାର ପର୍ବପର୍ବାଣୀ

**● ଶ୍ରୀମତୀ ସ୍ୱର୍ଣ୍ଣଲତା ମହାନ୍ତି**

ମାଟ୍ରିକ୍ ଓ କଲେଜମାନଙ୍କର ଛାତ୍ରଛାତ୍ରୀମାନଙ୍କୁ ଓଡ଼ିଆ ପ୍ରଶ୍ନ ପତ୍ରରେ ପ୍ରଶ୍ନ ଆସିଥାଏ – ଓଡ଼ିଶାରେ ପର୍ବପର୍ବାଣୀ ଯେତେ ଲେଖିଲେ ବି ସମସ୍ତ ଅଣ୍ଟେନି। ବାସ୍ତବିକ ଆମ ଏ ରାଜ୍ୟରେ ଏତିକି ପର୍ବପର୍ବାଣୀ, ଉପାସ ବ୍ରତ, ଭଳିକି ଭଳି ପିଠାପଣା– ଭାରତର ଅନ୍ୟ କୌଣସି ପ୍ରଦେଶରେ ଥିବା ଭଳି ମନେ ହୁଏନି। କେଉଁ ଯୁଗରେ କଟକ ସହର ବାଆନେ ବଜାର ତେପନ ଗଳି ଥିଲା, ବର୍ତ୍ତମାନ ଆହୁରି ବଢ଼ି ଯାଇଥିବଣି। ସେଇଭଳି ବାରମାସରେ ତେରପର୍ବ କଥା ବି ମିଛ। ବହୁ ବେଶୀରେ ଏ ସଂଖ୍ୟା ପହଞ୍ଚିବ। ଆମର ପୂର୍ବପୁରୁଷମାନେ ଏହା ପାଳନ କରି ଆସିଛନ୍ତି। ଆମେ ଆମର ଶକ୍ତି ଅନୁଯାୟୀ କେଉଁ ପର୍ବକୁ ମିଳିତଭାବେ ତ କେଉଁ ପର୍ବକୁ ଘରେ ଘରେ ପାଳନ କରି ଆସୁଛୁ। ପଣାସଂକ୍ରାନ୍ତିରୁ ନୂଆପାଞ୍ଜିର ବ୍ୟବହାରଠାରୁ ଏଇ ସବୁ ପର୍ବପର୍ବାଣୀର ଅଯମାରମ୍ଭ ହୋଇ ଚୈତ୍ର ପୂର୍ଣ୍ଣିମିରେ ସମାପ୍ତ ହୋଇଥାଏ। କୃଷ୍ଣଙ୍କ ଜନ୍ମଦିନଠାରୁ ବର୍ଷର ଅନ୍ୟ ସମୟକେ ଏ ସବୁରେ ଭରପୁର। ପଣାସଂକ୍ରାନ୍ତି ଦିନର କିଛିଦିନ ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ଦିନରୁ ଆରମ୍ଭ ହୁଏ ପାଟୁଆ ନାଚ। ତା'ର ପୋଷାକ ଲାଲ ରଙ୍ଗରେ ତିଆରି, ନାଟୁଆଙ୍କ ଭଳି ଧୋତି ତ ନୁହେଁ ପାଟ ପିନ୍ଧି, ଉଉରିଟିଏ ଲାଲ ବର୍ଣ୍ଣର ଅଣ୍ଟାରେ ଭିଡ଼ି ବେତ ବା ବାଉଁଶ ଛାଟକୁ ବଙ୍କାଇ ନୃତ୍ୟ ପ୍ରଦର୍ଶନ କରେ। ସେଥି ପାଇଁ ସେ ଉପାସ କରେ, ଦିନକୁ ଥରେ ଅରୁଆ ଖାଏ, ଗୋଡ଼ରେ ଘୁଙ୍ଗୁର ପିନ୍ଧିଥାଏ, ଗୀତ ମଧ୍ୟ ପୁରାଣରୁ ଆଣି ବିଭିନ୍ନ ସ୍ୱରଦେଇ ବୋଲେ। ସଂକ୍ରାନ୍ତି ଦିନ ଏକ ବଡ଼ ଗର୍ତ୍ତ ଖୋଳାଯାଇ ଅଗ୍ନି ସଂଯୋଗ ହୁଏ। ତା'ରି ଉପରେ କାଠର ରଣପା ପିନ୍ଧି ୭/୫ ଥର ବୁଲିବା ପରେ ଏ ନାଚର ସମାପ୍ତି ହୁଏ। ଏହି ସମୟରେ ମା, ଶାରଳା, ମଙ୍ଗଳା, ଭଗବତୀଙ୍କ ମନ୍ଦିରର ନିଯୋଗୀମାନେ ଜଣକିଆ, କେତେଖଣ୍ଡି ଗାଁକୁ ଘଣ୍ଟ ନେଇ ବୁଲାଇ ଘରେ ଘରେ ଭୋଗ ଲାଗି ହୁଅନ୍ତି। କାଠରେ ନିର୍ମିତ ଏକ ମୂଷଳ ବା ଗଦା ସଦୃଶ୍ୟ ଏକ ପଦାର୍ଥରେ ଚୂଆ, ହଳଦି, ସିନ୍ଦୁର ଲାଗି ହୋଇ, ଫୁଲହାରରେ ସଜ୍ଜିତ ହୋଇଥାଏ। ତାହାକୁ ଘଣ୍ଟୁଆ ଛୁଆଁଇ ଧରି ଘଣ୍ଟ ବଜାଇ ଗାଁକୁ ଗାଁ ପରିକ୍ରମା କରେ। ମୁଖ୍ୟତଃ ସ୍ନାନ ପାଣି ଏଠି ପୂଜା ଲାଗେ, ଏହି ସଂକ୍ରାନ୍ତିରେ ଭୋଗ ହେଉଛି ଛେନା, ଅମ୍ବୁଆମ୍ବଗଳ ଗୁଡ଼, କଦଳୀ, ନଡ଼ିଆ, ଅବା କର୍ପୂର ମିଶ୍ରିତ ପଣା। ପର୍ବର ନାମ ସହିତ ଭୋଗର ନାମ ଏକକାର ହୋଇଥାଏ। ଅକ୍ଷୟ ତୃତୀୟା, ଚନ୍ଦନ ଯାତ୍ରା ପରେ ପରେ ପଡ଼ିଥାଏ। ଆଷାଢ଼ ମାସରେ ଆସେ ରଜପର୍ବ। ମହାଉତ୍ସବରେ ବସୁନ୍ଧରା ରଜସ୍ୱଳା ହୁଏ। ତିନି ଦିନ ଧରି କୁମାରୀ ଓ ନୂଆବୋହୂମାନେ ଗୋଡ଼ରେ କଠାଉ, ଚପଲ ମାଡି ଚନ୍ଦନ ବେଶ ହୋଇ ନୂଆ ନୂଆ ଶାଢ଼ୀ ବ୍ୟବହାର କରି ଏ ପର୍ବ ପାଳନ କରନ୍ତି। ପୋଡ଼ ପିଠା, ନଡ଼ିଆରାଇ, ଆରିସା ମୁଖ୍ୟ ପଦାର୍ଥ। ମୁଢ଼ି ଭଜୁରା ସହ, କାହା ପାଖରେ ପୂଜା ନଲାଗିବା ଏ ପର୍ବର ବିଶେଷତ୍ୱ। କେବଳ ଭଲ ଜିନିଷ କରି ବନ୍ଧୁବାନ୍ଧବ ସାଙ୍ଗ ଭାଇ ମେଳରେ ଖାଇବା କଥା। ପାନଭଙ୍ଗା, ପାନ ବଣ୍ଟା ଏକ ବିଶିଷ୍ଟ ସ୍ଥାନଗ୍ରହଣ କରେ। ଡୁ ଡୁ କିତି କିତି, କବାଡ଼ି ଖେଳ ଚାଲେ। ଝିଅମାନଙ୍କର ଦୋଳିଖେଳ ଓ ଗୀତ ବୋଲା ଏକ ଆକର୍ଷଣୀୟ ଦୃଶ୍ୟ। ଶ୍ରାବଣରେ ପଡ଼େ ଚିତାଲାଗି ଅମାବାସ୍ୟା। ପିଠାର ନାମ ଚିତଉ। ଝୁଲଣଯାତ୍ରା ଦେବ ମନ୍ଦିରରେ ଏ ସମୟରେ ଆଉ ଏକ ଆକର୍ଷଣ। ଶ୍ରାବଣ ପୂର୍ଣ୍ଣିମା ଗହ୍ମାପୂର୍ଣ୍ଣିମା ନାମରେ ଖ୍ୟାତ। ବଳଦେବଙ୍କ ପୂଜା ଏହି ଦିନ ଅନୁଷ୍ଠିତ ହୁଏ। ଗୋରୁଗାଈଙ୍କ ଗୁହାଳ କାନ୍ଥରେ ଚିତା ଲେଖାଯାଇ ସେମାନଙ୍କୁ ପୂଜା କରାଯାଏ। ଶିଙ୍ଗରେ ତେଲ, ମୁହଁରେ ହଳଦି ଦେଇ ସେମାନଙ୍କୁ ଫୁଲମାଳରେ ସଜ୍ଜିତ କରି ପିଠାପଣା ଖୁଆଇ ଦିଆଯାଏ। ଏହିଦିନ ରାକ୍ଷୀ ବନ୍ଧନ ହୁଏ। ଭଉଣୀ ଭାଇକୁ ରାକ୍ଷୀ ବାନ୍ଧି ତା'ର ଶୁଭ ମନାସିଥାଏ। ଏ ପର୍ବରେ ପିଠାର ପ୍ରକାର ହେଉଛି ଏଣ୍ଡୁରୀ, ଅଥାର ବସାଇ ଏହା କରାଯାଏ। ଭାଦ୍ରବ ମାସରେ ପଡ଼େ ସୁଦ୍ରଶାକୁଣୀ ଓଷା। ସୁବିଧା ଦେଖି କେବେ କେବେ ପାଞ୍ଚ ପାଳି ଏ ପୂଜା ଅନୁଷ୍ଠିତ ହୁଏ। ଝିଅମାନେ ସକାଳୁ ଉଠି ରବିବାରରେ ଏହା ପାଳନ କରାଯାଏ। ଝିଅମାନେ ସକାଳୁ ଉଠି ଫଲ ତୋଳି ଆଣି ଗାଧୋଇ ପାଧୋଇ ବ୍ରତ ପିନ୍ଧି ଅଢ଼େଇ ତୋଳ ଅଢ଼େଇ ମୁଣ୍ଡା ଖାଇବାର ବିଧି ପାଳିଥାନ୍ତି। ଦିନ ୨ଟାରେ ଫୁଲମାନଙ୍କ ଗୁଚ୍ଛି ସାରୁ ପତ୍ରକୁ କାଟି ଏକ ନିର୍ଦ୍ଦିଷ୍ଟ ମାପରେ କଦଳୀ ପାଟୁକା ସାହାଯ୍ୟରେ ବାନ୍ଧି ଫୁଲ ସହ ଖାଲୁକୁଣ୍ଡି ତିଆରି କରି ସନ୍ଧ୍ୟାରେ ପୂଜା କରନ୍ତି ଏକ ବ୍ରତକଥାରେ। ମା ମଙ୍ଗଳାଙ୍କର ଏ ପୂଜା ଅତି ନିରାଡ଼ମ୍ବର ଭାବେ ପାଳିତ ହୁଏ। ପ୍ରଥମ ପାଳି ସୁବଳ ଭଜା, ୨ୟ ପାଳି ଖଇ, ୩ୟ ପାଳି ଚୁଡ଼ା ୪ର୍ଥ ପାଳି ମୁଢ଼ି ଭୋଗ ହୁଏ। କେହି କେହି ମାଟିରେ ତିଆରି ଖାଲୁକୁଣ୍ଡି ବଜାରରୁ କିଣି ମଧ୍ୟ ପୂଜା କରନ୍ତି। ଟେପୋଇ, ସାତଭାଇ, ଭାଉଜଙ୍କୁ ନେଇ କାହାଣୀର ଗୀତ ବହିଟି ସମ୍ମିଳିତ ଭାବେ କୁମାରୀମାନେ ମଧୁର

ସ୍ୱରରେ ଗାନ କରନ୍ତି । ପୂଜା ଶେଷରେ ଉପସ୍ଥିତ ଦର୍ଶକଙ୍କ ମଧ୍ୟରେ ଭୋଗ ବଣ୍ଟନ କରାଯାଏ । ଏହି ମାସରେ ଶିକ୍ଷାର୍ଥୀମାନଙ୍କ ପାଇଁ, ଗଣେଶ ପୂଜା ପାଳିତ ହୁଏ ଓ ସେଇଭଳି ଜନ୍ମାଷ୍ଟମୀ ମଧ୍ୟ ପଡ଼େ । ସ୍ୱୟଂ ଶ୍ରୀକୃଷ୍ଣଙ୍କ ଜନ୍ମଦିନ "ହରିଜନ୍ମ" ନାମରେ ଗାଁ ଗହଳିଠାରୁ ସହର ପର୍ଯ୍ୟନ୍ତ ସର୍ବତ୍ର ପୋଥି ବା ବହିରେ ଉଲ୍ଲେଖ ଥିବା ବୃତ୍ତାନ୍ତ ଉପବାସ କରିଥିବା ପୁରୁଷ ଓ ସ୍ତ୍ରୀମାନେ ପଠନ ଓ ଶ୍ରବଣ କରି, ନଡ଼ିଆ, କଦଳୀ, କାକୁଡ଼ି, ଉଖୁଡ଼ା, ଚୁଡ଼ା ଭୋଗ ଲଗାଇ କାଣ୍ଡା ଉପବାସ ପରେ ଡେରି ରାତିରେ ପ୍ରସାଦ ସେବନ କରନ୍ତି । ପରଦିନ ନନ୍ଦଉତ୍ସବ ମଧ୍ୟ ସମାରୋହରେ ପାଳିତ ହୁଏ, ଘରେ ଘରେ ବା ସମୂହଭାବେ । ଭାଦ୍ର ଅମାବାସ୍ୟା ସପ୍ତପୁରୀ ଅମାବାସ୍ୟା ଭାବେ ଜଣାଶୁଣା । ଦେବତା ମନ୍ଦିରରେ ପିଠା ଭୋଗ ହୁଏ । ପଶ୍ଚିମ ଓଡ଼ିଶାରେ ଏହା ପୁରଉଁାସ ନାମରେ ଖ୍ୟାତ । ମାଟିରେ ବା କାଠରେ ତିଆରି ଘୋଡ଼ାହାତୀ ପିଲାମାନେ, ରସି (ଦଉଡ଼ି) ଲଗାଇ ଟାଣି ଟାଣି ରାସ୍ତାଉପରେ ଓ ଘରେ ଖେଳି ବୁଲନ୍ତି । ଗଜା, ପିଠା, ଉଖୁଡ଼ା ଭୋଗ ହୁଏ । ପୁନିଆଁ ପଡ଼େ ଏଇ ମାସରେ । ଜମିଦାରମାନଙ୍କୁ ତାଙ୍କର ପ୍ରଜାମାନେ ଭେଟି ଦିଅନ୍ତି । ନୂଆ ଅଙ୍କ ଗଣନା ଏଇ ଦିନରୁ ଆରମ୍ଭ ହୁଏ ବର୍ଷକ ପାଇଁ । ବର୍ତ୍ତମାନ ପୁନିଆଁ ପାଳନ ଜମିଦାରୀ ଲୋପ ପରେ ପ୍ରାୟ ବନ୍ଦ ହେଲାଣି । ଭାଦ୍ରବ ପୂର୍ଣ୍ଣିମା ଇନ୍ଦ୍ର ପୂର୍ଣ୍ଣିମା ଭାବେ ପରିଚିତ । ବାପଘର ଝିଅ ଓ ନୂଆ ବିବାହିତ ବୋହୂମାନେ ମିଶିଭୋଜି କରନ୍ତି । ଚୁଡ଼ା ଘସା, କ୍ଷୀରି, ତରକାରୀ ଏ ଭୋଜିର ମୁଖ୍ୟ ପଦାର୍ଥ । ଆଶ୍ୱିନ ମାସରେ ମହାଳୟା ଅମାବାସ୍ୟାର ପୂର୍ବ ପନ୍ଦରଦିନ 'ମହଳା' ପିତୃ ପୁରୁଷଙ୍କ ଶ୍ରାଦ୍ଧ ଦିଆଯାଇ ପିତୃପକ୍ଷ ରୂପେ ବ୍ରାହ୍ମଣ ପରିବାରରେ ପାଳନ ହୁଏ । ଏହି ମାସରେ ରନ୍ଧଣା ସଂକ୍ରାନ୍ତି ପଡେ । ଉକ୍ତ ଦିନ ରନ୍ଧରରି ବିଭିନ୍ନ ପରିବାରରେ ତରକାରୀ ପ୍ରସ୍ତୁତ କରାଯାଇ ବ୍ୟବହାର କରାଯିବାର ବିଧି ବହୁଦିନୁ ଚଳିଆସିଛି । ଦଶହରା ପୂଜା, ଦୁର୍ଗାବ୍ରତ ପାଳନ, ଦୁର୍ଗା ମେଢ଼ର ସାଜସଜ୍ଜା ବେଶ୍ ଗହଳି ଚହଳି ମଧ୍ୟରେ ଅନୁଷ୍ଠିତ ହୁଏ । ନାଚ ତାମସା, ଦାସକାଠିଆ, ଘୁମୁରା ନାଚରେ ଦେବିମଣ୍ଡପ ସବୁ ମୁଖରିତ ହୋଇରହେ । ଏହି ପାଞ୍ଚଦିନ ପରେ ପଡ଼େ କୁମାର ପୂର୍ଣ୍ଣିମା ।

ଇନ୍ଦ୍ର ପୂର୍ଣ୍ଣିମା ପରଠାରୁ କୁମାରୀମାନଙ୍କର ଏକମାସ ବ୍ୟାପୀ ପୁରାଣମାନଙ୍କରୁ ଓ ମନରୁ ଫାନ୍ଦି ଯୁଡାଇ, ଫୁଲବଉଲବେଣୀ ଗୀତରେ ପୁରପଲ୍ଲୀ ମୁଖରିତ ହୋଇ ରହିଥାଏ । ପୁଚିଖେଳ, ଦଉଡ଼ି ଡିଆଁ, ଲୁଚକାଳି, ବୋହୂଚୋରୀ ଖେଳମାନ ମଧ୍ୟ ମଝିରେ ମଝିରେ ନିର୍ମଳ ଜହ୍ନ ଆଲୁଅରେ ବେଶ୍ ଆସର ଜମାଏ । ପୁରୀ ଜିଲ୍ଲାରେ ପୁଅମାନେ ନବ ବସ୍ତ୍ର ପରିଧାନ କରନ୍ତି । ସନ୍ଧ୍ୟାବେଳେ ଚଉରା ମୂଳେ ପୂଜା ସାତଦିନ ଆଗରୁ ଆରମ୍ଭ ହୋଇ ପୂର୍ଣ୍ଣିମା ଦିନ ପୁରୋହିତଙ୍କ ଦ୍ୱାରା ପୂଜା କରାଯାଇ ଉକ୍ତ ପର୍ବ ଉଦ୍‌ଯାପିତ ହୋଇଥାଏ । ଝିଅମାନେ ନୂଆଶାଢ଼ୀ ପିନ୍ଧି, ଉଖୁଡ଼ା, ନଡ଼ିଆର ଭୋଗ ଲଗାନ୍ତି । ସେଦିନ ସକାଳୁ ହୋଇଥିବା ପିଠା, ପୋଡ଼ପିଠା ବା କେହି କେହି ଆରିସା ମଧ୍ୟ କରିଥାନ୍ତି । ଠିକ୍ ପରଦିନ ଆରମ୍ଭ ହୁଏ କାର୍ତ୍ତିକ ବ୍ରତ, ଏକ ମାସ ବ୍ୟାପୀ । ବିଶେଷକରି ବିଧବା ସ୍ତ୍ରୀ ଲୋକମାନଙ୍କର ବ୍ରତ କାର୍ତ୍ତିକ ବ୍ରତ ବା ହବିଷ ଭାବେ ଏହା ପରିଚିତ । ରାତି ପୁହାରୁ ଗାଧୋଇ ପାଧୋଇ ମନ୍ଦିର ଦର୍ଶନ ସାରି ବାଲୁକାପୂଜା, ଚଉରାମୂଳେ କରାଯାଇ ପ୍ରଦୀପ ପକାଇ ଗଜାମୁଗ, ଉଖୁଡ଼ା ଭୋଗ ଲଗାଇ କାର୍ତ୍ତିକ ମାହାତ୍ମ୍ୟ ଏକାଠି ଠୁଳ ହୋଇ ବିଧବାମାନେ ଶୁଣିଥାନ୍ତି; ବହିବୋଲା ଶେଷର ଭୋଗକୁ ପିଲାମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଏ । କାର୍ତ୍ତିକ ପୂର୍ଣ୍ଣିମାର ଦିନକ ପୂର୍ବରୁ ପଡ଼େ ବଡ଼ଓଷା । ବଡ଼ ନିଷ୍ଠାର ସହ ଏ ଓଷା କରାଯାଏ । ଓଷାର ପୂର୍ବଦିନକୁ ଏକବାର କୁହାଯାଏ । ଏହି ଦିନ ଉପାସୀ ଗୋଟିଏ ଥର ଅରୁଆ ଖାଇବା ବିଧି ରହିଛି ଓଷାଦିନ ରାତର ବିଳମ୍ବିତ ପ୍ରହରରେ ନଡ଼ିଆ, କଦଳୀ, କ୍ଷୀର, ଗୁଡ଼, ଛେନାରେ ପ୍ରସ୍ତୁତ ପଣା ଭୋଗ ହୋଇ ଆସିଲେ ଉପାସୀ ତୁଳସୀ ପତ୍ର ପାଣି ଗ୍ରହଣ କରେ ଓ ପଣା ପାଏ । କାର୍ତ୍ତିକ ପୂର୍ଣ୍ଣିମାର ଅନ୍ୟନାମ ରାହାସ ପୂର୍ଣ୍ଣିମା । ସୋଲ ବାଉଁଶ ସାହାଯ୍ୟରେ କଦମ୍ବ ବୃକ୍ଷ ତିଆରି ହୋଇ ମନ୍ଦିର ସମ୍ମୁଖରେ ରାସଲୀଳା ଅନୁଷ୍ଠିତ ହୁଏ । ରାଧାକୃଷ୍ଣ ପ୍ରେମ ସମ୍ବଳିତ ଗୀତରେ ସଂକୀର୍ତ୍ତନିଆମାନେ ଠୁଳହୋଇ ସ୍ୱରର ଲହରୀ ଛୁଟାନ୍ତି । ପଞ୍ଚୁକ ପାଞ୍ଚଦିନ ପୂର୍ଣ୍ଣିମା ସହିତ ବକ ପଞ୍ଚମୀ ନାମରେ ଜଣାଶୁଣା । ପୂର୍ଣ୍ଣିମା ଦିନର ପୂର୍ବ ରାତି ୩/୪ଟା ସମୟରୁ ଉଠି, ତିଆରି କରାଯାଇଥିବା କଦଳୀ ପାଟୁଆରେ ଡଙ୍ଗାମାନ ନେଇ ନଦୀ, ନାଳ ମାନଙ୍କରେ ଭସାଇବା ଏକ ଉତ୍ସବର ରୂପନିଏ । ଏହି ଡଙ୍ଗାରେ ଗୁଆ, ହଳଦୀ, ସୋରିଷ ମଧ୍ୟ ରଖାଯାଏ । ବାଣିଜ୍ୟ ବ୍ୟବସାୟର ଚିହ୍ନ ସ୍ୱରୂପ ବତୀ ଜାଳି, ପୂର୍ବ ସ୍ମୃତି ଓଡ଼ିଆ ପୁଅର ବାଣିଜ୍ୟ ପୋତ ବା ନାହା ଭସାଇ ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ଏହା କରାଯାଏ ଓ ଡଙ୍ଗା ଭସାଇ ସ୍ନାନ ସାରି ନିକଟସ୍ଥ ମହାଦେବ ମନ୍ଦିରକୁ ଯାଇ ପୂଜା ଅର୍ଚ୍ଚନା କରାଯାଏ । ବର୍ଷା ପରେ ନଦୀରେ ପାଣି ହେବାପରେ ଅର୍ଥାତ୍ ଆଷାଢ଼ରୁ ବୋଇତ ସବୁ ବ୍ୟବସାୟ ଉଦ୍ଦେଶ୍ୟରେ ଜାଭା, ସୁମାତ୍ରା ଯାଇ କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ଫେରି ଆସିବାର ପ୍ରଥା ଯୋଗୁଁ ଆ କା ମା ଭୈର ପ୍ରସାର ଏ ପର୍ଯ୍ୟନ୍ତ ରହିଆସିଛି । ପୂର୍ଣ୍ଣିମା ପର ଦିନଠାରୁ ଆସିଯାଏ, ମାସ ମଧ୍ୟରେ ଶ୍ରେଷ୍ଠ ମାସ ମାର୍ଗଶୀର । ଲକ୍ଷ୍ମୀଙ୍କର ପ୍ରିୟ ଗୁରୁବାର ଚାରି ପାଳି ବା ପାଞ୍ଚ ପାଳି ପାଳିତ ହୁଏ, ଅତି ଶୁଦ୍ଧପୂତ ଭାବେ । ଗୃହିଣୀ ଘରେ, ଅଗଣାରେ କାନ୍ଥରେ ଗୁଣ୍ଡଉଳବାଟି ଚିତା ପକାଇ ଭୋଗରାଗ, ନୈବେଦ୍ୟର ଫଳଫଳ ସଜାଡ଼ି ଏ ପୂଜା ଆୟୋଜନ କରେ । ପ୍ରଥମ ପାଳି ଅରୁଆ ଯାଉ, ୨ୟ ଥର ଚକୁଳି, ଚିତାଉ, ୩ୟ ଥର ମଣ୍ଡା କାକରା ଭୋଗରେ ବ୍ୟବହୃତ ଥାଏ । ବର୍ଷର ଯେଉଁ ଗୁରୁବାରରେ ଦଶମୀ ପଡ଼ିବ ସୁଦ୍ଦଶାବ୍ରତ ପାଳନ କରାଯାଏ । ଲକ୍ଷ୍ମୀପୁରାଣର ଟିକା ବହି ଟିଏ ପଦ୍ୟ ଆକାରରେ ସେଦିନ ଆବୃତ୍ତି କରାଯାଏ । ଦିପାବଳୀ ଅମାବାସ୍ୟା ଏଇ ମାସରେ ପଡ଼ିଥାଏ । ଲକ୍ଷ୍ମୀଙ୍କର ଆରାଧନା ଏ ଦିନରେ ମଧ୍ୟ ମୁଖ୍ୟ ଘଟଣା । ବିଭିନ୍ନ ଆତସବାଜିରେ ରାତିଟି ପ୍ରକମ୍ପିତ ହୋଇ ରହେ । ଘରେ ଘରେ ଦୀପ ଜଳାଇ ପୂର୍ବ ପୁରୁଷମାନଙ୍କୁ ସ୍ୱାଗତ କରନ୍ତି ଏଇଁ ଦିନରେ । ରାତିରେ କାଉଁରିଆ କାଠି ଜାଳି, ବୋଇତ ଚିହ୍ନ ସ୍ୱରୂପରେ କରି ବଡ଼ ବଡ଼ୁଆଙ୍କୁ ଡ଼କାଯାଏ । କଦଳୀ ଛେନା ଭୋଗ ଦିଆଯାଏ । ଏହି ମାସରେ ପ୍ରଥମାଷ୍ଟମୀ ମଧ୍ୟ ପଡ଼ିଥାଏ । ଏଥିରେ ବାପ ମାଙ୍କର ବଡ଼ ପୁଅ ଓ ଝିଅଙ୍କ ପାଇଁ ନୂଆ ଲୁଗାପଟା କରାଯାଇ, ଅଥାର ବସାଇ, ହରଡି ପତ୍ରରେ ପୁରଦିଆ ଏଣ୍ଡୁରୀ ବା ଖାଲି ଏଣ୍ଡୁରୀ କରି, ଭାତ, ତରକାରୀ ପ୍ରଭୃତି ହୋଇ ସେମାନଙ୍କୁ ବନ୍ଦାଇବା ବ୍ୟବସ୍ଥା ଥାଏ । ପୌଷରେ ପଡ଼େ ବକୁଳ ଅମାବାସ୍ୟା, ଶାମ୍ବ ଦଶମୀ । ଏଇ ଦଶମୀରେ ସୂର୍ଯ୍ୟଙ୍କୁ ପୂଜା କରାଯାଏ । ସୂର୍ଯ୍ୟ ଉଦୟଠାରୁ ଅରୁଆ ଚାଉଳ,

ଅଦା, ଗୁଡ଼, ନଡ଼ିଆରେ ପ୍ରସ୍ତୁତ) ଉଦୟ ଖୁଆଳ ଭୋଗ ଲାଗି, ଦିନ ବଢ଼ିବା ସହିତ ବିଭିନ୍ନ ସମୟରେ ସେ ଦିନ ମାନ ପ୍ରସ୍ତୁତ ହେଉଥିବା କ୍ଷୀରି, ଖେଚୁଡ଼ି, ତରକାରୀ, ଚୁଡ଼ାଚକୁଳି, ମଣ୍ଡା କାକରା ସୂର୍ଯ୍ୟଙ୍କ ପାଖେ ଭୋଗ ଲାଗେ । ପୁଅ ଝିଅଙ୍କ ପାଇଁ ଆଈ ମା, ଖୁଡ଼ୀ, ଦେଢ଼େଇ 'ମା', ମନାସିଥିବା ପ୍ରକାରେ ବଜାରର ମିଠା, କଦଳୀ, ମଧ୍ୟ ବାଦ ଯାଏନି । ମାଘ ସୋମବାରର ପବିତ୍ରତା ପାଳନ କରାଯାଏ ଓ ମକର ସଂକ୍ରାନ୍ତି ଏଇ ମାସରେ ପଡ଼େ । ମକର ଖୁଆଳ ବିଭିନ୍ନ ପଦାର୍ଥର ମିଶ୍ରଣରେ ତିଆରି ହୋଇଭୋଗ ଲାଗେ । ସରସ୍ୱତୀ ପୂଜା ବିଦ୍ୟାର୍ଥୀମାନଙ୍କର ଏଇ ମାସରେ ପଡ଼େ । ମକର ଖୁଆଳ ବିଭିନ୍ନ ପଦାର୍ଥର ମିଶ୍ରଣରେ ତିଆରି ହୋଇ ଭୋଗ ଲାଗେ । ସରସ୍ୱତୀ ପୂଜା ବିଦ୍ୟାର୍ଥୀମାନଙ୍କର ଏଇ ମାସରେ ଅନୁଷ୍ଠିତ ହୁଏ । ଶିବରାତ୍ରି ପ୍ରାୟ ପଡ଼ିଥାଏ ଫାଲ୍‌ଗୁନରେ । ବଡ଼ ପବିତ୍ରଭାବେ ଉପାସ କରାଯାଇ ଏହା ପାଳନ କରାଯାଏ । ଦୋଳଯାତ୍ରା ସପ୍ତାହରୁ କିଛି କମ୍‌ରେ ଆରମ୍ଭ ହୋଇ ପାଳନ କରାଯାଏ, ଘର ଘର ବୁଲି ବିମାନରେ ବସି ଠାକୁରମାନେ ଭୋଗ ପାଆନ୍ତି । ଅବିର ଗୁଣ୍ଡରେ ଖେଳ ଚାଲେ । ହୋଲି ଉତ୍ସବ ଭ୍ରାତୃତ୍ୱର ନିଦର୍ଶନ ବହନ କରି ସମାହିତ ହୁଏ । ଗଉଡ଼ମାନେ ଶିଙ୍ଗା ବଂଶୀ ସ୍ୱରରେ ଉଗାଳ ଗାଇବା ମଫସଲର ଶିରୀ ବୃଦ୍ଧିରେ ସାହାଯ୍ୟ କରେ । ଚୈତ୍ରରେ ପଡ଼େ ରାମ ନବମୀ, ନଅଦିନ ବ୍ୟାପୀ ଏହା ପାଳନ କରାଯାଏ । ନାଚ, ତାମସା ଖୋଲା ମଇଦାନରେ ଆରମ୍ଭ ହୋଇଥାଏ । ରାମଙ୍କୁ ପୂଜା କରିବା ଏ ପର୍ବର ମୁଖ୍ୟ ଉଦ୍ଦେଶ୍ୟ । ମଲ୍ଲିଫୁଲ ବାସ୍ନାରେ ଚାରିଦିନ ମହକୁଥାଏ । ଏଇ ମାସରେ କେଉଟମାନେ ବାଉଁଶରେ ଘୋଡ଼ା ତିଆରି କରି (ଚଇତିଘୋଡ଼ା) ଠାକୁରଙ୍କ ପାଖରେ ଓ ମୁଖ୍ୟ ଲୋକଙ୍କ ଘର ସାମ୍ନାରେ ଘୋଡ଼ା ନାଚ କରି ପାଉଣା ପାଇଥାନ୍ତି ରାଉତ ପୁରୁଷ, ରାଉତାଣୀ ଆଉ ଏକ କେଉଟ ସ୍ତ୍ରୀ, ବେଶରେ ପାନ ଡ଼ବାଟିଏ ହାତରେ ଧରି ପୌରାଣିକ ବିଷୟବସ୍ତୁ ଉପରେ ଆଧାରିତ ଗୀତମାନ ଗାଇ ମନୋରଞ୍ଜନ କରିଥାନ୍ତି । ବୈଶାଖ ସୋମବାର ଅତି ପବିତ୍ରତା ସହ ପାଳନ କରାଯାଏ । ଜ୍ୟେଷ୍ଠରେ ସାବିତ୍ରୀ ବ୍ରତ, ଶିବ ବିବାହ, ଶୀତଳ ଷଷ୍ଠୀ ଅନୁଷ୍ଠିତ ହୋଇଥାଏ । ପଶ୍ଚିମ ଓଡ଼ିଶାରେ ଆଶ୍ୱିନ ମାସରେ ନୂଆଖିଆ ଏକ ପ୍ରଧାନ ପର୍ବ । ସେଇଭଳି ଆଦିବାସୀମାନେ ଚୈତପର୍ବ ମହାସମାରୋହରେ ଚୈତ୍ର ପୂର୍ଣ୍ଣିମାକୁ ପାଳନ କରିଥାନ୍ତି ।

ଏହିଭାବେ ଦେଖିଲେ ସାରା ବର୍ଷଟିରେ ଗୃହିଣୀଙ୍କୁ ଫୁରୁସତ ମିଳେନି । କେତେକ ପର୍ବ, ମନ୍ଦିରମାନଙ୍କରେ ତ ଆଉ କେତେକ ଅନୁଷ୍ଠାନରେ ପାଳିତ ହୋଇଥାଏ । ଏତଦ୍ ବ୍ୟତୀତ ଆମର ଜାତୀୟ ପର୍ବ ସବୁତ ରହିଛି । ଜିଲ୍ଲା ଭେଦରେ ଆଉ କିଛି ପର୍ବ ପର୍ବାଣୀ ସମ୍ବନ୍ଧେ ଏଠି ଉଲ୍ଲେଖ କରାଯାଇ ପାରିନି ।

---

ମାତୃଶ୍ରୀ ମହିଳା ମଣ୍ଡଳ,
ଭବାନୀପାଟଣା ।



କଟକ ଠାରେ ନିର୍ମିତ ଆକର୍ଷଣୀୟ ତୋରଣ ।

# ସାଧାରଣରେ ଅସାଧାରଣ ମଣିଷ : ନବକୃଷ୍ଣ ଚୌଧୁରୀ

● ଶ୍ରୀ କୃତ୍ତିବାସ ନାୟକ

ଦୁନିଆଁର ରଙ୍ଗମଞ୍ଚକୁ ଦୈନିକ କେତେଯେ ଅଭିନେତା, ଅଭିନେତ୍ରୀ ଆସୁଛନ୍ତି, ପୁଣି ସେମାନେ ତାଙ୍କର ଅଭିନୟ ଶେଷ କରି ଚାଲି ଯାଉଛନ୍ତି; ତା'ର ହିସାବ ନାହିଁ। ଯେଉଁ କେତେଜଣ ତାଙ୍କର ଅଭିନୟ ମାଧ୍ୟମରେ ଲୋକଙ୍କ ହୃଦୟରେ ରେଖାପାତ କରିପାରନ୍ତି, ସେମାନେ ଅନ୍ୟମାନଙ୍କ ଦୃଷ୍ଟିରେ ହୁଅନ୍ତି ଆଦର୍ଶ, ମହାତ୍ମା, ମହାମାନବ।

ସ୍ରଷ୍ଟାଙ୍କର ସୃଷ୍ଟିରେ ପ୍ରତ୍ୟେକ ମଣିଷର କିଛି ନା କିଛି ଭଲ ଗୁଣ ଦେଖିବାକୁ ମିଳେ। କେହି ଦେଶ, ଜାତି ପାଇଁ ଚିନ୍ତାକରେ, ପ୍ରାଣ ଦେବାକୁ ଆଗଭର ହୁଏ। କେହି ନିଜର ସହନଶୀଳତା ଗୁଣରେ ଅନ୍ୟକୁ ନିଜର କରିନିଏ ତ ପୁଣି କେହି କେହି ନିଜର ସରଳତା ଗୁଣରେ ଅନ୍ୟମାନଙ୍କୁ ଦିଗ୍‌ଦର୍ଶନ ଦିଏ।

ସେହିପରି ଜଣେ ଆଦର୍ଶ ପୁରୁଷ, କର୍ମବୀର, ନିଷ୍କପଟ ହୃଦୟର ଦେଶପ୍ରେମୀ, ମାନବବାଦୀ ମଣିଷ ହେଉଛନ୍ତି, ନବକୃଷ୍ଣ ଚୌଧୁରୀ। ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଅଳଙ୍କୃତ କରି, ନିଜର ଆଦର୍ଶରେ ଦୀର୍ଘ ଛଅବର୍ଷ କାଳ ଏକ ନିଷ୍କଳଙ୍କ ଶାସନ କରିଥିଲେ। ଏହା ପୂର୍ବରୁ ସେ ୧୯୪୬ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ଡଃ ହରେକୃଷ୍ଣ ମହତାବଙ୍କର ମନ୍ତ୍ରୀମଣ୍ଡଳରେ ରାଜସ୍ୱମନ୍ତ୍ରୀ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ। ତାଙ୍କର ଭଦ୍ର ବ୍ୟବହାର, ନମ୍ର ଆଚରଣ, ସରଳ ନିରାଡମ୍ବର ଜୀବନ ଯାପନ ପ୍ରଣାଳୀ ତଥା ଅସହାୟମାନଙ୍କର ସେବା ଓ ଦେଶପ୍ରୀତି ପାଇଁ ସେ ସମଗ୍ର ରାଜ୍ୟବାସୀଙ୍କ ନିକଟରେ ଚିର ସ୍ମରଣୀୟ ହୋଇ ରହିଛନ୍ତି। ଜଣେ ଆଦର୍ଶ ମୁଖ୍ୟମନ୍ତ୍ରୀ ଭାବେ, ଜଣେ ଆଦର୍ଶ ଗାନ୍ଧୀବାଦୀ ନେତା ଭାବେ ସେ ସମଗ୍ର ଭାରତବର୍ଷରେ ପରିଚିତ। ସାରା ଜୀବନ ସେ ପରପାଇଁ ଚିନ୍ତା କରି କରି ନିଜ କଥାକୁ ସମ୍ପୂର୍ଣ୍ଣ ଭାବରେ ଭୁଲି ଯାଇ ଥିଲେ। ତେଣୁ ସେ ଓଡ଼ିଶାଭଳି ବୃହତ ରାଜ୍ୟ ଶାସନମୁଖ୍ୟ ଦାୟିତ୍ୱରେ ଥାଇ ମଧ୍ୟ ନିଜ ପାଇଁ ମୁଣ୍ଡ ଗୁଞ୍ଜିବାକୁ ଘର ଖଣ୍ଡିଏ କିମ୍ବା ଜାଗା ଖଣ୍ଡେ ଯୋଗାଡ଼ କରି ପାରି ନଥିଲେ। ତାଙ୍କର ତ୍ୟାଗ ନିଷ୍ଠା ଏବଂ ସରଳତା ଗୁଣକୁ ଲକ୍ଷ୍ୟକରି, ତାଙ୍କୁ କେବଳ ଲାଲବାହାଦୁର ଶାସ୍ତ୍ରୀଙ୍କ ସହିତ ତୁଳନା କରାଯାଇ ପାରେ। ବହୁ ଶାସ୍ତ୍ର ଦର୍ଶିତା, ବହୁ ଅଭିଜ୍ଞତା ସମ୍ପନ୍ନ ନବକୃଷ୍ଣ ଚୌଧୁରୀ ନିଜ ଆଦର୍ଶରେ ଅଟଳ ରହିଥିବାରୁ ନିଜ ସମ୍ପର୍କରେ କିଛି ରଚନା ମଧ୍ୟ କରିନାହାନ୍ତି। ଆତ୍ମଜୀବନୀ ରଚନା କାଳରେ କିଛି ଅଂଶ ଆତ୍ମପ୍ରଶଂସା ରହିଯିବାର ଭୟ ସେ ଅନୁଭବ କରିଥିଲେ। ତେଣୁ ତାଙ୍କର ବ୍ୟକ୍ତିଗତ ଜୀବନୀ ସମ୍ପର୍କରେ ଆମକୁ ଜାଣିବାକୁ ହେଲେ କିମ୍ବା ତାଙ୍କର ଚିନ୍ତାଧାରା ସହିତ ପରିଚିତ ହେବାକୁ ହେଲେ, ଆମକୁ ଅନ୍ୟ ଉପରେ ନିର୍ଭର କରିବାକୁ ହୁଏ।

କଟକ ଜିଲ୍ଲାର ଜଣେ ବିଶିଷ୍ଟ ଓକିଲ ତଥା ଜମିଦାର ଗୋକୁଳାନନ୍ଦ ଚୌଧୁରୀଙ୍କର ଦ୍ୱିତୀୟ ପୁତ୍ର ସନ୍ତାନ ଭାବରେ ନବକୃଷ୍ଣ ଜନ୍ମ ଗ୍ରହଣ କରିଥିଲେ। ସେ ଦିନ ଥିଲା– ୧୯୦୧ ମସିହାର, ନଭେମ୍ବର ମାସର ୨୩ ତାରିଖ। ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କାର୍ଯ୍ୟରେ ଜମିଦାର ଗୋକୁଳାନନ୍ଦ ଚୌଧୁରୀ ମଧୁବାବୁଙ୍କୁ ସବୁ ପ୍ରକାର ସାହାଯ୍ୟ ଓ ସହଯୋଗ କରିଥିଲେ। ସେ ଥିଲେ ଜଣେ ଦେଶପ୍ରେମୀ ତଥା ସ୍ୱାଧୀନ ଚେତା ଆଦର୍ଶ ଜନ ନେତା। ତାଙ୍କର ତ୍ୟାଗ ନିଷ୍ଠା ଫଳରେ ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଗଠନ ସମ୍ଭବ ହୋଇ ପାରିଥିଲା।

ବଡପୁଅ ଗୋପବନ୍ଧୁ ଚୌଧୁରୀ ଜଣେ ମେଧାବୀ ଛାତ୍ର ଥିଲେ। ଉଚ୍ଚଶିକ୍ଷା ପାଇଁ ସେ ସରକାରୀ ହାକିମ ଚାକିରି କରି ଥାନ୍ତି। ତାଙ୍କର ପତ୍ନୀ ରମା ଦେବୀ।

୧୯୨୧ ମସିହାରେ ନବକୃଷ୍ଣ ସ୍କୁଲ ଶିକ୍ଷା ଶେଷକରି କଲେଜରେ ନାମ ଲେଖେଇ ଥାଆନ୍ତି। ଠିକ୍ ଏତିକି ବେଳେ ଗାନ୍ଧୀଜୀଙ୍କ ଡାକରାରେ ବିଭିନ୍ନ ସ୍କୁଲ କଲେଜର ଛାତ୍ର ପାଠପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ। ବିଭିନ୍ନ ପଦ ପଦବୀରୁ ଦେଶଭକ୍ତ କର୍ମଚାରୀମାନେ ଇସ୍ତଫା ଦେଇ ଆନ୍ଦୋଳନରେ ମିଶିଲେ। ଦେଶପ୍ରେମୀ ଗୋକୁଳାନନ୍ଦ ଚୌଧୁରୀଙ୍କର ଦୁଇପୁଅଙ୍କ ମଧ୍ୟରୁ ଗୋପବନ୍ଧୁ ହାକିମ ଚାକିରୀରୁ ଇସ୍ତଫା ଦେଲେ। ନବକୃଷ୍ଣ ମଧ୍ୟ କଲେଜ ଛାଡ଼ିଲେ। ଦୁଇଜଣ ଯାକ ଗାନ୍ଧିଜୀଙ୍କୁ ଜୀବନର ଆଦର୍ଶ ଭାବେ ଧରି ନେଲେ। କେବଳ ସେତିକି ନୁହେଁ, ଗାନ୍ଧିଜୀଙ୍କ ସହ ମିଶି ତାଙ୍କରି ଜୀବନ ଧାରା ସହିତ ନିଜକୁ ସାମିଲ କରିବା ପାଇଁ ନବକୃଷ୍ଣ ଚାଲିଲେ, ଗାନ୍ଧିଜୀଙ୍କ ସାବରମତି ଆଶ୍ରମକୁ। ସତ୍ୟ, ଅହିଂସା, ସେବା, ତ୍ୟାଗ ଏବଂ ଦେଶପ୍ରେମରେ ଆଗ୍ରହୀ ଯୁବକମାନଙ୍କୁ ସେଇ ଆଶ୍ରମରେ ତାଲିମ ଦିଆ ଯାଉଥିଲା। ସେମାନେ ସତ୍ୟାଗ୍ରହ ବିଷୟରେ ଶିକ୍ଷା ଲାଭ କରୁଥିଲେ। ନିଜ କାମ ନିଜେ କରୁଥିଲେ। ସୂତା କାଟୁଥିଲେ। ଆଶ୍ରମର

ସବୁ କାମ ନିଜ ହାତରେ କରୁଥିଲେ । ପ୍ରକୃତରେ ସାବରମତି ଆଶ୍ରମ ଥିଲା– ମଣିଷ ଗଢ଼ା କାରଖାନା ।

ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ନବକୃଷ୍ଣ ସେଇ ଆଶ୍ରମରେ ଅନେକ ଦିନ ରହିବାର ସୁଯୋଗ ପାଇଲେ । ଗାନ୍ଧିଜୀଙ୍କ ଆଦର୍ଶକୁ ନିଜର ଜୀବନମନ୍ତ୍ର ରୂପେ ବାଛି ନେଇଥିବାରୁ ନବକୃଷ୍ଣ ଖୁବ୍ କମ୍ ଦିନ ମଧ୍ୟରେ ଗାନ୍ଧିଜୀଙ୍କର ଅତି ପ୍ରିୟପାତ୍ର ହୋଇ ପାରିଥିଲେ । ଦେଶ ଗଠନ, ଲୋକସେବା ଏବଂ ସ୍ୱାଧୀନତା ଆନ୍ଦୋଳନ ପାଇଁ ନିଜକୁ ପ୍ରସ୍ତୁତ କରିନେଲେ ।

ନବକୃଷ୍ଣ ଚୌଧୁରୀ ଅତି ଛୋଟବେଳୁ ଜଣେ ଜିଜ୍ଞାସୁ ବାଳକ ଥିଲେ । ଅଧିକରୁ ଅଧିକ ଜ୍ଞାନ ଆହରଣ କରିବା ପାଇଁ ସେ ଆଗ୍ରହୀ ଥିଲେ । କୁହାଯାଏ– ଜିଜ୍ଞାସୁ ଛାତ୍ରକୁ ଅନେକ ଜ୍ଞାନ ମିଳିଥାଏ । ପୁସ୍ତକ ହେଉଛି– ଜ୍ଞାନର ଭଣ୍ଡାର । ଏକଥାକୁ ସେ ହୃଦୟଙ୍ଗମ କରୁଥିଲେ । ତେଣୁ ସେ ଅନେକ ଗ୍ରନ୍ଥ ପାଠ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ତାଙ୍କର ସମସ୍ତ ସଞ୍ଚିତ ଅର୍ଥ, ପୁସ୍ତକ ଉପରେ ହିଁ ବ୍ୟୟ ହେଉଥିଲା । ତାଙ୍କର ଅଧିକାଂଶ ସମୟ ଏହି ପୁସ୍ତକ ପଠନରେ ହିଁ ବିତି ଯାଉଥିଲା । ସେତିକିରେ ନବକୃଷ୍ଣ ସନ୍ତୁଷ୍ଟ ହୋଇ ପାରି ନଥିଲେ । ଭିନ୍ନ ଭିନ୍ନ ବିଷୟରେ ଅଧିକ ଜ୍ଞାନ ଅର୍ଜନ କରିବାକୁ ସେ ସୁଯୋଗ ଅପେକ୍ଷାରେ ଥିଲେ । ଏହି ସମୟରେ କବି ରବୀନ୍ଦ୍ରନାଥ ଠାକୁର ଶାନ୍ତିନିକେତନଠାରେ ଜ୍ଞାନର ବିକାଶ ଉଦ୍ଦେଶ୍ୟରେ ପ୍ରତିଷ୍ଠାନଟିଏ ଗଠନ କରିଥାନ୍ତି ନବକୃଷ୍ଣ ଗୁରୁଦେବ ରବୀନ୍ଦ୍ରନାଥଙ୍କଠାରୁ ବିଭିନ୍ନ ବିଷୟରେ ଜ୍ଞାନ ଆହରଣ କଲେ । ଶାନ୍ତିନିକେତନରେ ରହି ସେ ଯେଉଁ ସବୁ ବିଦ୍ୟା ଅଧ୍ୟୟନ କଲେ, ତାହା ତାଙ୍କର ଜୀବନ ଗଠନରେ ସହାୟତା କରିଥିଲା ।

ସ୍ୱାଧୀନତା ଆନ୍ଦୋଳନର ମଧ୍ୟାହ୍ନରେ ନବକୃଷ୍ଣ ବିବାହ ବନ୍ଧନରେ ଆବଦ୍ଧ ହେଲେ । ୧୯୨୭ ମସିହାରେ ସମଭାବାପନ୍ନ ଜଣେ ମହୀୟସୀ ମହିଳା ମାଳତୀ ଦେବୀଙ୍କ ସହ ତାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ମାଳତୀ ଦେବୀ ସଂଗ୍ରାମୀ ନବକୃଷ୍ଣଙ୍କୁ ପତିରୂପେ ପାଇ ଧନ୍ୟ ମନେ କଲେ ।

୧୯୩୮ ମସିହାର ଢେଙ୍କାନାଳର ପ୍ରଜାମାନେ ଆନ୍ଦୋଳନ ଚଳାଇଥାନ୍ତି । ନବକୃଷ୍ଣ ସେହି ଆନ୍ଦୋଳନରେ ନିଜକୁ ସାମିଲ କରିଥିଲେ । ପ୍ରଜାମେଳିର ଶିଶୁ ସଂଗ୍ରାମୀ ବାଜିରାଉତଙ୍କୁ ହତ୍ୟା କରାଯିବା ପରେ ସେହି ଆନ୍ଦୋଳନ ଅଧିକ ତିବ୍ର ରୂପ ଧାରଣ କରିଥିଲା । ଗୋରା ଫଉଜ ବନ୍ଧୁକ ଧରି ଢେଙ୍କାନାଳକୁ ଘେରି ରହିଥାନ୍ତି । ଗ୍ରାମାଞ୍ଚଳ ଆତଙ୍କର ଛାଇ ଖେଳି ଯାଇଥାଏ । ଭୟରେ ଲୋକେ ଘରୁ ବାହାରୁ ନଥାନ୍ତି । ଏଇଭଳି ପରିସ୍ଥିତିରେ ନବକୃଷ୍ଣ ଜୀବନକୁ ପାଣି ଛଡ଼େଇ ପ୍ରଥମ ସତ୍ୟାଗ୍ରହୀ ଭାବେ ଢେଙ୍କାନାଳରେ ପ୍ରବେଶ କରି ପ୍ରତିବାଦ ଜଣେଇଲେ । ତାଙ୍କୁ ସେଥି ପାଇଁ ଗିରଫ କରି ନିଆଗଲା । ଫଳରେ ତାଙ୍କର ଦେଶପ୍ରୀତିର ପରିଚୟ ମିଳିଲା । ଲୋକେ ତାଙ୍କର ସାହସିକ ପଦକ୍ଷେପକୁ ପ୍ରଶଂସା କରିବାରେ ଲାଗି ପଡ଼ିଲେ ।

ଗାନ୍ଧିଜୀଙ୍କର ଜଣେ ନିଷ୍ଠାପର ଅନୁଗାମୀ, ନିସ୍ୱାର୍ଥପର ଜନନେତା ଭାବେ ତାଙ୍କର ଲୋକପ୍ରିୟତା ବଢ଼ି ଯାଉଥିବାରୁ ସେ ସହଜରେ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇ ପାରିଥିଲେ । ତାଙ୍କୁ ସ୍ୱତନ୍ତ୍ର ଓଡ଼ିଶାର ମନ୍ତ୍ରୀ ମଣ୍ଡଳରେ ରାଜସ୍ୱ ବିଭାଗର ମନ୍ତ୍ରୀତ୍ୱ ପ୍ରଦାନ କରାଗଲା । ୧୯୪୬ ମସିହାରୁ ୧୯୪୮ ମସିହା ପର୍ଯ୍ୟନ୍ତ ସେ ଏହି ଦାୟିତ୍ୱକୁ ସୁନ୍ଦର ରୂପେ ତୁଲେଇ ପାରିଥିଲେ । ତାଙ୍କର ମନ୍ତ୍ରୀତ୍ୱ କାଳରେ ସେ ଭାଗଚାଷୀ ଆଇନ୍ ପ୍ରବର୍ତ୍ତନ କରିଥିଲେ । ଫଳରେ ଭାଗଚାଷୀମାନେ ଜମି ମାଲିକଙ୍କ ଅତ୍ୟାଚାରରୁ ରକ୍ଷା ପାଇ ପାରିଲେ । ଫଳରେ ନବକୃଷ୍ଣଙ୍କର ଲୋକପ୍ରିୟତା ବଢ଼ି ଚାଲିଲା । ୧୯୫୦ ମସିହାରେ ସେ କଂଗ୍ରେସ ଦଳର ନେତା ଭାବେ ନିର୍ବାଚିତ ହୋଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ୧୯୫୬ ମସିହା ପର୍ଯ୍ୟନ୍ତ ଦୀର୍ଘ ଛଅବର୍ଷ କାଳ ଏହି ଦାୟିତ୍ୱରେ ରହିଥିଲେ । ମୁଖ୍ୟମନ୍ତ୍ରୀ ଥିବା ବେଳେ ସେ ଭୂସଂସ୍କାର ଆଇନ କରାଇ ଜମିଦାରୀ ପ୍ରଥା ଉଚ୍ଛେଦ କରାଇଥିଲେ । ସେଇ ଆଇନ ବଳରେ ତାଙ୍କର ପ୍ରାୟ ସମସ୍ତ ପୈତୃକ ସମ୍ପତ୍ତି ଜମି ବାଡ଼ି ସରକାରଙ୍କର ହୋଇ ଯାଇଥିଲା । ଅବଶିଷ୍ଟ ଜମିକୁ ସେ ବିନୋବାଭାବେଙ୍କ ଭୂଦାନ ଯଜ୍ଞକୁ ଦାନ କରି ଦେଇଥିଲେ । ଏଥିରୁ ତାଙ୍କର ତ୍ୟାଗର ପରିଚୟ ମିଳେ ।

ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥିଲା ବେଳେ ଓଡ଼ିଶାରେ ଅଭୂତପୂର୍ବ ବନ୍ୟା ହୋଇଥିଲା । ୧୯୫୫ ମସିହା ବନ୍ୟାରେ ବିଖ୍ୟାତ ଦନେଇ ଘାଇ ଭାଙ୍ଗି ଯାଇଥିଲା । ଫଳରେ ହଜାର ହଜାର ଜନତା ଗୃହଶୂନ୍ୟ ହୋଇ ଭୋକ ଉପାସରେ ଛଟପଟ ହେଉଥିଲେ । ସେମାନଙ୍କର ଦୁଃଖ ଲାଘବ କରିବା ପାଇଁ ପ୍ରଚୁର ଅର୍ଥର ଆବଶ୍ୟକତା ଦେଖାଦେଲା । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମସ୍ତିଷ୍କରେ ଏକ ଅଭିନବ ଭାବନାର ଉଦ୍ରେକ ହେଲା । ବିଧାନସଭାର ସଭ୍ୟମାନଙ୍କ ମଧ୍ୟରେ ଏକ ଫୁଟବଲ ଖେଳ ପ୍ରତିଯୋଗିତାର ଆୟୋଜନ ଚାଲିଲା । ସେତେବେଳେ ବିରୋଧୀ ଦଳର ସଭ୍ୟସଂଖ୍ୟା, ଶାସକ ଦଳର ସଭ୍ୟସଂଖ୍ୟା ପ୍ରାୟ ସମାନ ଥିଲେ । ତେଣୁ ଶାସକ ଦଳ ଓ ବିରୋଧୀଦଳ ମଧ୍ୟରେ ଏହି ପ୍ରତିଯୋଗିତା ଚାଲିଲା । ବିରୋଧୀଦଳର ନେତା ଶ୍ରଦ୍ଧାକର ସୁପକାରଙ୍କ ସମେତ ଶାସକ ଦଳର କ୍ୟାପ୍‌ଟେନ୍ ବିଜୁପଟ୍ଟନାୟକଙ୍କ ପର୍ଯ୍ୟନ୍ତ ସମସ୍ତେ ଜର୍ସି ପିନ୍ଧି ଫୁଟବଲ ଖେଳିଲେ । ଏଥିରୁ ସଂଗୃହୀତ ଅର୍ଥରେ ଅସହାୟ ଜନତାଙ୍କୁ ସାହାଯ୍ୟ ଦିଆଗଲା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦବୀରେ ଥିଲାବେଳେ ଅନେକ ବଡ଼ମଣିଷ ତାଙ୍କୁ ସାକ୍ଷାତ କରିବାକୁ ତାଙ୍କ ଘରକୁ ଆସୁଥିଲେ । ଥରେ ପଣ୍ଡିତ ନୀଳକଣ୍ଠ ତାଙ୍କ ଘରକୁ ଯାଇଥାଆନ୍ତି, ସେ ଦେଖିଲେ, ଓଡ଼ିଶାର ମୁଖ୍ୟମନ୍ତ୍ରୀ କଂସାଏ ପଖାଳ ଆଉ ଲାଉ ସନ୍ତୁଳା ଧରି ଖାଇ ବସିଛନ୍ତି ତଳେ । ପଣ୍ଡିତ ନୀଳକଣ୍ଠ ମୁଖ୍ୟମନ୍ତ୍ରୀଙ୍କର ସରଳତା ଏବଂ ନମ୍ର ସ୍ୱଭାବ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।

ନିଜ ହାତରେ ସୂତା କଟା ଯାଉଥିବା ପୋଷାକ ସେ ପିନ୍ଧୁଥିଲେ । ମାଳତୀ ଦେବୀଙ୍କ ଶାଢ଼ୀ ପାଇଁ ସେ ନିଜେ ସୂତା କାଟୁଥିଲେ । ସେହିପରି ତାଙ୍କ ପାଇଁ ମାଳତୀ ଦେବୀ ସୂତାକାଟି ଦେଉଥିଲେ । ସେହି ସୂତାରୁ ଲୁଗା, ଜାମା, ଧୋତି ତିଆରି କରୁଥିଲେ । କେବେ ଯଦି ଜାମା ଚିରି ଫାଟି ଯାଉଥିଲା, ତେବେ ମାଳତୀ ଦେବୀଙ୍କ ପ୍ରତାଡ଼ନା ଶେଷ

ହେବା ପର୍ଯ୍ୟନ୍ତ ସେ ଅପେକ୍ଷା କରୁଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ହାତକଟା ସୁତା ପିନ୍ଧି ଗାନ୍ଧିଜୀଙ୍କ ଆଦେଶକୁ ପାଳନ କରିଥିଲେ ।

ସ୍ୱାଧୀନତା ସଂଗ୍ରାମରେ ଯେଉଁ ବୀର ପୁରୁଷମାନେ ଝାସ ଦେଇ ପ୍ରାଣବଳୀ ଦେଇଥିଲେ, କିମ୍ବା ଯେଉଁମାନେ ଆଜୀବନ କାରାଦଣ୍ଡ ଭୋଗୁଥିଲେ; ସେମାନଙ୍କ ପିଲାଛୁଆ ଅନାଥ ହେଇ ଯାଉଥିଲେ । ସେମାନଙ୍କୁ ସରକାରୀ ସାହାଯ୍ୟ ମିଳିବା ତ ଦୂରର କଥା, ସାହି ପଡ଼ିଶାରେ ଲୋକେ ମଧ୍ୟ ତାଙ୍କୁ ଭଲ ଦୃଷ୍ଟିରେ ଦେଖୁ ନ ଥିଲେ । ନବକୃଷ୍ଣ ଚୌଧୁରୀ ନିଜେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ୧୯୩୦, ୧୯୩୨, ୧୯୪୦ ଏବଂ ୧୯୪୨ ମସିହାରେ ଜେଲ ଦଣ୍ଡ ପାଇଥିଲେ । ତେଣୁ ସେ ଜେଲଦଣ୍ଡ ଭୋଗୁଥିବା ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ମର୍ମେ ମର୍ମେ ହୃଦୟଙ୍ଗମ କରିଥିଲେ । ଫଳରେ ସେହି ଦୁଃଖୀ ଅସହାୟ ପିଲାମାନଙ୍କର ଦୁଃଖ ମୋଚନ ପାଇଁ ନବକୃଷ୍ଣ ଚୌଧୁରୀ ଉପାୟ ଖୋଜି ବୁଲୁଥିଲେ । ଢେଙ୍କାନାଳର ଅନୁଗୁଳଠାରେ ସେ ବାଜି ରାଉତଙ୍କ ନାମରେ ଆଶ୍ରମଟିଏ ଗଠନ କଲେ । ସେଇଠି ଅନାଥ ଶିଶୁମାନେ ନିଜ ଘର ପରି ରହିଲେ । ପାଠ ପଢ଼ିଲେ । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହେଲେ । ନିଜ କାମ ନିଜେ କରିବା ଶିକ୍ଷା କଲେ । ଧୀରେ ଧୀରେ ଏହି ଆଶ୍ରମର ସୁନାମ ବଢ଼ି ଚାଲିଲା । ବାଜି ରାଉତ ଛାତ୍ରାବାସରେ ରହୁଥିବା ପିଲାମାନେ ନବକୃଷ୍ଣ ଚୌଧୁରୀଙ୍କୁ ବାପୁ ବୋଲି ଡାକୁଥିଲେ । ମାତା ମାଳତୀ ଚୌଧୁରୀଙ୍କ ସ୍ନେହ ସେବାରେ ପିଲାମାନେ ନିଜର ଘର ଭୁଲିଗଲେ । କେବେ କେହି ଅସୁସ୍ଥ ହୋଇ ପଡ଼ିଲେ, ସେମାନେ ତାଙ୍କଠାରୁ ନିଜ ବାପା ମାଆଙ୍କଠାରୁ ଅଧିକ ସେବାଯତ୍ନ ପାଉଥିଲେ ।

ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ସେ ୧୯୫୬ ମସିହାରେ ସିଧା ଭୁବନେଶ୍ୱରରୁ ଟ୍ରେନ୍‌ରେ ବସି ମେରାମଣ୍ଡଳୀ ଷ୍ଟେସନ୍‌ରେ ଓହ୍ଲାଇଲେ । ସେଠାରୁ ପୁଣି ବସ୍‌ରେ ବସି ଅନୁଗୁଳକୁ ଚାଲିଲେ । ବସ୍‌ଷ୍ଟାଣ୍ଡରୁ ଚାଲି ଚାଲି ସେ ବାଜିରାଉତ ଛାତ୍ରବାସରେ ପହଞ୍ଚିଲେ । କାନ୍ଧରେ ଝୁଲାବ୍ୟାଗ, ବାଇନାକୁଲାର ଏବଂ କ୍ୟାମେରାଟିଏ ଥାଏ । ବ୍ୟାଗ ଭିତରେ ତାଙ୍କର ଖଦଡ଼ ଲୁଗା ଦିଖଣ୍ଡ । ଦେହରେ ମଧ୍ୟ ସାଧାରଣ ଲୁଗାଟିଏ, ଖଦଡ଼ ଜାମା ଖଣ୍ଡେ । ଏହା ଥିଲା, ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଘରବାହୁଡ଼ା କାଳୀନ ଆସବାବ ପତ୍ର । ବସ୍‌ରେ ଆସିଲା ବେଳେ କିମ୍ବା ବସଷ୍ଟାଣ୍ଡରୁ ଚାଲି ଚାଲି ଆସୁଥିଲା ବେଳେ କେହି ଜଣେ ତାଙ୍କୁ ଦେଖି ଭାବି ପାରୁ ନ ଥିଲେ, ଏଇ ମଣିଷ ଜଣକ ଗତକାଲି ମୁଖ୍ୟମନ୍ତ୍ରୀ ପଦରେ ଥିଲେ ।

ମୁଖ୍ୟମନ୍ତ୍ରୀ ପଦରୁ ଅବ୍ୟାହତି ନେଇ ସେ ବାଜି ରାଉତ ଛାତ୍ରବାସକୁ ନିଜର କର୍ମଭୂମି ଭାବରେ ଗ୍ରହଣ କରିନେଲେ । ଅସହାୟ, ଅନାଥ ଶିଶୁମାନଙ୍କୁ ନିଜର ପୁଅ କନ୍ୟା ପରି ପାଳନ କଲେ । ନିଜ ଗୋଡ଼ରେ ନିଜେ ଠିଆ ହେବା ପାଇଁ ଯେଉଁ ସବୁ ଶିକ୍ଷା ଆବଶ୍ୟକ୍ତ ନିଜେ ନବକୃଷ୍ଣବାବୁ ଏବଂ ପତ୍ନୀ ମାଳତୀ ଦେବୀ ସେ ସବୁ ଶିକ୍ଷା ଦେଉଥିଲେ । କେବେ ଅଯଥା ସମୟ ଯେମିତି ନଷ୍ଟ ନହୁଏ, ସେଥି ପାଇଁ ସେ ଯତ୍ନବାନ ଥିଲେ । ଥରେ ଜଣେ ବିଖ୍ୟାତ ନେତା ତାଙ୍କର ଆଶ୍ରମ ଦର୍ଶନ ପାଇଁ ଆସି ଥାଆନ୍ତି, ସେ ଦେଖିଲେ– ପୂର୍ବତନ ମୁଖ୍ୟମନ୍ତ୍ରୀ ଲମ୍ବା ଦଉଡ଼ିଟିଏ ଧରି ଗାଈ ଚରାଉଥାନ୍ତି, ଏଣେ ଖବର କାଗଜ ପଢ଼ା ଚାଲିଥାଏ ।

ଥରେ ଛାତ୍ରାବାସରେ ମୂଷା ପ୍ରବଳ ହେଲେ । ସେମାନଙ୍କୁ ନିପାତ କରିବା ପାଇଁ ସେ ଗୋଟିଏ ନୂଆ ଉପାୟ ଚିନ୍ତା କଲେ । ବିଷ ଦେଇ ବା ଯନ୍ତା ବସେଇ ମୂଷାମାନଙ୍କୁ ମାରି ଦେବାକୁ କେତେଜଣ ପରାମର୍ଶ ଦେଲେ; କିନ୍ତୁ ସେ ଏକ ଅଭିନବ ଉପାୟ ବାହାର କଲେ । ସେ ଜାଣିଥିଲେ, ମୂଷା ମାଂସ ମଧ୍ୟ ମଣିଷ ଖାଇପାରେ । ଆମ ଓଡ଼ିଶାର ବିଭିନ୍ନ ସମ୍ପ୍ରଦାୟର ଲୋକେ ମୂଷା ମାଂସକୁ ମଧ୍ୟ ଖାଇଥାନ୍ତି । ତେଣୁ ଅଯଥାଟାରେ ମୂଷାମାନଙ୍କୁ ମାରି ନଷ୍ଟ କରିଦେବା ଠିକ୍ ହେବ ନାହିଁ । ତେଣୁ ସେଦିନ କେତୋଟି ମୂଷାଙ୍କୁ ଧରି ନିଜେ ତା'ର ମାଂସ ଯତ୍ନରେ ରାନ୍ଧି ଅନ୍ତେବାସୀଙ୍କୁ ଭୋଜନ କରିବାକୁ ଦେଲେ । ଭୋଜନର ଶେଷରେ ସେ ପିଲାମାନଙ୍କୁ ପଚାରିଲେ, 'ଆଜିର ମାଂସ କେମିତି ଲାଗିଲା ?' ସବୁ ପିଲାଏ– ଏକା ସଙ୍ଗେ କହି ଉଠିଲେ– 'ବହୁତ ବଢ଼ିଆ' । ଏହା କି' ମାଂସ ଥିଲା ବୋଲି ପଚାରିବାରୁ ପିଲା ଏ ଭିନ୍ନ ପଶୁପକ୍ଷୀର ମାଂସର ନାମ କହିଲେ । ସେମାନଙ୍କ ମଧ୍ୟରେ ଜଣେ ଆଦିବାସୀ ପିଲା ଆଗରୁ ମୂଷା ମାଂସର ସ୍ୱାଦ ଜାଣିଥିଲେ । ସେ କହିପକାଇଲା, 'ଏହା ମୂଷାର ମାଂସ ଥିଲା' ।

ମୂଷାର ମାଂସ ଏତେ ସ୍ୱାଦ ପିଲାଏ ଜାଣି ନଥିଲେ । ସେହିଦିନଠାରୁ ମୂଷା ଗାତରେ ଧୂଆଁଦେଇ ମୂଷାଙ୍କୁ ଧରି ପିଲାଏ ମୂଷା ଭୋଜୀ କଲେ । କିଛିଦିନ ପରେ ମୂଷାଙ୍କ ବଂଶ ଲୋପ ପାଇଲା । ଏହିପରି ଛୋଟ ଛୋଟ କାମରୁ ନବକୃଷ୍ଣଙ୍କର ଉନ୍ନତି ତଥା ବୈଜ୍ଞାନିକ ଚିନ୍ତାଧାରାର ପରିଚୟ ମିଳେ ।

ସେ ଥିଲେ ସାମ୍ପ୍ରଦାୟିକ ସମନ୍ୱୟର ମୂର୍ତ୍ତିମନ୍ତ ମଣିଷ । ହଠାତ୍ ରାଉରକେଲାରେ ଯେଉଁ ଦୁଃଖଦ ସାମ୍ପ୍ରଦାୟିକ ଦଙ୍ଗାଗୋଳ ଘଟିଗଲା । ଫଳରେ ସେଠାରେ ଅଜଣା ଆତଙ୍କ ଖେଳି ଯାଇଥିଲା । ଲୋକେ ଭୟରେ ଘରୁ ବାହାରୁ ନଥାନ୍ତି । ଶାନ୍ତି ପ୍ରତିଷ୍ଠା କରିବ କିଏ ? ନବକୃଷ୍ଣବାବୁ ତାଙ୍କର କେତେଜଣ କର୍ମୀଙ୍କ ସହିତ ମିଶି ଜୀବନ ବିପନ୍ନ କରି ରାଉରକେଲାରେ ପ୍ରବେଶ କଲେ । ବିଭିନ୍ନ ଗୋଷ୍ଠୀର ଅସହଯୋଗ ସତ୍ତ୍ୱେ ସେ ସେଠାରେ ଶାନ୍ତି ପ୍ରତିଷ୍ଠା କରିବାରେ ସଫଳ ହୋଇ ପାରିଥିଲେ । ଯାହାକି ସମଗ୍ର ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପରଠାରୁ ସେ ଆଉ ସରକାରୀ ଗାଡ଼ିରେ ବସିନାହାନ୍ତି । ସେହି ଦିନଠାରୁ ସାଇକେଲ ଖଣ୍ଡେଧରି ସାଧାରଣ ଗରିବ ଜନତା ଭାବରେ, ଜୀବନ ବିତାଉଥାନ୍ତି । କୃଷକ ଆନ୍ଦୋଳନରେ ଯୋଗଦେଇ ସେ କୃଷକମାନଙ୍କର ଅଭାବ ଅସୁବିଧା ସମ୍ପର୍କରେ ସଚେତନ ଥିଲେ । ତେଣୁ କୃଷକମାନଙ୍କର ଦୁଃଖ ଲାଘବ ପାଇଁ ସେ ମୁଖ୍ୟମନ୍ତ୍ରୀ ପଦରେ ଥାଇ ଚିନ୍ତା କରିଥିଲେ । କୃଷି ଓ କୃଷକର ଉନ୍ନତି ନ ହେଲେ ଦେଶର ଉନ୍ନତି ସମ୍ଭବ ନୁହେଁ । ତେଣୁ ସେ କଟକ ଜିଲ୍ଲାର ତରିକୁଣ୍ଡଠାରେ କୃଷିଫାର୍ମ ପ୍ରତିଷ୍ଠା କରି କୃଷକମାନଙ୍କୁ ତାଲିମ ଦେବାର ବ୍ୟବସ୍ଥା କରିଥିଲେ ।

କୌଣସି କାର୍ଯ୍ୟକୁ କରିବା ପାଇଁ ଅନ୍ୟକୁ ପରାମର୍ଶ ଦେବା ପୂର୍ବରୁ ସେ କାର୍ଯ୍ୟକୁ ନିଜେ କରି ପରୀକ୍ଷା କରି ନେଉଥିଲେ ଏବଂ ନିଜେ କରି ଅନ୍ୟକୁ ଦେଖାଇ ଦେଉଥିଲେ । ଏହାଥିଲା ତାଙ୍କ ଜୀବନର ବିଶେଷତ୍ୱ । ଝାଟିମାଟି କାଛରେ ତିଆରି ଆଶ୍ରମ ଥିଲା–ତାଙ୍କର ବାସଗୃହ । ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରି ସେ ପୁସ୍ତକ ପଠନରେ ସବୁଠାରୁ ଅଧିକ ସମୟ ବିତାଇ ଥିଲେ । ହଠାତ୍ ଦିନେ ସମଗ୍ର ଅନୁଗୁଳ ସହର ଚମକି ଉଠିଲା । ଭାରତର ରାଷ୍ଟ୍ରପତି ନୀଲମ୍ ସଞ୍ଜିବ ରେଡ୍ଡି ସଂଗ୍ରାମୀ ନବକୃଷ୍ଣ ଚୌଧୁରୀଙ୍କୁ ଦର୍ଶନ କରିବା ପାଇଁ ବାଜିରାଉତ ଛାତ୍ରାବାସକୁ ଆସିଲେ । ରାସ୍ତାଘାଟ, ପ୍ରଶାସନ, ଗାଡ଼ି ଘୋଡ଼ାରେ ସହରଟା ଚଞ୍ଚଳ ଉଠିଲା ସତ; କିନ୍ତୁ ନବକୃଷ୍ଣବାବୁ ପୂର୍ବପରି ସ୍ୱାଭାବିକ ଥିଲେ ।

ଆଉଦିନେ ସେହିଭଳି ସହରଟା ହଠାତ୍ ଚଞ୍ଚଳ ଉଠିଲା । ବାଜିରାଉତ ଛାତ୍ରାବାସର ଝାଟିମାଟି ଘରରୁ ହଠାତ୍ କ୍ରନ୍ଦନରୋଳ ଆରମ୍ଭ ହୋଇ ସମଗ୍ର ଦେଶକୁ ତାହା ସଂକ୍ରମିତ ହୋଇଗଲା । ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା– "ନବବାବୁ ଆ... ନାହାନ୍ତି" ।

ସେଦିନ ଥିଲା ୧୯୮୪ ମସିହାର ଜୁନ୍ ମାସ ଚବିଶ ତାରି... ଭୋର ସମୟ । ଠିକ୍ ସୂର୍ଯ୍ୟୋଦୟର ଶୁଭ ମୁହୂର୍ତ୍ତ... ନବକୃଷ୍ଣଙ୍କର ଅମର ଆତ୍ମା ପରମାତ୍ମାରେ ମିଶି... ହୋଇଗଲା ।

ଜଣେ ସରଳ, ଭଦ୍ର, ନମ୍ର ଏବଂ ଗୁଣୀ ମହାପୁରୁଷଙ୍କୁ ଆମ ଦେ... ସବୁଦିନ ପାଇଁ ହରେଇ ବସିଲା; କିନ୍ତୁ ଗାନ୍ଧିଜୀଙ୍କ ଚିନ୍ତାଧାରା... ଉଜ୍ଜିବିତ କରି ରଖିଥିବା ମହାପୁରୁଷ ନବକୃଷ୍ଣ ଚୌଧୁରୀ... ଓଡ଼ିଶାବାସୀ ସହଜରେ ଭୁଲି ପାରିବେ ନାହିଁ ।

---

କାର୍ଯ୍ୟକ୍ରମ ନିଷ୍ପାଦକ,
ଆକାଶବାଣୀ,
ସମ୍ବଲପୁର–୭୬୮୦୦୧ ।




ସୂଚନା ଭବନଠାରେ ଅନୁଷ୍ଠିତ ଭାରତୀୟ ସାମ୍ବାଦିକ ସଙ୍ଘର ଜାତୀୟ ପରିଷଦ ସମ୍ମିଳନୀ–'୯୨ରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ (୧୬/୧୦) ।

# ସାର୍ବଜନୀନ ଓଡ଼ିଆ ଗୀତି କବିତା

● ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ

## ପୃଷ୍ଠ ଭୂମି :

ବିଦ୍ରୂର୍ଯ୍ୟନଗରର ଅନତି ଦୂରରେ ଅବସ୍ଥିତ ଆଠଗଡ଼ ପାଟଣା । ଗ୍ରାମ ସମୀପରେ ଉତ୍ତୁଙ୍ଗ ପର୍ବତମାଳା । ତା'ର ପାଦଦେଶରେ ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ବିଦ୍ୟମାନ ଆଠଗଡ଼ ରାଜବାଟିର ଭଗ୍ନ ଧ୍ୱଂସାବଶେଷ । ସମୀପରେ ଛନ୍ଦାୟିତ କେତକୀ ବନ । ପାହାଡ଼ର ସାମାନ୍ୟ ଉଚ୍ଚ ଦେଶରେ ବିଦ୍ୟମାନ ନାଗେଶ୍ୱର ବନ । ମନ୍ଦ ମଳୟରେ ଭାସିଆସେ ମଧୁର ବାସ୍ନା । ସେହି ମଧୁମୟ ପରିବେଶରେ ଆଠଗଡ଼ର ରାଜକବି ବଳଦେବ ରଥଙ୍କ ସାରସ୍ୱତ ସାଧନା ଗୁଞ୍ଜରିତ ହୋଇ ସାରା ଦେଶକୁ ଚମତ୍କୃତ କରିଦେଇଥିଲା । ଏବେ ବି ସ୍ୱରର ଝଙ୍କାର ଓଡ଼ିଆ ଭାଷାଭାଷୀଙ୍କ ପ୍ରାଣରେ ଶିହରଣ ସୃଷ୍ଟି କରୁଛି । ଗୀତର ଲାଳିତ୍ୟ ପଦର ମାଧୁର୍ଯ୍ୟ, ଶବ୍ଦର କୁହୁକ ଜାଲ ରସଗ୍ରାହୀ ପ୍ରାଣକୁ ମନ୍ତ୍ର ମୁଗ୍ଧ କରୁଛି । ସେହି ପରିବେଶ ଅଛି ସତ, ସାଧକ ନାହାନ୍ତି । କର୍ପୂର ଉଡ଼ିଯାଇଛି, ବାସ ପଡ଼ି ରହିଛି । "ଗଲାଣିତ ଗଲା କଥାରେ ସଙ୍ଗୀତ" ।

ଆଠଗଡ଼ ପରେ କୁଲାଡ଼ ଗଡ଼ । ଭଞ୍ଜନଗରଠାରୁ କିଛି ଦୂରରେ ଅବସ୍ଥିତ ସେହି ଗଡ଼ ଏବେ ବିଲୁପ୍ତ ପ୍ରାୟ । ସେଇଠି ଦିନେ ଝଙ୍କୃତ ହୋଇଥିଲା ଓଡ଼ିଆ ସାରସ୍ୱତ ଜଗତର ଦୀପ୍ତିମୟ ତାରକା କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଗୀତିମୟ, ଛନ୍ଦମୟ ତଥା ରସୋଦୀପ୍ତ ମଧୁର ସଙ୍ଗୀତ । ବାଗ୍‌ଦେବୀଙ୍କ ସେହି ଅପ୍ରୂତ ବୀଣାର ଲଳିତ ରାଗିଣୀ ଓଡ଼ିଶାର ପୁରପଲ୍ଲୀଠାରୁ ଆରମ୍ଭ କରି ସହର, ବଜାର ବିପଣି ସବୁଠି ସେହି ଗୀତର ଲହର । ସେଇ ସଙ୍ଗୀତକୁ ଗାନକରୁଥିଲା ବିଲରେ ଚଷା, ଅନ୍ତଃପୁରେଯୋଷା, ସଭାରେ ପଣ୍ଡିତ, ପଥରେ ପଥିକ ଆଉ ନୃତ୍ୟରଙ୍ଗେ ବାରଙ୍ଗନା ।

"ଆଜ ଦେଖିଲିରେ ନବୀନ ବୟସୀ ବାଳା,
ପାଇଥାନ୍ତି ଯଦି ଚନ୍ଦ୍ରବଦନୀକି କରିଥାନ୍ତି ଗଳାମାଳା" ।

ଗଞ୍ଜାମ ଜିଲ୍ଲାର ଉପୋହରେ ମହେନ୍ଦ୍ର ତନୟା ତୁଳ କେଳିକୁଞ୍ଜରେ ପ୍ରସୂନିତ ପ୍ରଚୁର କେଳି-କଳ-ହଂସ ଗୋପାଳକୃଷ୍ଣ । ମହେନ୍ଦ୍ର ପର୍ବତମାଳାର ଶିଖର ଦେଶରେ ଗୁଞ୍ଜରିତ ସେହି ମଧୁର ପଦାବଳି "କନ୍‌ସାଟ୍-ଟି" ପରି ସାରା ଦେଶକୁ ପ୍ରସାରିତ ହୋଇଥିଲା । କେଳିକଦମ୍ବ ବନରେ ଦାକ୍ଷିଣ୍ୟର ଦମ୍ଭକୁ ଆହ୍ୱାନ କରି ସୁରର ପ୍ଲାବନ ସୃଷ୍ଟି କଲା –

"କଦମ୍ବ ବନେ ବଂଶୀ ବାଜିଲାରେ
ରାଧାଦମ୍ଭ ଶିଖରୀ ବାଜିଲାରେ" ।

ସାଗର ଲହରୀ ଚୁମ୍ବିତ ଶ୍ରୀକ୍ଷେତ୍ର । ଲହରୀର ତାଳକୁ ତାଳଦେଇ ଜଗତନାଥ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ ଦେଖିଲେ ବାଙ୍ମୟ କବି ଦୀନକୃଷ୍ଣ ଦାସ, ବନମାଳି ଦାସ ଆହୁରି ଅନେକ ଭକ୍ତ ସାଲବେଗଙ୍କ ସମେତ ।

"ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବଳା
କଳାକୁ ଷୋଳକଳା କରି
ଗୋପେ ବିହରେ ନରହରି" ।

ଦ୍ୱାରକା ଦାସ

ଓଡ଼ିଶୀ ସଙ୍ଗୀତର ସ୍ରଷ୍ଟା ଏବଂ ସୃଷ୍ଟି ଜଗନ୍ନାଥଙ୍କ ମହିମାରେ ବିମଣ୍ଡିତ ହୋଇ କବି ଜୟଦେବଙ୍କଠାରୁ ଉନ୍ମେଷ ଲାଭକରି ଗଡ଼ି ଆସିଲା ବିଂଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ । ଦୀର୍ଘ ଆଠଶହ ବର୍ଷର ଅମ୍ଳାନ ଗୀତିମୟ ପ୍ରବାହ ।

"ଧୀର ସମୀରେ ଯମୁନା ତୀରେ
ବସତି ବନେ ବନମାଳି" ।

ଓଡ଼ିଆ ଗୀତି କବିତାର ପର୍ଯ୍ୟାଲୋଚନା [illegible] ପରିପ୍ରେକ୍ଷୀରେ ଏହିସବୁ ଗୀତ ସୃଷ୍ଟିର ଅନ୍ତଃସ୍ୱର, ସ୍ୱରୂପ [illegible] ପରିବେଶ ସହ ପରିଚିତ ହେବା ତାତ୍ପର୍ଯ୍ୟ ଏଇ ଯେ ଏଇ ଦେଶର ମାଟି, ପାଣି, ପବନ, ଆକାଶ, ବନଗିରି, ସାଗର ପ୍ରାନ୍ତର ସମେତ ମନୁଷ୍ୟଠାରୁ ଆରମ୍ଭ କରି ସରିସୃପ ଏବଂ ହିଂସ୍ର ପଶୁ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣକୁ ପୁଲକିତ ସ୍ପନ୍ଦନ କରିଛି । ବୁଝୁ ନ ବୁଝୁ ପଦ ଗୀତାଃ [illegible] ଖାଅ ପିଅ "ପରି ଛଳ ବିଶେଷରେ ମଧ୍ୟଯୁଗୀୟ ଗୀତି ମୟ [illegible] ନାରିକେଳ ସଦୃଶ୍ୟ ହୋଇଥିଲା ସୁଦ୍ଧା, ଗାୟକ, ଶ୍ରୋତା ତଥା ରସିକଙ୍କୁ ଆନନ୍ଦ ପ୍ରଦାନରେ ଅବହେଳା କରିନାହିଁ । ଏହା ହିଁ

ଏହାର ସାର୍ବଜନୀନ ପ୍ରଭାବ । ସାଙ୍ଗୀତିକତା ଏବଂ ଗାନ ଯୋଗ୍ୟତା ଯାହା କି ଗୀତି କବିତାର ମୂଳଧର୍ମ । ଏହି ଗୀତି କବିତାରେ ସ୍ୱରର ଲହର ତୋଳି ପାରୁଥିବାରୁ ଏହାର ଏତେ ଜନପ୍ରିୟ ।

"ଦେଖୁ ନବକାଳିକା ବକାଳିକା ମାଳିକା
ଆଳିକାଳିକା କାନ୍ତ ସ୍ମରି
ରକ୍ଷା କେମନ୍ତେ କରି କରିବା ମଉକରୀ
ଗତିକୁ ଏମନ୍ତ ବିସ୍ମରି,
ସେ ସହଚରୀ
ଭାବେ ବର୍ଣ୍ଣିଲେ ଏକାଳକୁ
କଥାଥିବ କାଳକାଳକୁ..........କବିସମ୍ରାଟ

## ଲକ୍ଷଣ ଓ ପ୍ରକୃତି :

ଗୀତି କବିତାର ଗୀତିମୟତା ବା ଗାନଯୋଗ୍ୟତା ବାଦ୍ୟଯନ୍ତ୍ର ଏବଂ ରାଗରାଗିଣୀ ସହ ନିବିଡ଼ ଭାବରେ ସଂଶ୍ଳିଷ୍ଟ ହୋଇରହିବା ଏକ ପ୍ରାଚୀନ ପରମ୍ପରା । ମନ୍ମୟତା ବା ଆତ୍ମାନୁଭୂତି ମୂଳକତା, ସ୍ୱତଃ ସ୍ଫୂର୍ତ୍ତତା ଏବଂ ସଂକ୍ଷିପ୍ତତା ଏହାର ଅନ୍ୟ ତିନୋଟି ମୂଳ ଲକ୍ଷଣ, ମାତ୍ର କେବଳ ବ୍ୟକ୍ତିନିଷ୍ଠ ବା ବ୍ୟକ୍ତିର ତୁଚ୍ଛ ଅନୁଭୂତିକୁ ଚିତ୍ରିତ କରିବାରେ ଗୀତି କବିତାର ଉଦ୍ଦେଶ୍ୟ ସୀମିତ ନୁହେଁ । ଏହାର ମାଧ୍ୟମରେ ମନୁଷ୍ୟ ମନର ଶାଶ୍ୱତ ତଥା ସାର୍ବଜନୀନ ସତ୍ୟ ମଧ୍ୟ ଅଭିବ୍ୟକ୍ତି ଲାଭ କରିଥାଏ । ଯେଉଁ ଗୀତି କବିତାରେ ଏହା ସମ୍ପାଦିତ ହୋଇଥାଏ, ତାହା ମହତ ବା ଶ୍ରେଷ୍ଠ କୃତୀ ଭାବେ ଗୃହୀତ ହୋଇଥାଏ । ଏକାଦଶ ଶତାବ୍ଦୀର ଚର୍ଯ୍ୟା ପଦଠାରୁ ଆରମ୍ଭକରି ଏ ଯୁଗର ଆଧୁନିକ ଗୀତି କବିତା ପର୍ଯ୍ୟନ୍ତ ଓଡ଼ିଆ ଗୀତି କବିତାରେ ଏହି ସ୍ୱରର ମୂର୍ଚ୍ଛନା ଅବିରତ ପ୍ରବାହିତ ।

"ଉଁଚ୍ଚ ଉଁଚ୍ଚ ପାବତ ତହିଁ ବସଇ ଶବର ବାଳୀ
ମୋରଙ୍ଗୀ ପିଛ ପରହିତା ଶବରୀ ଗିବସ ଗୁଞ୍ଜରୀମାଳୀ"
—ଚର୍ଯ୍ୟା ଗୀତିକା

"କଳସ ଉପରେ ଆମ୍ବ ଡାଳିଆ
ଗୋରୀ କନିଆକୁ ବର କାଳିଆ
କରାଣ୍ଡି ପକାଇ ନେଲା ବାଳିଆ" ।
ଆଧୁନିକ ଗୀତି କବିତା

ଓଡ଼ିଆ ଗୀତି କବିତାର ଆଦି ସ୍ୱରୂପ ହେଲା ଲୋକ ଗୀତି । ଏଥିରେ ଅଳଙ୍କାରର ଚାତୁରୀ ଅପେକ୍ଷା ରସର ମାଧୁରୀ ଅଧିକ ଅଳଙ୍କାର ପରିପୂର୍ଣ୍ଣ ଗୀତି କେବଳ ଅର୍ଥୀଜନଙ୍କ ମାନସରଞ୍ଜନ କରୁଥିବା ବେଳେ ଲୋକଗୀତର ରସ ବିଶ୍ୱ ଜନମୋହନରେ ସାର୍ଥକତା ଲାଭ କରିଛି । ତେଣୁ ରଚିତ ଗୀତ ଅପେକ୍ଷା ମୌଖିକ ଲୋକଗୀତି କମ୍ ମହତ୍ତ୍ୱ ପୂର୍ଣ୍ଣ ନୁହେଁ ।

"ପର୍ବତ ଶିଖରୁ ଭାଲୁ ଗଡ଼ିଗଲା ମୁଥାମୂଳ ଖାଇବାକୁ
ଯୋଗିନୀଖିଆର ହାତଧରିଥିଲି ବିଧା ମାଡ଼ ଖାଇବାକୁ
ମାଡ଼ତ ମାରିଲୁ ଯୋଗିନୀଖିଆରେ ହାତେଭାତ ରାନ୍ଧି ଖା
ଚୁଲି ଫୁଙ୍କୁ ଫୁଙ୍କୁ ନିଶ ପୋଡ଼ିଗଲା ମାଡ଼ର ଅସୁଲ ପା" ।

## ପ୍ରବାହ :

ଲୋକଗୀତିର ପ୍ରଭାବରେ ପରିପୁଷ୍ଟ ସାରଳା ଦାସଙ୍କ ମହାଭାରତ ଦୀର୍ଘ ହେଲେ ହେଁ ଏହା ଓଡ଼ିଆ ଜନମାନସକୁ ସ୍ପର୍ଶ କରିବାରେ ଏତେ ସଫଳ ହୋଇଛି ଯେ ସମକାଳୀନ କୌଣସି ଭାରତୀୟ ସାହିତ୍ୟରେ ଏପରି ଅଭିନବ ସୃଷ୍ଟି ବିରଳ । ବଳରାମ ଦାସଙ୍କ ଦାଣ୍ଡିରାମାୟଣ, ଜଗନ୍ନାଥ ଦାସଙ୍କ ଭାଗବତ, ସାରଳା ଦାସଙ୍କ ମହାଭାରତ ପରି ଅଧିକ ଜନପ୍ରିୟ । କାରଣ ଏସବୁରେ ଜନମାନସ ରଞ୍ଜନ କଲାଭଳି ରସର ଭଣ୍ଡାର ଭରପୂର ହୋଇ ରହିଛି । ଗର୍ଭବେଦନା ପାଉଥିବା ନାରୀକୁ କଷ୍ଟ ଲାଘବ କରିବା ପାଇଁ ଭାଗବତର ଦଶମ ସ୍କନ୍ଦ ପାଠ, ଶ୍ରାନ୍ତ କ୍ଲାନ୍ତ ଦିବସର ଶ୍ରମ ଲାଘବ ପାଇଁ ସନ୍ଧ୍ୟାରେ ଭାଗବତ ଟୁଙ୍ଗିରେ ପୁରାଣ ଶ୍ରବଣ ଓଡ଼ିଶାର ଅପୂର୍ବ ପରମ୍ପରା । ଆବାଳ ବୃଦ୍ଧ ବନିତା ସମସ୍ତେ ଏଥିରେ ବିମୋହିତ । ଗୀତର ଲହରରେ ସମସ୍ତଙ୍କର ମନ ପୁଲକିତ ।

ଓଡ଼ିଆ ଗୀତିର ପ୍ରବାହରେ ଗୌଡ଼ୀୟ ବୈଷ୍ଣବ ପ୍ରେମର ରାଧାକୃଷ୍ଣ ପ୍ରେମ ଫଲ୍ଗୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ବାଙ୍ମୟକୁ ଉଦ୍‌ବୁଦ୍ଧ କରିରଖିଥିଲା । ଅଷ୍ଟାଦଶ ଶତାବ୍ଦୀରେ ମାନବିକ ପ୍ରେମ ଗୀତି କାବ୍ୟ କବିତାରେ ସ୍ଥାନ ପାଇବା ଆରମ୍ଭ କଲା । ଏଦିଗରେ ବନମାଳି ଦାସଙ୍କ "ଚାଟ ଇଚ୍ଛାବତୀ" ଏବଂ ଧନଞ୍ଜୟ ଭଞ୍ଜଙ୍କ "ତ୍ରୌପଦୀ ଭୂଷଣ" ପ୍ରଥମ ତଥା ସଫଳ ପ୍ରୟାସ । ପରବର୍ତ୍ତୀ ସମୟରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏହାର ପ୍ରକୃତ ବିକାଶ ସାଧନ କରିଥିଲେ । ଗୀତି ପ୍ରଧାନ ଗୀତି କାବ୍ୟର ମହାନ ପରମ୍ପରା ସୃଷ୍ଟି କରିବାରେ ଭଞ୍ଜଙ୍କର କୁଶଳୀ ତୁଳୀ କଳାର କୋଣାର୍କ ନିର୍ମାଣ କରିବାରେ ସଫଳ ହୋଇଥିଲା ।

ରୀତି ଯୁଗର ଅନ୍ୟତମ ସାରଥୀ ଦୀନକୃଷ୍ଣ ଏବଂ ଅଭିମନ୍ୟୁ ସାମନ୍ତ ସିଂହାର ରାଧାକୃଷ୍ଣ ପ୍ରେମ ସମ୍ବଳିତ ଗୀତିକାବ୍ୟ ରଚନା କରିବାରେ ମୁଖ୍ୟ ଭୂମିକା ନିର୍ବାହ କରିବା ସଙ୍ଗେ ସଙ୍ଗେ ମାନବୀୟ ପ୍ରେମ ଏବଂ ମାନବୀୟ ତତ୍ତ୍ୱକୁ ମଧ୍ୟ ଆଧାର କରିବାକୁ ଭୁଲି ନଥିଲେ । କବିସୂର୍ଯ୍ୟ ବଳଦେବ ରଥ ମଧ୍ୟ ଏହି ଧାରାରେ ପ୍ରବାହିତ ହେଲେ । ଓଡ଼ିଆ ସାହିତ୍ୟରେ ବହୁ ଚମ୍ପୂ ରଚନା କରାଯାଇଛି, ମାତ୍ର ଚମ୍ପୂ କହିଲେ ଆମେ କେବଳ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂକୁ ବୁଝୁ । ଗଦ୍ୟ ପଦ୍ୟ ମିଶ୍ରିତ ଏହି କାବ୍ୟ କବିସୂର୍ଯ୍ୟଙ୍କ ଅନବଦ୍ୟ କୃତୀ ।

"କି ହେଲାରେ କହିତ ନୁହଇ ଭାରତୀରେ"

ଓଡ଼ିଆ ଗୀତି କାବ୍ୟ କବିତାରେ ନୂତନ ଚେତନାର ସ୍ୱର ଆଣିଲା ବ୍ରଜନାଥ ବଡ଼ଜେନାଙ୍କ ସମରତରଙ୍ଗ । ରାଧାକୃଷ୍ଣ ପ୍ରେମ ପ୍ରବାହ ପରେ ମାନବୀୟ ପ୍ରେମ ଏବଂ ତା'ପରେ ସମରତରଙ୍ଗର ସ୍ୱଦେଶ ପ୍ରେମ ଏବଂ ଜାତୀୟ ଚେତନା ପରବର୍ତ୍ତୀ ସତ୍ୟବାଦୀଯୁଗର ସାରଥୀଙ୍କୁ ପ୍ରଭାବିତ କରିଥିଲା । ଉତ୍କଳମଣି ଗୋପବନ୍ଧୁ ଦାସ ଏବଂ ପଣ୍ଡିତ ଗୋଦାବରୀଶ ଏ ଯୁଗର ସଫଳ ଗୀତିକାର ରୂପେ ସ୍ୱୀକୃତ ହେଲେ । ତାଙ୍କର ଗୀତରେ ମୁଖ୍ୟତଃ ସାଧାରଣ ଜନଜୀବନର ସ୍ୱର ଏବଂ ଦେଶପ୍ରେମର ବାର୍ତ୍ତା ପ୍ରସ୍ଫୁଟିତ ହେଲା । ଅବଶ୍ୟ ରାଧାନାଥୀୟ ମାନବୀୟ ପ୍ରେମ ପ୍ରବାହ

ଓଡ଼ିଆ ଗୀତି କବିତାର ସୁଷ୍ଠୁ ପ୍ରକାଶରେ ସହାୟକ ହୋଇ ପରବର୍ତ୍ତୀ ସବୁଜ ଯୁଗକୁ ପ୍ରଭାବିତ କଲା । ଏ ଯୁଗର ରସିକ କବି ମାୟାଧର ମାନସିଂହ ଗାଇଲେ –

"ଏଇ ସହକାର ତଳେ
ସେ ଦିନ ପ୍ରିୟାର କର କଙ୍କଣ
ଭିଡ଼ିଥିଲା ମୋର କୋଳେ ।"

## ରୂପଭେଦ ଏବଂ ପ୍ରକରଣ :

ଗୀତି କାବ୍ୟର ରୂପଭେଦରେ ଆମେ ମୁଖ୍ୟତଃ ଦେଖିବାକୁ ପାଉ ଚଉପଦୀ, ଚଉତିଶା, ବୋଲି, ସନ୍ଦେଶ ଗୀତିକା, ଭକ୍ତି ସଙ୍ଗୀତ, ପଦି, ପୋଇ ଆଉ ଚଉତି । ଓଡ଼ିଶୀ ସଙ୍ଗୀତ ସାଧାରଣତଃ ଚଉପଦୀ ନାମରେ ଅଭିହିତ । ଏହା ପ୍ରାଚୀନ ଗୀତିକାବ୍ୟର ଅନ୍ୟତମ ଶ୍ରେଷ୍ଠ ବିଭବ । ଜଗନ୍ନାଥ ଦାସଙ୍କ ୧୬ ଚଉପଦୀ, ଧନଞ୍ଜୟଭଞ୍ଜଙ୍କ ଚଉପଦୀ ଭୂଷଣ, କବିସୂର୍ଯ୍ୟଙ୍କର "ଚଉପଦୀ ରତ୍ନାକର" ଓଡ଼ିଆ ଚଉପଦୀର ଗୋଟିଏ ଗୋଟିଏ ମାଇଲଖୁଣ୍ଟ । ମାତ୍ର ଚଉପଦୀର ମୁଖ୍ୟ ପୁରୋଧା ଭାବେ ଉପେନ୍ଦ୍ର ଭଞ୍ଜଙ୍କ କୃତୀ ଅଗ୍ରଗଣ୍ୟ । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ପରିବ୍ୟାପ୍ତ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଚଉପଦୀ ଯୁଗ ନାମରେ ପରିଚିତ । କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଗୌରହରି ବନମାଳି । ଗୌରଚରଣ, ଯଦୁମଣି, ବିଶ୍ୱନାଥ ଖୁଣ୍ଟିଆ ଓଡ଼ିଆ ଚଉପଦୀ ସାଗରକୁ ପୂର୍ଣ୍ଣିମାରେ ଜ୍ୟୋତ୍ସ୍ନାରେ ବିଧୌତ କରି ଉତ୍ତାଳ ଲହରୀ ତୋଳିଥିଲେ ।

ଭକ୍ତିସଙ୍ଗୀତ ମାଧ୍ୟମରେ ଭାଗବତ ଭାବନା ମାନବ ଜୀବନର ଏକ ଶାଶ୍ୱତ ତଥା ସୁମହତ ଅଭିଳାଷ ଏବଂ ଏକ ଅନିର୍ବଚନୀୟ ମଧୁର ଉପଲବ୍ଧି । ଓଡ଼ିଶା ଭାରତର ଏକ ପବିତ୍ର ଧର୍ମପୀଠ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ତାନ୍ତ୍ରିକ, ବୈଷ୍ଣବ ସମସ୍ତଙ୍କର ଅପୂର୍ବ ସମନ୍ୱୟର ପୀଠ ଉତ୍କଳ । ଚର୍ଯ୍ୟାପଦ, ପାଲା ଏବଂ ପାଟୁଆ ନାଚଠାରୁ ଆରମ୍ଭକରି ଜଣାଣ, ସ୍ତୁତି, ଭଜନ ପର୍ଯ୍ୟନ୍ତ ସମସ୍ତ ଭକ୍ତି ସଙ୍ଗୀତରେ ଗୀତର ମଧୁର ମୂର୍ଚ୍ଛନା, ସାକାର, ନିରାକାର ନିର୍ଗୁଣ ପରମବ୍ରହ୍ମର ମହାତ୍ମ୍ୟ ବର୍ଣ୍ଣନ ଭକ୍ତିରସ ରସାଣିତ ଗୀତିକାବ୍ୟର ଧାରା ଓଡ଼ିଆ ସାହିତ୍ୟକୁ ପୁଷ୍ଟ କରିଛି । ଏହି ଭକ୍ତି ସଙ୍ଗୀତର ଭାବାବେଗରେ କବି ଗାଇଛନ୍ତି –

"ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।"

ସାଲବେଗ

ଅନୁକ୍ରମିକ ଭାବେ ୩୪ଟି ବ୍ୟଞ୍ଜନବର୍ଣ୍ଣକୁ ବ୍ୟବହାର କରି ଗୀତ ରଚନା କରିବାକୁ ଚଉତିଶା କୁହାଯାଏ । ବଚ୍ଛା ଦାସଙ୍କ କଳସା ଚଉତିଶା ଓଡ଼ିଆ ଚଉତିଶାର ଆଦି ସ୍ୱାକ୍ଷର । ଏହା ସମ୍ଭବତଃ ପଞ୍ଚଦଶ ଶତାବ୍ଦୀର ରଚନା । ଏହି ସମୟରେ ଦାମୋଦର ଦାସଙ୍କ ରସକୁଲ୍ୟା ଚଉତିଶା ମଧ୍ୟ ସ୍ୱୀକୃତି ଲାଭ କରିଥିଲା । ଜଗନ୍ନାଥ ଦାସଙ୍କ "ନୀଳଗିରି ଚଉତିଶା", ଅଚ୍ୟୁତା ନନ୍ଦଙ୍କ କାଳିନ୍ଦି ମଧ୍ୟେ କମଳ ଫୁଟିଛି । "କର କୃଷ୍ଣ ନାମ ଭଜନ" ଆଦି ଚଉତିଶା, ମଧ୍ୟ ଯୁଗର ସଫଳ ଚଉତିଶା ମଧ୍ୟରେ ଅଗ୍ରଗଣ୍ୟ । ସପ୍ତଦଶ ଶତାବ୍ଦୀରେ ଦନେଇ ଦାସଙ୍କ ଗୋପୀଭାଷା ସବୁଠାରୁ ଜନପ୍ରିୟ ଚଉତିଶା । ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟରେ ଚଉତିଶାର ପ୍ଲାବନ ବନ୍ୟା ସୃଷ୍ଟି ହୋଇଥିଲା । ଏହାର ପୁରୋଭାଗରେ ଥିଲେ ଦୀନକୃଷ୍ଣ ଦାସ, ଭକ୍ତ ଚରଣ ଦାସ, ସଦାନନ୍ଦ, କବିସୂର୍ଯ୍ୟବ୍ରହ୍ମା, ଗୋପାଳକୃଷ୍ଣ ପଟ୍ଟନାୟକ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ ରଥ, ଗୌର ହରୀ ଏବଂ ଗୌର ଚରଣ । କୋଇଲି ବା ସନ୍ଦେଶ ଗୀତିକା ଓଡ଼ିଆ ଗୀତିକାବ୍ୟର ଅନ୍ୟ ଏକ ମଧୁର ବିଭବ । ଏଥିରେ ବିରହ, ବିଚ୍ଛେଦ, ଶୋକ, ମିଳନର ମଧୁର କାକଳି ଗୁଞ୍ଜରିତ । ମାର୍କଣ୍ଡ ଦାସଙ୍କ କେଶବ କୋଇଲି ଏହି ସନ୍ଦେଶ ଗୀତିକାର ପ୍ରଥମ ସଫଳ ସ୍ୱାକ୍ଷର । ପରବର୍ତ୍ତୀ ଯୁଗରେ କାଳିଦାସୀୟ ପରମ୍ପରାରେ ଉଦ୍‌ବୁଦ୍ଧ ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସରେ ରାମଚନ୍ଦ୍ରଙ୍କ ଦ୍ୱାରା ସୀତାଙ୍କ ଉଦ୍ଦେଶ୍ୟରେ ମେଘକୁ ଦୂତ କରି ପ୍ରେରଣ ଏକ ଅପୂର୍ବ ସୃଷ୍ଟି । ଶିଶୁ ହଂସ ଦାସଙ୍କ "ହଂସ ଦୂତ ଚଉତିଶା" ସଦାନନ୍ଦଙ୍କ "କମଳ ମୁଖ କୋଇଲି", ବଳରାମ ଦାସଙ୍କ କାନ୍ତକୋଇଲି, ସଚ୍ଚିଦାନନ୍ଦ ତ୍ରିଭୁବନ ଦେଙ୍କ "ଚନ୍ଦ୍ରଦୂତ" ଆଦି ସନ୍ଦେଶ ଗୀତିକାର ସଫଳ କୃତୀ ରୂପେ ବିଦ୍ୟମାନ ।

ସରଳ ତଥା ଲୋକ ପ୍ରଚଳିତ ଭାଷାରେ ଏକମାତ୍ର ସରଳ ଛାନ୍ଦ ବୃତ୍ତରେ ରଚିତ ରଚନାକୁ "ବୋଲି" କୁହାଯାଏ । ଓଡ଼ିଆର ଅଧିକାଂଶ ବୋଲି ଏଗାର କିମ୍ବା ବାର ଅକ୍ଷର ବିଶିଷ୍ଟ । ବଳରାମ ଦାସଙ୍କ "ଛତିଶ ଗୁପ୍ତ ଗୀତା" ଓଡ଼ିଆ ସାହିତ୍ୟର ଆଦ୍ୟତମ 'ବୋଲି' । ବିଷୟ ବସ୍ତୁ ଭେଦରେ ବୋଲି ପାଞ୍ଚ ପ୍ରକାର। ପୌରାଣିକ, କାଳ୍ପନିକ, ବର୍ଣ୍ଣନାତ୍ମକ, ତତ୍ତ୍ୱ ଓ ଉପଦେଶାତ୍ମକ ଏବଂ ଆତ୍ମାନୁଭୂତିମୂଳକ । ଏଗୁଡ଼ିକର ରାଗ ସରଳ ଏଣୁ ଗାନରୀତି ମଧ୍ୟ ସରଳ ତରଳ ତଥା କାନ୍ତ କୋମଳ ।

ସ୍ୱରବର୍ଣ୍ଣାନୁକ୍ରମିକ ରଚନା "ଷୋଡ଼ଶୀ" ବା "ଷୋଡ଼ଶେନ୍ଦୁ" ନାମରେ ଅଭିହିତ । ଉପେନ୍ଦ୍ରଭଞ୍ଜଙ୍କ "ଚଉପଦୀ ଚନ୍ଦ୍ର" ଓଡ଼ିଆ ଗୀତି କବିତା ରାଜ୍ୟରେ ପ୍ରଥମ ଷୋଡ଼ଶୀ । ଓଡ଼ିଆରେ ମିଳୁଥିବା ଅଧିକାଂଶ ଷୋଡ଼ଶୀ ସ୍ତୁତି ବନ୍ଦନା ମୂଳକ । ମାତ୍ର ଭଞ୍ଜଙ୍କର ଚଉପଦୀ ଚନ୍ଦ୍ର ଆଦିରସରେ ରସାଣିତ ।

ଚିଟାଉ ବା ପତ୍ର ଗୀତିକା ମାଧ୍ୟମରେ ଦୂରବର୍ତ୍ତୀ ପ୍ରିୟଜନଙ୍କୁ ସନ୍ଦେଶ ପ୍ରେରଣ ଆମର ଏକ ପ୍ରାଚୀନ ପରମ୍ପରା । ଓଡ଼ିଆ ଗୀତି କାବ୍ୟମାନଙ୍କରେ ନାୟକ ନାୟିକା ମଧ୍ୟରେ ପତ୍ରାଳାପ ଏକ ଅଭିନବ ସୃଷ୍ଟି । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଚିଟାଉ ଲେଖିବାର ପ୍ରଣାଳୀ ପ୍ରସଙ୍ଗରେ ଗାଇଛନ୍ତି– ରାଧାଙ୍କୁ ସଖୀ କହୁଛି,

"ଲେଖ ତୁମ୍ଭ ଅକ୍ଷରେ ଆଛା ବିରଳ
ପୁନରୁକ୍ତି ନୋହିବ ମାତ୍ରା କେବଳ
ମାତ୍ରାକୁ ଛୁଡ଼ିବ ନାହିଁ
ଧାଡ଼ିକି ଧାଡ଼ି ଥିବ ଅଲଗା ହୋଇ" ।

ଭକ୍ତ ଚରଣ ଦାସଙ୍କ "କଂସର ଚିଟାଉ" ସବୁଠାରୁ ଲୋକପ୍ରିୟ ପତ୍ର ଗୀତିକା–

ଲେଖି ଅଛି କଂସ
ହୋଇ ମହାରୋଷ

ଆରେ ଗୋପପତୀ ନନ୍ଦ
ଆଜ୍ଞା ପରମାଣେ
ତତ୍‌କାଳେ ଆସିବୁ
ନୋହିଲେ ଛେଦିବି ଛନ୍ଦ ।"

ମଥୁରା ମଙ୍ଗଳ

ସଂସ୍କୃତ "ପଦୀ" ଶବ୍ଦରୁ ଓଡ଼ିଆ ପଦିଆ ଗୀତିର ସୃଷ୍ଟି । ଓଡ଼ିଆ ସାହିତ୍ୟରେ ଏଗୁଡ଼ିକର ସଂଖ୍ୟାନ୍ୟୂନ । ସପ୍ତଦଶ ଶତାବ୍ଦୀରେ ଏଗୁଡ଼ିକ ମୁଖ୍ୟତଃ ବିକଶିତ ହୋଇଥିଲା । କୃପାସିନ୍ଧୁ ସୁମନ୍ତ ପଟ୍ଟନାୟକଙ୍କ ଛପନ ପଦିଆ ଓ ଛବିଶ ପଦିଆ, ବାମଦେବ ପଟ୍ଟନାୟକଙ୍କ ପଚାଶ ପଦିଆ ନୀଳକଣ୍ଠ ଖାଡ଼ଙ୍ଗାଙ୍କ ଶହେ ପଦିଆ ଓଡ଼ିଆ ପଦିଆ ଗୀତି କବିତାର ଅମୂଲ୍ୟମଣି ।

ଓଡ଼ିଆ ଗୀତି କବିତାର ସମ୍ଭାର ମଧ୍ୟରେ ପୋଇ, ଶୋକ ଗୀତି, ଢମାଳି ବା ହାସ୍ୟ ରସାତ୍ମକ ଗୀତ, ମଙ୍ଗଳ ଗୀତି ଆଦି ଗୋଟିଏ ଗୋଟିଏ ସୁରଭିତ କୁସୁମ ।

ଗୀତିକାବ୍ୟ ଓ ଛାନ୍ଦ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଓଡ଼ିଆ ସାହିତ୍ୟର ଛାନ୍ଦ ଶବ୍ଦଟି ତିନୋଟି ବିଶିଷ୍ଟ ଅର୍ଥରେ ବ୍ୟବହୃତ ହୋଇଥାଏ । ଗୀତରରାଗ, ରାଗିଣୀ ଏବଂ ଏକରାଗିଣୀ ବନ୍ଧା ଯାଇଥିବା ଗୀତ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଓଡ଼ିଆ ଛ ଏବଂ ରାଗ ରାଗିଣୀର ବିକାଶ କରିବାକୁ ସଂସ୍କୃତ ପରମ୍ପରା ଛନ୍ଦମାନଙ୍କୁ ବ୍ୟବହାର କରୁଥିଲେ । ଓଡ଼ିଆ ଗୀତି କାବ୍ୟ ଧାରାରେ ଶାସ୍ତ୍ରୀୟ ସଙ୍ଗୀତର ରାଗ ଚର୍ଯ୍ୟାପଦଠାରୁ ଆରମ୍ଭ ହୋ ଗୀତଗୋବିନ୍ଦରେ ପ୍ରସ୍ଫୁଟିତ ହୋଇ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକୃତୀରେ ସଫଳ ପ୍ରକାଶ ଏବଂ ପ୍ରସାର ଲାଭ କରିଅଛି ।

ଆଜିର ମୁକ୍ତ ଛନ୍ଦ, ଗଦ୍ୟ ଛନ୍ଦ ରାଜ୍ୟରେ ମଧ୍ୟ ଓଡ଼ିଆ ଗୀ କବିତାର ସୁମଧୁର ସ୍ୱର ରସସିପାସ୍ତୁ ଓଡ଼ିଆ ଜନଜୀବନରେ ଏ ଅପାସୋରା ଅଧ୍ୟାସ ହୋଇ ରହିଛି । ହିନ୍ଦି ଚଳଚ୍ଚିତ୍ର ସଙ୍ଗୀତ ପ୍ଲାବନରେ ମଧ୍ୟ ବୁଡ଼ି ନ ଯାଇ ଓଡ଼ିଆ ଗୀତି କବିତା ଝଙ୍କୃତ ହୋ ପାରିଛି । ଶ୍ରୀକ୍ଷେତ୍ରର ଭଜନ ସମାରୋହ, ଆକାଶବାଣୀର ଗୀତ୍‌ର ମଧୁର ପ୍ରସାର ଓଡ଼ିଆ ଗୀତି କବିତାକୁ ଜନଜୀବନର ସଙ୍ଗିନୀ ରୂପେ ବରଣ କରି ରଖିଛି, ରଖୁଥିବ ମଧ୍ୟ ।

---

ଶ୍ରମ କମିଶନରଙ୍କ କାର୍ଯ୍ୟାଳୟ,
ଭୁବନେଶ୍ୱର ।



ଲଳିତକଳା ଏକାଡେମୀଠାରେ ଆୟୋଜିତ ଏକ ପ୍ରଦର୍ଶନୀକୁ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ପରିଦର୍ଶନ କରୁଛନ୍ତି (୧୮/୯) ।

# ଛଉନୃତ୍ୟରେ ବୀରତ୍ୱ-ବ୍ୟଞ୍ଜନା

● ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି

ଭାରତବର୍ଷରେ ପ୍ରଚଳିତ ବିଭିନ୍ନ ପ୍ରତିଷ୍ଠିତ ନୃତ୍ୟ ମଧ୍ୟରେ ଛଉନୃତ୍ୟର ପ୍ରାଚୀନତା ସ୍ୱୀକାର୍ଯ୍ୟ । ଭାରତବର୍ଷରେ ସ୍ୱୀକୃତି ଲାଭ କରିଥିବା ଛ'ଟି ଶାସ୍ତ୍ରୀୟ ନୃତ୍ୟ- ଓଡ଼ିଶୀ ନୃତ୍ୟ,ଭାରତନାଟ୍ୟମ୍, କୁଚିପୁଡ଼ି, କଥାକଲି, ମଣିପୁରୀ ଓ କଥକ ମଧ୍ୟରୁ ଓଡ଼ିଶୀ ନୃତ୍ୟ ଯେ ପ୍ରାଚୀନତମ ନୃତ୍ୟ ତାହା ବିଶ୍ୱବିଖ୍ୟାତ କଳା ସମୀକ୍ଷକ ଗ୍ଲାଡିସ ଫେବ୍ରୀ ସପ୍ରମାଣ ମତ ବ୍ୟକ୍ତ କରି ଯାଇଛନ୍ତି । ତୁଳନାତ୍ମକ ଅଧ୍ୟୟନରେ ଲକ୍ଷ୍ୟ କରିହେବ ଯେ ଓଡ଼ିଶୀ ନୃତ୍ୟର,ଭାବ, ଭଙ୍ଗୀ, ମୁଦ୍ରା ଓ ଠାଣୀ ଅନ୍ୟ ଯେ କୌଣସି ନୃତ୍ୟ ଅପେକ୍ଷା ଅଧିକ ଶାସ୍ତ୍ର ସମ୍ମତ ଓ ସୁରକ୍ଷିତ । ଓଡ଼ିଶୀ ନୃତ୍ୟର ପ୍ରାଚୀନତାରୁ ପ୍ରମାଣିତ ହୁଏ ଯେ, ଓଡ଼ିଶାରେ ବହୁ ପ୍ରାଚୀନ କାଳରୁ ଗୀତ ବାଦ୍ୟ ନୃତ୍ୟର ପରମ୍ପରା ଥିଲା । ଅଦ୍ୱିତୀୟ ବୀର ତଥା ଭାରତ ବିଖ୍ୟାତ କଳିଙ୍ଗ ସମ୍ରାଟ ଖାରବେଳେ ଯେଉଁ ଇତିହାସ ପ୍ରସିଦ୍ଧ ହାତୀ ଗୁମ୍ଫା ଶିଳା ଲେଖା ଖୋଦନ କରାଇଯାଇଛନ୍ତି, ସେଥିରୁ ଓଡ଼ିଶାରେ ଯେ ଗୀତ, ବାଦ୍ୟ, ନୃତ୍ୟର ସୁଦୀର୍ଘ ପରମ୍ପରା ଥିଲା ତାହା ସ୍ପଷ୍ଟ ପ୍ରମାଣିତ ହୁଏ । ସମ୍ଭବତଃ ଭାରତବର୍ଷର କୌଣସି ଅଂଶରେ ଗୀତ, ବାଦ୍ୟ, ନୃତ୍ୟର ଏପରି ଲିଖିତ ପ୍ରାଚୀନ ପ୍ରମାଣ ନାହିଁ ।

ଓଡ଼ଶୀ ନୃତ୍ୟର ପ୍ରାଚୀନତା ବିଷୟ ପର୍ଯ୍ୟାଲୋଚନା କଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ ଓଡ଼ିଶୀ ନୃତ୍ୟ ଆଦ୍ୟରୁ ଏକ ସ୍ୱୟଂ ସମ୍ପୂର୍ଣ୍ଣ ନୃତ୍ୟ ରୂପେ ବିକାଶ ଲାଭ କରିଥିଲା ଅଥବା କ୍ରମ ପର୍ଯ୍ୟାୟରେ ତା'ର ବିକାଶ ସାଧିତ ହୋଇଥିଲା । ଏଠାରେ ସାହିତ୍ୟ, ସଙ୍ଗୀତ, କାରୁକଳାର କ୍ରମ ବିକାଶ ବିଚାର୍ଯ୍ୟ । ଲୋକ ସାହିତ୍ୟ, ଲୋକ ସଙ୍ଗୀତ, ଲୋକକଳା ପ୍ରଭୃତି ବିଭାଗଗୁଡ଼ିକ କାଳକ୍ରମେ ମାର୍ଜିତ ରୂପ ଧାରଣ କରି ଆଜିର ସାହିତ୍ୟ, ସଙ୍ଗୀତ ଇତ୍ୟାଦିରେ ପରିଣତ ହୋଇଛି । ଛଉନୃତ୍ୟର ଆଦ୍ୟ ଅବସ୍ଥା ଏହିପରି ଏକ ଲୋକନୃତ୍ୟର ଯେ ପର୍ଯ୍ୟବେଶିତ ଥିବ ଏହା କହିବା ବାହୁଲ୍ୟ ମାତ୍ର । ମାତ୍ର ପାର୍ଥକ୍ୟ ଏତିକି ଯେ, ଓଡ଼ିଶୀ ନୃତ୍ୟ ବହୁ ପରୀକ୍ଷା ନିରୀକ୍ଷା ପରେ ଲୋକନୃତ୍ୟରୁ ଶାସ୍ତ୍ରୀୟ ନୃତ୍ୟରେ ପରିଣତ ହୋଇ ପାରିଛି, ବହୁଳ ପ୍ରଚାର ପୃଷ୍ଠ ପୋଷକତାର ଓ ନିୟମିତ ଅଭ୍ୟାସ ଅଭାବରୁ ଛଉନୃତ୍ୟ, ଲୋକନୃତ୍ୟର ନିଗଡ଼ରୁ ସମ୍ପୂର୍ଣ୍ଣ ମୁକ୍ତି ପାଇନାହିଁ କିମ୍ବା ଶାସ୍ତ୍ରୀୟ ଶୃଙ୍ଖଳା ମଧ୍ୟରେ ସମ୍ପୂର୍ଣ୍ଣ ଆବଦ୍ଧ ହୋଇ ପାରିନାହିଁ ।

ଛଉନୃତ୍ୟକୁ କେତେକ ଲୋକନୃତ୍ୟ ଓ ଆଉ କେତେକ ଶାସ୍ତ୍ରୀୟ ନୃତ୍ୟ ମଧ୍ୟରେ ଅନ୍ତର୍ଭୁକ୍ତ କରିଥାନ୍ତି । ଆଲୋଚକମାନଙ୍କ ମନରେ ଏପରି ଭ୍ରମ ଜାତ ହେବା ସ୍ୱାଭାବିକ । କାରଣ ଛଉ ନୃତ୍ୟ, ଏହି ଦୁଇଟି ନୃତ୍ୟର ଉପାଦାନ ଏ ପର୍ଯ୍ୟନ୍ତ ବହନ କରିଛି । ଲୋକ ନୃତ୍ୟ ଓ ଶାସ୍ତ୍ରୀୟ ନୃତ୍ୟର ଚମତ୍କାର ସମନ୍ୱୟ ହେଉଛି ଏହି ଛଉନୃତ୍ୟ ।

କେତେକ ଆଲୋଚକ ଚଉନୃତ୍ୟକୁ "ସମର ନୃତ୍ୟ" ରୂପେ ମଧ୍ୟ ଅଭିହିତ କରିଥାନ୍ତି । ଓଡ୍ର ପାଇକଙ୍କ ଖଣ୍ଡାଖେଳରୁ ଛଉନୃତ୍ୟର ଉଦ୍‌ଭବ ହୋଇଛି ବୋଲି ବହୁ ଛଉନୃତ୍ୟ ଗୁରୁ ଓ ଆଲୋଚକମାନେ ମତ ପୋଷଣ କରନ୍ତି । "ଛଉ" ନାମକରଣ, ଛଉନୃତ୍ୟର ସାମରିକ ପୃଷ୍ଠଭୂମି ସମ୍ପର୍କରେ ଅଧିକ ପ୍ରାମାଣିକ ତଥ୍ୟ ଯୋଗାଇଥାଏ । "ସୈନ୍ୟଛାଉଣୀର" "ଛାଉଣୀ" ଶବ୍ଦରୁ "ଛଉ" ଉଦ୍‌ଭବ ହୋଇଥିବା ବିଷୟ ଯଦି ସ୍ୱୀକାର କରାଯାଏ ତେବେ "ଛଉନୃତ୍ୟ"ର ସାମରିକ ଆଭିମୁଖ୍ୟକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ବିଶାଳ ଉତ୍କଳ ,ସାମ୍ରାଜ୍ୟର ସୀମାନ୍ତ ସୁରକ୍ଷାବାହିନୀଙ୍କ ମନୋରଞ୍ଜନ ଓ ରଣାଭ୍ୟାସର ପ୍ରେରଣା ନିମନ୍ତେ ଏପରି ନୃତ୍ୟର ପରିକଳ୍ପନା କରାଯାଇଥାଇପାରେ । ନୃତ୍ୟର ସମର–କଳା–ସଂଯୋଜନାର ସମୀଚୀନତା ସମ୍ପର୍କରେ କେତେକ ପ୍ରଶ୍ନ ଉତ୍‌ଥାପନ କରିପାରନ୍ତି । ସଙ୍ଗୀତ ପରି ନୃତ୍ୟ ଏକ ସୂକ୍ଷ୍ମ କଳା ବୋଲି ଆମର ପାରମ୍ପରିକ ବିଶ୍ୱାସ, ମାତ୍ର ଆମେ ଭୁଲି ଯାଉଁ ଯେ ବିଭିନ୍ନ ରସ ଉଦ୍ରେକ କରିବା ପ୍ରତ୍ୟେକ କଳାର ମୌଳିକ ଧର୍ମ । ସମ୍ଭବତଃ ସମର ବିଳାସୀ ଯୁଦ୍ଧକୌଶଳୀ, ଓଡ଼ିଆ ଜାତି ଯୋଦ୍ଧା ପାଇକ ସେନାଙ୍କ ସମର–ଚେତନା ଜାଗ୍ରତ କରିବା ନିମନ୍ତେ ଓ ତା'ର ଧମନୀରେ ବୀରରସ ସଞ୍ଚାର କରିବା ପାଇଁ ଏପରି ଏକ ବୀରତ୍ୱ–ବ୍ୟଞ୍ଜକ ନୃତ୍ୟର ପରିକଳ୍ପନା କରିଛି । ଓଡ଼ିଶାର ସହସ୍ର ବର୍ଷ ବ୍ୟାପୀ ସାମରିକ ପ୍ରତିପତ୍ତି ଓ ଓଡିଶା ସମ୍ରାଟମାନଙ୍କ ବିପୁଳ ରାଜ୍ୟ–ଜୟ ବିଚାର କଲେ ଏପରି ପରି ଜନାକୁ ଅମୂଳକ ବୋଲି କହି ହେବ ନାହିଁ ।

ଉତ୍କଳୀୟ ଛଉନୃତ୍ୟର ବିଭିନ୍ନ ବିଭବ ଅନୁଧ୍ୟାନ କଲେ ଏହା କିପରି ବୀରତ୍ୱ– ବ୍ୟଞ୍ଜକ ତାହା ସହଜରେ ଉପଲବ୍ଧି କରିହେବ । ଏହି ଲେଖକ ୧୯୮୮ ମସିହାର ସ୍ମରଣୀକାରେ ପ୍ରକାଶିତ "ମୟୂରଭଞ୍ଜର ଚଉନୃତ୍ୟ ଏକ ଅଧ୍ୟୟନ" ପ୍ରବନ୍ଧରେ ଏ

ପ୍ରସଙ୍ଗରେ ଯାହା ଲିପିବଦ୍ଧ କରିଥିଲା ତାହା ଏଠାରେ ଉଦ୍ଧାର କରାଯାଇ ପାରେ । "ବିଶାଳ କଳିଙ୍ଗର ସାମରିକ ଐତିହ୍ୟର ବିପୁଳ ବିଭବ ଏହି ଛଉନୃତ୍ୟର ଛବେ ଛବେ ଯେ ବିଭାସିତ ହୋଇଛି ତାହା ନିର୍ବିବାଦରେ କୁହାଯାଇପାରେ । ଏହି ନୃତ୍ୟର ଦ୍ରୁତ ପଦକ୍ଷେପ, ବୀରତ୍ୱ ବ୍ୟଞ୍ଜକ ପେଶୀ ସଞ୍ଚାଳନ, ଶୌର୍ଯ୍ୟପୂର୍ଣ୍ଣ ଭଙ୍ଗୀ ଓ ଠାଣୀ ପ୍ରଭୃତି ଆଦିମ ଯୁଦ୍ଧ–ଭାବଗୁଡ଼ିକ ଅବିକୃତ ଭାବେ ସୁରକ୍ଷିତ ହୋଇ ରହିଛି । ଶିଳ୍ପୀମାନଙ୍କ ଦ୍ରୁତ ପଦକ୍ଷେପ, ଗମ୍ଭୀର ହୁହାଣୀ, ଶୌର୍ଯ୍ୟପୂର୍ଣ୍ଣ ଭଙ୍ଗୀ, ଯୁଦ୍ଧାସ୍ତ୍ରର ତୀବ୍ରଚାଳନା, ସ୍କନ୍ଧ–ବାହୁ– ମାଂସପେଶୀର ଦ୍ରୁତ ପ୍ରସାରଣ ମାଧ୍ୟମରେ ଚରିତ୍ରମାନଙ୍କ ଅନ୍ତର୍ନିହିତ ଉଲ୍ଲାସ, ଉତ୍ତେଜନା ଓ ଉଦ୍‌ବେଗ ପ୍ରକାଶ ପାଏ । ଓଡ଼ିଆ ଜାତି ଖଣ୍ଡଗିରି, ଉଦୟଗିରିର ପ୍ରସ୍ତର ଗାତ୍ରରେ କୋଣାର୍କ, ଭୁବନେଶ୍ୱରର କଳାସ୍ଥାପତ୍ୟରେ ଯୁଦ୍ଧ ଦୃଶ୍ୟ, ଢାଲ ତରବାରୀର ଦୃଶ୍ୟ, ସମରାଭିଯାନର ଦୃଶ୍ୟ ଅଙ୍କନ କରି ଉତ୍କଳର ବିରାଟ ସାମରିକ– ଗୌରବ ଯେପରି ଲିପିବଦ୍ଧ କରିଯାଇଛନ୍ତି, ଛଉନୃତ୍ୟ ପରି ଏକ ଦୃଶ୍ୟ– କଳା ମାଧ୍ୟମରେ ସେହିପରି ତାହାକୁ ଜୀବନ୍ତ କରି ରଖିଯାଇଛନ୍ତି । ଓଡ଼ିଶାର ପୂର୍ବୋକ୍ତ ପ୍ରସ୍ତର ଓ ମନ୍ଦିର ଗାତ୍ରରେ ସାମରିକ ଦୃଶ୍ୟର ଯେଉଁ ଭଙ୍ଗୀ, ଠାଣୀ, ମୁଦ୍ରା ପରିଲକ୍ଷିତ ହୁଏ, ତାହା ମୟୂରଭଞ୍ଜ ଛଉ ନୃତ୍ୟରେ ପ୍ରାୟ ସୁରକ୍ଷିତ ।"

ଛଉନୃତ୍ୟର ପ୍ରକାର– ଭେଦ ଅନୁଶୀଳନରୁ ଜଣାଯାଏ ଯେ କେତେକ ଛଉନୃତ୍ୟରେ ସମରାଭ୍ୟାସ କୌଶଳର ଚମତ୍କାର ବିନ୍ୟାସ ଘଟିଛି । ଉଦାହରଣ ସ୍ୱରୂପ "ଶବର ଟୋକା" "ନଟରାଜ" "କିରାତ ଅର୍ଜୁନ" "ଗରୁଡ଼ ବାହନ" ଇତ୍ୟାଦି ନିଆଯାଇ ପାରେ । "ଶବର ଟୋକା" ଛଉନୃତ୍ୟରେ ଜଣେ ସ୍ୱାସ୍ଥ୍ୟବାନ ଶବର ଯୁବକଟିଏ ହତିଆର ତୀକ୍ଷ୍ଣ କରିବାଠାରୁ ବର୍ଛା ସାହାଯ୍ୟରେ ହିଂସ୍ର ବ୍ୟାଘ୍ରକୁ ଶିକାର କରି କାନ୍ଧରେ ପକାଇ ଆନନ୍ଦ ଉଲ୍ଲାସରେ ଫେରିବା ପର୍ଯ୍ୟନ୍ତ ଯେଉଁସବୁ ଅଭିନୟ ପ୍ରଦର୍ଶନ କରେ ସେଥିରେ ଜଣେ ଆକ୍ରମଣକାରୀ ଦୁର୍ଦ୍ଦାନ୍ତ ସୈନିକର ସମସ୍ତ ସମର କୌଶଳ ପ୍ରଦର୍ଶିତ ହୋଇଥାଏ ।

ଛଉନୃତ୍ୟର ଶିଳ୍ପୀମାନଙ୍କୁ ଅଙ୍ଗଭଙ୍ଗୀ, ମୁଦ୍ରା, ଇତ୍ୟାଦି ସମ୍ପର୍କରେ ଯେଉଁ ତାଲିମ ଦିଆଯାଏ ତାହାକୁ ଉପଲମ୍ଫ ବା ଉଫୁଲି କୁହାଯାଏ । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ଯେ ଓଡ଼ିଶାର ଛଉନୃତ୍ୟରେ ପ୍ରଚଳିତ ପରିଭାଷାଗୁଡ଼ିକ ଏହି ଓଡ଼ିଆ ମାଟିରୁ ସୃଷ୍ଟି ଏବଂ ଏହି ପରିଭାଷାରେ ଏହି ନୃତ୍ୟର ପ୍ରାଚୀନତା ଓ ସାମରିକ ବିଭବ ଲକ୍ଷ୍ୟ କରିହେବ । "ହତିଆର ଧରା" ନାମ କରଣରୁ ଏହି ନୃତ୍ୟରୁ ସାମରିକ ପୃଷ୍ଠଭୂମି ବେଶ୍ ଲକ୍ଷଣୀୟ । ନୃତ୍ୟର ଆଦ୍ୟ ଅଂଶରେ ଯେଉଁ ଚୌକ ଓ ଧାରଣା ପ୍ରଦର୍ଶନ କରାଯାଏ ଏବଂ ପରେ ନୃତ୍ୟାଂଶରେ ଯେଉଁ ଚାଲି, ଉଫୁଲି, ଟବକା ପ୍ରଭୃତିର ସାହାଯ୍ୟ ନିଆଯାଏ ତାହା କେବଳ ବୀରତ୍ୱ – ବ୍ୟଞ୍ଜକ ନୁହେଁ, ସମରାଭ୍ୟାସୀ ଓଡ଼ିଆ ପାଇକଙ୍କ ବଳିଷ୍ଠ ଗ୍ରୀବା, ଲୌହ ବାହୁ, ବକ୍ଷ, ସିଂହ କଟୀ, ଶକ୍ତିଶାଳୀ ଜାନୁ ଓ ବଳିଷ୍ଠ ପାଦର ରୋମାଞ୍ଚକର ଭଙ୍ଗୀ– ପ୍ରଦର୍ଶନ । ଏକପଦୀ ଚାଲିଠାରୁ ଆରମ୍ଭ କରି ବାଜା ଚାଲି, ଆକାଶ ଗତି, ସୁରଗତି ପର୍ଯ୍ୟନ୍ତ ସବୁଥିରେ ଦୁର୍ଦ୍ଦଶ ପାଇକର ଅଙ୍ଗ ବିନ୍ୟାସ, ମୁଦ୍ରା ଓ ଠାଣୀ ଦେଖିବାକୁ ମିଳେ ।

ଛଉନୃତ୍ୟ ଶିଳ୍ପୀର ଚାଲିକୁ ବେଶୀ ଲାଳିତ୍ୟପୂର୍ଣ୍ଣ ଓ ଆକର୍ଷଣୀୟ କରେ ଉଫୁଲି ଓ ଟବକା । ଏହି ଉଫୁଲି ଓ ଟବକାର ବ୍ୟବହାର ଯୋଗୁଁ ଭାରତୀୟ ନୃତ୍ୟ– ସମ୍ପ୍ରଦାୟ ମଧ୍ୟରେ ଛଉନୃତ୍ୟ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି । ସର୍ବମୋଟ ଛତିଶ ପ୍ରକାର ଉଫୁଲି ଓ 'ନ' ପ୍ରକାର ଟବକା ବ୍ୟବହୃତ ହୁଏ । ଚିଙ୍ଗୁଡ଼ି ଛିଟିକା, ଢେଙ୍କି କୁଟା, ମଥାଝଡ଼ା ପ୍ରଭୃତି ଉଫୁଲି ଏବଂ ଘୋଡ଼ା ଟବକା, ବାଘଡୁମା, ଲହରା ଟବକା, ଢେଉ ଟବକା ପ୍ରଭୃତି ଟବକାରେ ଅଭିନେତାର ଯେଉଁ ଭଙ୍ଗୀ, ମୁଦ୍ରା, ଠାଣୀ ପ୍ରଦର୍ଶିତ ହୁଏ ତାହା ବୀର– ରୁଦ୍ର ଭାବ ବ୍ୟଞ୍ଜକ ।

ଆଦ୍ୟରୁ ଏପର୍ଯ୍ୟନ୍ତ ଛଉନୃତ୍ୟରେ ବ୍ୟବହୃତ ହେଉଥିବା ବାଦ୍ୟଯନ୍ତ୍ର ମଧ୍ୟରେ ଧୁମସା, ଢୋଲ, ମହୁରୀ ଇତ୍ୟାଦି ପ୍ରଧାନ । ଛଉନୃତ୍ୟରେ ତାଳ– ଲୟ ପାଇଁ ଧୁମସା ବ୍ୟବହୃତ ହେଉଥିଲେ ମଧ୍ୟ ଏହାର ଧ୍ୱନି ହେଉଛି ରଣବାଦ୍ୟର ଧ୍ୱନି । ଧୁମସା ଧ୍ୱନିର ପ୍ରକମ୍ପନ ସହିତ ଛଉ ନର୍ତ୍ତକର ଅଙ୍ଗଚାଳନା, ମୁଦ୍ରା ପ୍ରକାଶ, ଠାଣୀ ପ୍ରଦର୍ଶନର ସମନ୍ୱୟ ଲକ୍ଷ୍ୟ କଲେ ଯେ କେହି ବିଶ୍ୱାସ କରିବ ଯେ ଏହି ବାଦ୍ୟ ଯନ୍ତ୍ରଟି ବୀରଭାବ ପ୍ରକାଶ ପାଇଁ ଓ ଛଉନୃତ୍ୟ ଶିଳ୍ପୀଙ୍କ ହୃଦୟରେ ବୀର ରସ ସଞ୍ଚାର କରିବା ନିମନ୍ତେ ଅଭିପ୍ରେତ । ଦର୍ଶକଙ୍କ ମନରେ ଧୁମ୍‌ସାର ବାଦ୍ୟ– ଧ୍ୱନି ରସ ସଞ୍ଚାର କରିବାରେ କିପରି ମୁଖ୍ୟଭୂମିକା ଗ୍ରହଣ କରେ ତାହା ପ୍ରତ୍ୟକ୍ଷଦର୍ଶୀ ଅନୁଭବୀମାନେ ଅନୁଭବ କରିଥିବେ ।

ଓଡିଶାର ସାମାଜିକ, ଐତିହାସିକ ଓ ଆଧ୍ୟାତ୍ମିକ ଇତିହାସର ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ ଓଡ଼ିଶାର ଆଦ୍ୟ ସଂସ୍କୃତି ହେଉଛି ଶବର ସଂସ୍କୃତି । ଓଡ଼ିଆଙ୍କ ପ୍ରାଣର ଦେବତା ଶ୍ରୀ ଜଗନ୍ନାଥ କେବଳ ଶବରୀ ନାରାୟଣ ରୂପେ ପ୍ରସିଦ୍ଧି ଲାଭ କରିନାହାନ୍ତି, ଶବର ସଂସ୍କୃତିର ସ୍ମାରକ ବହନ କରି ଆର୍ଯ୍ୟ ଓ ତଥାକଥିତ ଅନାର୍ଯ୍ୟମାନଙ୍କ ମଧ୍ୟରେ ସମନ୍ୱୟ ସେତୁ ରୂପେ କାର୍ଯ୍ୟ କରି ଆସିଛନ୍ତି ଏବଂ ପ୍ରାକ୍ ବୈଦିକ ଯୁଗ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଆସିଛନ୍ତି । ସୁତରାଂ ଛଉନୃତ୍ୟର ଐତିହାସିକ ବିବର୍ତ୍ତନ ସମ୍ପର୍କରେ ଶ୍ରୀ ଜଗନ୍ନାଥ ଆଧ୍ୟାତ୍ମିକ ତତ୍ତ୍ୱ ମୂଲ୍ୟବାନ ତଥ୍ୟ ଯୋଗାଇ ପାରେ । ଛଉନୃତ୍ୟ ହେଉଛି ବିଶ୍ୱର ଏକମାତ୍ର ନୃତ୍ୟ ଯେଉଁଥିରେ ମାନବ ଓ ପ୍ରକୃତି ସମନ୍ୱିତ ହେବା ସଙ୍ଗେ ସଙ୍ଗେ ଉଭୟ ମଧ୍ୟରେ ସମୀକରଣ ଭାବ ଚରମ ସୀମାକୁ ସ୍ପର୍ଶ କରିଛି । ବିଭବଶାଳୀ ଉତ୍କଳର ଶୌର୍ଯ୍ୟ, ବୀର୍ଯ୍ୟପୂର୍ଣ୍ଣ ଅମର ଇତିହାସ ସୃଷ୍ଟି କରିବାରେ ଯେଉଁ କେତୋଟି କୀର୍ତ୍ତି କୃତିତ୍ୱ ଅର୍ଜନ କରିଛି ତନ୍ମଧ୍ୟରେ ଛଉନୃତ୍ୟ ଅନନ୍ୟ ସାଧାରଣ ।

---

ରିଡ଼ର ଓ ବିଭାଗୀୟ ମୁଖ୍ୟ,
ଓଡ଼ିଆ ବିଭାଗ,
ଫକୀର ମୋହନ ମହାବିଦ୍ୟାଳୟ,
ବାଲେଶ୍ୱର ।

# ପୃଥିବୀ ପ୍ରସିଦ୍ଧ ରଣପା ନୃତ୍ୟ ଓ ଗବେଷକ ଭଗବାନ ସାହୁ

● ଶ୍ରୀ ସହଦେବ ପାଣିଗ୍ରାହୀ

ସଂସ୍କୃତି ତତ୍ତ୍ୱ ଏକ ଜାତିଗତ ବା ସାମାଜିକ ବ୍ୟାପାର । ଏହା ଏକ ପାରମ୍ପରିକ ଚେତନା । କୌଣସି ଜାତିର ଜୀବନ ସମସ୍ୟା ସହିତ ଏହି ସଂସ୍କୃତି ଓତପ୍ରୋତ ଭାବେ, ଜଡ଼ିତ ହୋଇଥାଏ । ପୃଥିବୀ ପୃଷ୍ଠର ସମସ୍ତ ଜାତି କେତେକ ମୌଳିକ ନୀତି ଅନୁସରଣ କରିଥାନ୍ତି । ଏହି ମୌଳିକ ନୀତିହିଁ ନିର୍ଦ୍ଦିଷ୍ଟ ଜାତିର ସଂସ୍କୃତି । ସେହିପରି ମନୁଷ୍ୟ ଅନୁଭବ ଜ୍ଞାନର ପରିପ୍ରକାଶ କରେ ଲୋକ କଳା ମାଧ୍ୟମରେ ଏହି ଲୋକ କଳା ଲୋକଙ୍କ ମୌଳିକ ସୃଷ୍ଟି ।

ଓଡ଼ିଶାର ଲୋକ କଳା ପରମ୍ପରାରେ ଗୁଡ଼ିଏ ଲୋକ ନୃତ୍ୟ ରହିଛି । ସେଥିମଧ୍ୟରୁ ଗଞ୍ଜାମରେ ଲୋକ ନୃତ୍ୟର ସଂଖ୍ୟା ଅଧିକ । ଏହି ଲୋକ ନୃତ୍ୟ ମଧ୍ୟରେ ରଣପା ନୃତ୍ୟର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଏହି ରଣପା ନାଚ ଗଞ୍ଜାମର ଆଦିବାସୀ ଅଞ୍ଚଳରେ ବିଶେଷ ଆଦୃତ ହେଉଥିଲା । ଏହି ନୃତ୍ୟ ବାଡ଼ିରେ ସମତଳ ଜାଗାରେ ହୁଏ । ନୃତ୍ୟକାରୀମାନେ ବାଡ଼ିରେ ଠିଆ ହୋଇ ଭାରସାମ୍ୟ ରକ୍ଷା କରି ତାଳେ ତାଳେ, ବିଭିନ୍ନ ଭଙ୍ଗୀରେ ନୃତ୍ୟ କରନ୍ତି । ନାଚ ପର୍ବର ଧମାଲ, ଘୁଙ୍ଗୁ ଓ ମହୁରୀ ବାଜେ ଓ ଶ୍ରୀକୃଷ୍ଣଙ୍କ ମାହାତ୍ମ୍ୟ ନେଇ ରଚିତ ଗୀତ ଗାନ କରାଯାଏ । ଏହାର ଇତିହାସ ସମ୍ପର୍କେ ପୁରୁଣା କାଳିଆ ଲୋକେ କହନ୍ତି ଯେ ଭଗବାନ ଶ୍ରୀକୃଷ୍ଣ ତାଙ୍କର ଅନ୍ୟ ସହକର୍ମୀ ଗୋପାଳମାନଙ୍କ ସହ ଗାଈ ଚରାଇବା ସମୟରେ ବିଭିନ୍ନ ଭଙ୍ଗୀରେ ବାଡ଼ି ଉପରେ ତାଳେ ତାଳେ ନୃତ୍ୟ କରୁଥିଲେ । ନୃତ୍ୟକାରମାନେ ମୁଣ୍ଡରେ ପଗଡ଼ି, ଧୋତି ଓ କାବା ପିନ୍ଧନ୍ତି । ଗୋଡ଼ରେ ବାଜୁଣୀ ବଳା ପିନ୍ଧି ସେମାନଙ୍କ ଉଚ୍ଚତା ସହ ସମାନ ଉଚ୍ଚରେ ଭୂମିଠାରୁ ପ୍ରାୟ ୧ ଫୁଟ ଉଚ୍ଚରେ ବାଡ଼ି ଉପରେ ଠିଆ ହୋଇ ନୃତ୍ୟ କରାଯାଇଥାଏ । ଏହି ନୃତ୍ୟରେ ବିଭିନ୍ନ ଭଙ୍ଗୀ ଅଛି । ଶ୍ରୀକୃଷ୍ଣଙ୍କ ନୃତ୍ୟ ଭଙ୍ଗୀ, ମୟୂର ନୃତ୍ୟ ଭଙ୍ଗୀ, ଆଦିବାସୀ ନାଚ ଭଙ୍ଗୀ ଓ ମାଙ୍କଡ଼ ଭଙ୍ଗୀ ଯାହାକି ଦର୍ଶକମାନଙ୍କୁ ଆନନ୍ଦ ଓ ଉତ୍ସାହ ପ୍ରଦାନ କରିଥାଏ । ଯେଉଁମାନେ ଏହି ନୃତ୍ୟ କରିବେ ସେମାନଙ୍କର ଶାରୀରିକ ଦକ୍ଷତା ଥିବା ଦରକାର । ସ୍ତ୍ରୀମାନେ ଏହି ନୃତ୍ୟ କରନ୍ତି ନାହିଁ । ଯଦି ଅଧିକ ଆକର୍ଷଣୀୟ କରିବାକୁ ନୃତ୍ୟକାରୀ ଦଳ ଚାହିଁବେ ତେବେ ଜଣେ ମହିଳା କେନ୍ଦ୍ର ସ୍ଥାନରେ ଠିଆ ହୋଇ ନାଚିବେ ଓ ଗୀତ ଗାଇବେ । ପୁରୁଷ ପିଲାମାନେ ବାଡ଼ି ଉପରେ ବିଭିନ୍ନ ଭଙ୍ଗୀରେ ଘେରା ମାରି ନାଚ କରିବେ ।

ନୃତ୍ୟକାରୀମାନେ ବାଡ଼ି ଉପରେ ଭାରସାମ୍ୟ ରକ୍ଷାକରି ନାଚ କଲାବେଳେ ସେମାନେ ଆଦୌ ଖସି ଯାଆନ୍ତି ନାହିଁ ଓ ବେଳେ ବେଳେ ଗୋଟିଏ ବାଡ଼ି ଉପରେ ଭାରସାମ୍ୟ ରକ୍ଷା କରି ନୃତ୍ୟ କରିଥାନ୍ତି । ବାଡ଼ି ଉପରେ ଠିଆ ହୋଇ ଏପରି ଚକ୍ର ଭ୍ରମଣ କରନ୍ତି ଯେ, ଦର୍ଶକ ବୃନ୍ଦ ଚମକୃତ ହୋଇଯାଆନ୍ତି । ଏହି ରଣପା ନୃତ୍ୟ ସାଧାରଣତଃ ହୋଲି ପର୍ବରେ କରାଯାଇଥାଏ । ଯଦିଓ ଏହା ଗଞ୍ଜାମ ଜିଲ୍ଲାର ଏକ ବିଖ୍ୟାତ ଲୋକନୃତ୍ୟ ଥିଲା ତାହା ବହୁ ବର୍ଷ ହେଲା ଲୁପ୍ତ ପ୍ରାୟ ହୋଇ ଆସୁଥିବା ସମୟରେ ଗବେଷକ ପଦ୍ମଶ୍ରୀ ଭଗବାନ ସାହୁ ବହୁ ଆଦିବାସୀ ଅଞ୍ଚଳ ବୁଲି ବିଭିନ୍ନ ଲୋକଙ୍କଠାରୁ ବିଭିନ୍ନ କଥା ସଂଗ୍ରହ କରି ଏହି ରଣପା ନୃତ୍ୟର ଢାଞ୍ଚା ପକାଇଥିଲେ । ଯେଉଁ ନୃତ୍ୟ ଢାଞ୍ଚା ପୁରୁଣା ସଂସ୍କୃତିକୁ ବଜାୟ ରଖିବା ସହିତ ଆଜିକାଲିର ଲୋକଙ୍କ ଆମୋଦ ଦେଇ ପାରିବ । ଏହି ନୃତ୍ୟରେ ଢୋଲ, ତୁରୀ, ସାହାଣୀ, କାହାଳୀ ଓ ବଂଶୀ ଆଦି ବାଜା ଯୋଡ଼ି ଅଧିକ ଆକର୍ଷଣୀୟ କରିଛନ୍ତି । ନୃତ୍ୟକାରୀମାନେ ରଣପା ଉପରେ ଚାଲିବା ଡେଇଁବା କାର୍ଯ୍ୟ ଏତେ ନିର୍ଭୟରେ କରନ୍ତି ଯେ, ଯେ କେହି ଆକର୍ଷିତ ହୋଇଯିବ । ନୃତ୍ୟ ସମୟରେ ଗବେଷକ ଶ୍ରୀ ସାହୁ ଏପରି ଢୋଲ ବଜାଇ ଆକାଶ ଭଉଁରୀ ମାରନ୍ତି ଯେ ତାଙ୍କର ଢୋଲ ବୁଲା ଦେଖିବାକୁ ଲୋକେ ଅପଲକ ନେତ୍ରରେ ଚାହିଁ ରହିଥାନ୍ତି । ଯଦିଓ ଶ୍ରୀ ସାହୁଙ୍କର ବୟସ ୭୫ ବର୍ଷ ନୃତ୍ୟ ବେଳେ ତାଙ୍କର ଦମ୍ ଦେଖି କେହି ଜଣେ ବର୍ଷୀୟାନ ବ୍ୟକ୍ତି ବୋଲି ଭାବିବେ ନାହିଁ । ଫରାସୀଠାରେ ବିଶ୍ୱ ଲୋକ ନୃତ୍ୟ ମେଳା ହୋଇଥିଲା । ସେହି ମେଳାରେ ଭାରତ ତରଫରୁ ପଦ୍ମଶ୍ରୀ ଭଗବାନ ସାହୁଙ୍କ ଲୋକ ନୃତ୍ୟଦଳ, ଅନ୍ୟାନ୍ୟ ନୃତ୍ୟ ସହିତ ରଣପା ନୃତ୍ୟ ପ୍ରଦର୍ଶିତ ହୋଇଥିଲା । ସେଠିକାର ଲୋକେ ରଣପା ନୃତ୍ୟକୁ ଏତେ ପସନ୍ଦ କଲେ ଯେ ଯେଉଁ ସ୍ଥାନରେ ତାଙ୍କ ଦଳ ନୃତ୍ୟାଦି ପରିବେଷଣ କରନ୍ତି ସେଠାକୁ ଲୋକେ ବହୁଳ ସଂଖ୍ୟାରେ ଯାଇ ନୃତ୍ୟ ଆରମ୍ଭର ବହୁ ପୂର୍ବରୁ ଜମା ହୋଇଯାନ୍ତି ଓ ରଣପା ନୃତ୍ୟ ଶେଷ ହେଲେହେଁ ସେଠାକୁ ଯାଆନ୍ତି । ଏହି ଲୋକ ନୃତ୍ୟ ଦଳ ପୃଥିବୀର ବିଭିନ୍ନ ସ୍ଥାନ ଯଥାː– ସିରିଆ, ଆବୁଧାବି, ୟେମେନ, ଲଣ୍ଡନ, ମରୋକ୍କ, ଫ୍ରାନ୍ସ ଆଦି ସ୍ଥାନରେ ନୃତ୍ୟ ପ୍ରଦର୍ଶନ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ରଣପା ନାଚଟି ବହୁଳଭାବେ ଆଦୃତ ହୋଇପାରିଛି । ଏହି ନୃତ୍ୟରେ ବାଡ଼ି ଉପରେ ଭାରସାମ୍ୟ ରକ୍ଷା କରି ବିଭିନ୍ନ ଭଙ୍ଗୀରେ ନାଚ କରିବା ଏକ ଦୁଃସାହାସିକ କାର୍ଯ୍ୟ ହେଲେ ହେଁ, କଳାକାରମାନଙ୍କର ସାଧନା ପ୍ରଶଂସନୀୟ ।

ପ୍ରଧାନ ଶିକ୍ଷକ,
ସୁନ୍ଦରେଶ୍ୱର ହାଇସ୍କୁଲ, ସୁନ୍ଦରପୁର ।

# ତୁ ପରା ଓଡ଼ିଆ ବୀର

● ଶ୍ରୀ କମଳାକାନ୍ତ ମହାପାତ୍ର

ବିଜେତା ଯେଉଁଠି ହାର ମାନି ଥିଲା
ଦୟାର ପାଣି ଲାଲ କରିଥିଲା
ତା' ଛାତିର ରକତେ, ଏ ଜାତିର ପାଇଁକି
ଯେ, ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ପରା ଓଡ଼ିଆ ବୀର ।୧।

ଧଉଳିଟା ଅଛି
ସବୁ ସେ ଦେଖୁଛି
ଏ ମାଟିର ପିଲାକୁ ଠିକ୍ ସେ ଚିହ୍ନିଛି
କଟିଯିବ ପଛେ ନୁଆଁଇବ ନାହିଁ
କେବେ ଶତ୍ରୁର ପାଖେ ଶିର
ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ପରା ଓଡ଼ିଆ ବୀର ।୨।

ଏ ମାଟିର ସୀମା କାଟିଥିଲା ସିଏ
ଗଙ୍ଗାଠୁ ଗୋଦାବରୀ
ଏମିର ଥିଲା ସେ ବୈରୀ ଥିଲା ସେ
ଅରାତିର ରଣେ
ଅଛି ଖଣ୍ଡଗିରି ସବୁ ସେଇ ଜାଣେ
ସେ ସବୁ କହିବ, ତାକୁ ହିଁ ପଷ୍ଟର
ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ସେଇ ଓଡ଼ିଆ ବୀର ।୩।

ମାଲିକ ଯେଉଁଠି ସେବକର ପାଇଁ
ସମର କ୍ଷେତ୍ରେ ଯାଏ ଆଗେ ଧାଇଁ
ଧନ୍ୟ ସେ ଦେଶ, ଧନ୍ୟ ସେ ରାଜା
ତାଙ୍କର ବେଶ ପରିଚୟ ଶ୍ରେଷ୍ଠ ଯାର
ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ପରା ଓଡ଼ିଆ ବୀର ।୪।

ମୁଖଶାଳା ଯହିଁ ମନ୍ଦିରକୁ ଗିଳେ
ପ୍ରତିମା ଯାର ଜୀବନ୍ତକୁ ବଳେ
ସ୍ମୃତି ସେ କୋଣାର୍କ ଓଡ଼ିଆ ଶିଳ୍ପୀର
ପଥର କହିବ ଇତିହାସ ତା'ର
ଅଦ୍ୱିତୀୟ ବିଶ୍ୱେ ଥିଲା ନିର୍ମାଣେ
କୁଶଳୀ ଶିଳ୍ପୀ ଯାର
ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁପରା ଓଡ଼ିଆ ବୀର ।୫।

ଦରିଆ ଥିଲାତା ବିଚରଣ ଭୂଇଁ
ସାଥେ ଉତ୍କଳ ବୈଭବ ନେଇ
ନୀଳ ପାରାବାର, ନୀଳ ବୁକୁ ଚିରି
ଲାଗୁଥିଲା ପଣ୍ୟ ପୋତ
ଜାଭା, ସୁମାତ୍ରା, ବାଲି, ସିଂହଳ ଦ୍ୱୀପ ଯାଏ
ଥିଲା ସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ସେଇ ଓଡ଼ିଆ ବୀର ।୬।

ବକ୍ସି ଯାର ଚିର ଦୁର୍ବାର
ଦୁର୍ଦ୍ଦାନ୍ତ ଗତି ଯାର ପାଇକର
ଉଦଣ୍ଡ, ସୁରେନ୍ଦ୍ର ସାଇ ଝୁଣ୍ଟିଆ
ଚଖି ବିଶୋଇ ହୋଇ ଥିଲା ଠିଆ
ପରାଧୀନତାର ଶୃଙ୍ଖଳ ଭାଙ୍ଗି
ମୁକ୍ତି ପାଇଁକି ଅହରହ ଥିଲା ସଂଗ୍ରାମ ଯାର
ଥିଲାସେ କିପରି ବୀର
ତନ୍ତ୍ରୀକୁ ତେଜିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁ ପରା ଓଡ଼ିଆ ବୀର ।୭।

ଏ ମାଟିକୁ ଆଜି ତମେରେ ଉଠାଅ
ବିଶ୍ୱ ଶିଖରେ ନେଇ ପହଞ୍ଚାଅ
ଦାୟାଦ ସଗାରେ ତମେ ଏ ଜାତିର
ଚିର ଗୌରବ ଇତିହାସ ଯାର
ତୁମେ ବି ଏଠି ରଖିଯାଅ କୀର୍ତ୍ତି ନିଜର
ଗର୍ବେ ତୁମକୁ କହୁ ଏ ଜାତିର ଆଗାମୀ ବଂଶଧର

ଥିଲା ସେ କିପରି ବୀର
ତନ୍ତ୍ରୀକୁ ଡେଙ୍କିରେ ଓଡ଼ିଆ ପୁଅ
ଜାତି ନିର୍ମାଣେ ହୁଅ ଆଜି ଆଗଭର
ତୁପରା ଓଡ଼ିଆ ବୀର ।୮।

---

ବଙ୍ଗାଳିସାହି, ତେଲେଙ୍ଗା ବଜାର,
କଟକ ।



ସଚିବାଳୟ ସମ୍ମିଳନୀ କକ୍ଷରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆଦିବାସୀ ଓ ହରିଜନମାନଙ୍କ ଶିକ୍ଷା ସମ୍ପର୍କରେ ବିଭିନ୍ନ ରାଜନୈତିକ ନେତାମାନଙ୍କ ସହିତ ଆଲୋଚନା କରୁଛନ୍ତି (୧୭/୯) ।

# ପୃଥିବୀର ସର୍ବପ୍ରଥମ ଧଳା ବାଘ ସଫାରୀ : ନନ୍ଦନକାନନ

● ବିଭୂତି ଭୂଷଣ ଆଚାର୍ଯ୍ୟ

ବାଘ — ଆମ ଭାରତବର୍ଷର ଜାତୀୟ ପଶୁର ଗୌରବ ଅର୍ଜନ କରିଅଛି । ଦୁଇଟି ଅକ୍ଷରର ସମାରୋହରେ ଗଠିତ ଏହି ଶବ୍ଦଟି ମଧ୍ୟରେ କେତେ ଅଦ୍ଭୁତ ଭୟ, ଅଜଣା ପୁଲକ । ବିଶ୍ୱ ବକ୍ଷରେ ମହାବଳ ବାଘ ସଫାରୀ ଥିବାର ନଜିର୍ ଥାଇପାରେ । କିନ୍ତୁ, ପ୍ରକୃତି କୋଳରେ ଖୋଲା ପରିବେଶରେ ବାଧାବନ୍ଧନହୀନ ଭାବେ ବିଚରଣ କରୁଥିବା ମନୋରମ, ଅତି ସୁନ୍ଦର ଧଳା ବାଘଙ୍କୁ ନେଇ ପରିବେଷ୍ଟିତ ଧଳା ବାଘ ସଫାରୀ ଅନ୍ୟତ୍ର ଦୁର୍ଲଭ । ଏହି ଅସମ୍ଭବକୁ ସମ୍ଭବ କରିବାର ଗୌରବ ଅର୍ଜନ କରିଛି ଓଡ଼ିଶାର ନନ୍ଦନକାନନ ବନ୍ୟପ୍ରାଣୀ ଉଦ୍ୟାନ । ୧୯୬୦ ଡିସେମ୍ବର ୨୯ ତାରିଖରେ ଏହି ଚିଡ଼ିଆଖାନାର ଜନ୍ମ । ୧୯୮୪ରେ ଉଦ୍‌ଘାଟିତ ନନ୍ଦନକାନନ 'ସିଂହ ସଫାରୀ' ପରେ ୧୯୯୧ ଅକ୍ଟୋବର ପହିଲାରେ ଉନ୍ମୋଚିତ ବିଶ୍ୱର ସର୍ବପ୍ରଥମ ଧଳା ବାଘ ସଫାରୀ ଅନ୍ୟ ଏକ ମାଇଲ୍ ଖୁଣ୍ଟ । ପ୍ରକୃତିର ସବୁଜିମା ମଧ୍ୟରେ ଧଳା ବାଘର ଦର୍ପିତ ଚେହେରା, ସୁନ୍ଦର ଠାଣି କି ମନୋଲୋଭା ।

## ଧଳା ବାଘର ଜନ୍ମଜାତକ :

ବିଶ୍ୱ ବକ୍ଷରେ ଆମ ଭାରତବର୍ଷ ହିଁ ଧଳା ବାଘର ପ୍ରକୃତ ଜନ୍ମସ୍ଥଳୀର ମର୍ଯ୍ୟାଦା ଅର୍ଜନ କରିପାରିଛି । ୧୯୫୧ ମସିହା ମେ ମାସରେ ମଧ୍ୟପ୍ରଦେଶର ପୂର୍ବତନ ରେୱା ରାଜ୍ୟର ମହାରାଜା ମାର୍ତ୍ତଣ୍ଡ ସିଂହ ଜଙ୍ଗଲରେ ବିଚରଣ କରୁଥିବା ବେଳେ ୯ ମାସର ଏକ ଧଳା ବାଘ ଛୁଆ ପ୍ରଥମେ ପାଇଥିଲେ । ତତ୍‌ପରେ ତାକୁ ସେ ସଙ୍ଗରେ ଆଣି ନିଜ ରାଜପ୍ରାସାଦରେ ଲାଳନପାଳନ କରି ତା'ର ସ୍ନେହ ନାମ 'ମୋହନ' ରଖିଲା ପରେ ନିକଟସ୍ଥ ଗୋବିନ୍ଦଗଡ଼ ଚିଡ଼ିଆଖାନାକୁ ପଠାଇଦେଲେ । ସେଠାରେ 'ମୋହନ' ସହ ରେୱା ଜଙ୍ଗଲରୁ ଆନୀତ ସାମାନ୍ୟ ରଙ୍ଗର ବାଘୁଣୀ 'ବେଗମ୍' ସହ ସଙ୍ଗମ କରାଯାଇ ୧୯୫୩ରୁ ୧୯୫୬ ମଧ୍ୟରେ ତିନିଥର ପ୍ରସବରେ ୧୦ଟି ବାଘ ଛୁଆ ଜନ୍ମ ନେଇଥିଲେ । କିନ୍ତୁ, ଦୁର୍ଭାଗ୍ୟ ବଶତଃ 'ବେଗମ୍'ର ସବୁତକ ଛୁଆ ସାମାନ୍ୟ ରଙ୍ଗର ଥିଲେ । ଏଥିରେ ଉତ୍ସାହୀ ଓ ଉଦ୍ୟମୀ ରାଜା ମାର୍ତ୍ତଣ୍ଡ ସିଂହ ହତୋତ୍ସାହିତ ନହୋଇ ଅନୁସନ୍ଧିତ୍ସୁ ମନ ନେଇ ନିଜ ଅଟଳ ପ୍ରଚେଷ୍ଟାରେ ଦୃଢ଼ ମନୋନିବେଶ କଲେ । ୧୯୫୮ରେ 'ମୋହନ' ସହ 'ବେଗମ୍'ର ପୁତ୍ରୀ 'ରାଧା' ସାମାନ୍ୟ ରଙ୍ଗର ସଙ୍ଗମର ଫଳ ସ୍ୱରୂପ ସେହି ବର୍ଷ ଅକ୍ଟୋବର ୩୦ରେ 'ରାଧା' ବିଶ୍ୱକୁ ଚମତ୍କୃତ କରାଇ ଏକକାଳୀନ ୪ଟି ଧଳା ବାଘ ଛୁଆଙ୍କୁ ଜନ୍ମ ଦେଲା । ରାଜା ମାର୍ତ୍ତଣ୍ଡ ସିଂହ ଏଥର ବେଶ୍ କୃତିତ୍ୱ ସହକାରେ ନିଜ ପରୀକ୍ଷାରେ ଉତ୍ତୀର୍ଣ୍ଣ ଏବା ସଫଳକାମ ହେଲେ । ଦେଶ ବିଦେଶରେ ଢେର ବି ବାହାବା ପାଇଲେ । ସେହି ୪ଟି ଛୁଆଙ୍କ ମଧ୍ୟରୁ ଗୋଟିଏ ଅଣ୍ଡିରା ଛୁଆ ଓ ୩ଟି ମାଈ ଛୁଆ ଥିଲେ । ସେମାନଙ୍କ ନାମ ଯଥାକ୍ରମେ ରାଜା, ରାଣୀ, ମୋହିନୀ ଓ ସୁକେଶୀ । ପ୍ରଜନନ ନିମନ୍ତେ ଦେଶ ବିଦେଶର ବିଭିନ୍ନ ଚିଡ଼ିଆଖାନାକୁ ଏ ସବୁ ଧଳା ବାଘ ଛୁଆ ରାଜା ପଠାଇଦେଲେ । ପରବର୍ତ୍ତୀ କାଳରେ ଧଳା ବାଘର ପ୍ରକୃତ ଏକ୍ସୁଟିଶାଳ ଗୋବିନ୍ଦଗଡ଼ ଚିଡ଼ିଆଖାନାରୁ ଧଳାବାଘ ନିଶ୍ଚିହ୍ନ ହୋଇଗଲେ ।

## ନନ୍ଦନକାନନ ଜାତୀୟ ଧଳା ବାଘର ଜନ୍ମ ବୃତ୍ତାନ୍ତ :

କଲିକତାସ୍ଥିତ ଆଲିପୁର ଚିଡ଼ିଆଖାନାରୁ 'ଦୀପକ୍' ନାମକ ଏକ ସାମାନ୍ୟ ରଙ୍ଗର ବାଘ ନନ୍ଦନକାନନ ଚିଡ଼ିଆଖାନାକୁ ଅଣାଯାଇଥିଲା । ଏହାର ପିତା 'ପ୍ରଦୀପ' ଓ ମାତା 'ଶିଖା' । ଦୀପକ୍‌ର ଜନ୍ମ ଜୁଲାଇ ୩୧, ୧୯୬୭ ମସିହା । ଦୀପକ୍‌ର ନନ୍ଦନକାନନ ଆଗମନ ପରେ ଶିମିଳିପାଳରୁ ଆନୀତ ସାମାନ୍ୟ ରଙ୍ଗର ବାଘୁଣୀ 'ରାଣୀ' ସହ ତା'ର ସଙ୍ଗମ କରାଯାଇଥିଲା । 'ରାଣୀ' ଗର୍ଭରୁ 'ଗଙ୍ଗା'ର ଜନ୍ମ । ଦୀପକ୍ ଏକ ମହାବଳ ବାଘ ଥିଲା । 'ଦୀପକ୍' ଓ 'ଗଙ୍ଗା' ଅର୍ଥାତ୍ ପିତା-ପୁତ୍ରୀଙ୍କ ମିଳନରୁ ୧୯୮୦ ଜାନୁଆରୀ ୮ରେ ନନ୍ଦନକାନନର ଆବଦ୍ଧ ଚିଡ଼ିଆଖାନା ଗୃହରେ ଅପ୍ରତ୍ୟାଶିତ ଭାବେ 'ଗଙ୍ଗା' ଏକକାଳୀନ ୩ଟି ଧଳା ବାଘ ଛୁଆ ଜନ୍ମ ଦେଇ ସମସ୍ତଙ୍କୁ ଚମତ୍କୃତ ଓ ଆଶ୍ଚର୍ଯ୍ୟାନ୍ୱିତ କରି ଦେଇଥିଲା । ଏମାନଙ୍କ ମିଳନ ଦୁଇଟି ସାମାନ୍ୟ ରଙ୍ଗର ବାଘଙ୍କର ମିଳନ ଥିଲା । ୩ଟି ଛୁଆଙ୍କ ମଧ୍ୟରୁ ୨ଟି ମାଈ ଓ ଗୋଟିଏ ଅଣ୍ଡିରା ଛୁଆ ଥିଲେ । ସେମାନଙ୍କ ନାମ ଅଳକା, ନନ୍ଦା ଓ ଦେବବ୍ରତ । 'ରାଣୀ'ର ପୁତ୍ରୀ 'ଗଙ୍ଗା' ନନ୍ଦନକାନନ ଜାତୀୟ ଧଳା ବାଘର ଜନ୍ମଦାତ୍ରୀ ହୋଇଥିବାରୁ ଶିମିଳିପାଳକୁ ଧଳା ବାଘର 'ଜିନ୍‌ପୁଲ୍' କୁହାଯାଇଥାଏ ।

'ନନ୍ଦା' ଗତ ଅଗଷ୍ଟ ପହିଲା ୧୯୯୧ରେ 'ମହେଶ'ର ଆକ୍ରମଣରେ ଶରବ୍ୟ ହୋଇ ମୃତ୍ୟୁ ବରଣ କରିଛି । ୧୯୮୧ ଡିସେମ୍ବର ୮ରେ

'ଗଙ୍ଗା' ପୁନର୍ବାର ଗର୍ଭବତୀ ହୋଇ ୨ଟି ଧଳା ବାଘ ଛୁଆ ଜନ୍ମ ଦେଲା । ସେମାନଙ୍କ ଶ୍ରଦ୍ଧା ନାମ ଯମୁନା ଓ ପିନାକୀ । 'ଦୀପକ୍' ଓ 'ରାଣୀ'ର ମିଳନରୁ ୫ଟି ପ୍ରସବରେ ରାଣୀ ୧୦ଟି ସାମାନ୍ୟ ରଙ୍ଗର ବାଘ ଛୁଆ ଜନ୍ମ ଦେଇପାରିଥିଲା ।

## 'ଶୁଭ୍ରା'ର ଆଗମନ :

୧୯୭୯ର ଶେଷ ଭାଗରେ ନୂଆ ଦିଲ୍ଲୀସ୍ଥିତ ଜାତୀୟ ଚିଡ଼ିଆଖାନାରୁ ତାଏନା (ନନ୍ଦନକାନନ ନାମ 'ଶୁଭ୍ରା') ନାମ୍ନୀ ମୂଳ ରେୱା ଜାତୀୟ ଏକ ଧଳା ବାଘୁଣୀ ନନ୍ଦନକାନନ ଅଣାଯାଇ 'ଗଙ୍ଗା'ର ପୁତ୍ର 'ଦେବବ୍ରତ' (ଧଳା ବାଘ) ସହ ସଙ୍ଗମ କରାଯାଇଥିଲା । ଏହି ସଙ୍ଗମର ପରିଣାମ ସ୍ୱରୂପ 'ଶୁଭ୍ରା' (ତାଏନା) ୩ଟି ପର୍ଯ୍ୟାୟରେ ୯ଟି ଧଳା ବାଘ ଛୁଆ ଜନ୍ମ ଦେଇଥିଲା । ଅନୁରୂପ ପଦ୍ଧତିରେ 'ଦୀପକ୍' (ସାଧାରଣ ରଙ୍ଗର) ଓ ଶୁଭ୍ରାର ମିଳନରୁ ଦୁଇଟି ପର୍ଯ୍ୟାୟରେ ୪ଟି ଛୁଆଙ୍କ ମଧ୍ୟରୁ ଗୋଟିଏ ମାତ୍ର ଧଳା ବାଘ ଛୁଆ ଥିଲା । ଏହି ଧଳା ବାଘ ଛୁଆଟିର ନାମ 'ଅଶ୍ୱିନୀ' । ଅଶ୍ୱିନୀ ୭ ବର୍ଷ ୧୦ ମାସ ବୟସରେ ଅକାଳ ମୃତ୍ୟୁ ଲଭିଛି । ୧୯୮୩ ଡିସେମ୍ବର ୨୯ରେ ଶୁଭ୍ରା ଓ ଦେବବ୍ରତ ମିଳନରୁ ୫ଟି ଧଳା ବାଘ ଛୁଆ ଜନ୍ମ ନେଇଥିଲେ ।

## ଧଳା ବାଘର ପ୍ରକାର ଭେଦ :

ନନ୍ଦନକାନନରେ ସାଧାରଣତଃ ତିନି କିସମର ଧଳା ବାଘ ଦୃଷ୍ଟିଗୋଚର ହୋଇଥାନ୍ତି । ତନ୍ମଧ୍ୟରୁ ନନ୍ଦନକାନନ ଜାତୀୟ ଧଳା ବାଘର ଚାହିଦା ବେଶୀ । ଅନ୍ୟ ଦୁଇ କିସମର ଧଳା ବାଘ ହେଲେ, ରେୱା ଜାତୀୟ ଓ ରେୱା–ନନ୍ଦନକାନନ ମିଶ୍ରିତ ଜାତୀୟ ଧଳା ବାଘ । ନନ୍ଦନକାନନ ଜାତୀୟ ଧଳା ବାଘ ଏଠାକାର ଭୌଗୋଳିକ ପରିସୀମା, ପରିବେଶ ଓ ପରିବେଷ୍ଟନୀ ସହ ଖାପ ଖୁଆଇ ଚଳି ପାରୁଛନ୍ତି । ଏଠାକାର ଜଳବାୟୁ ମଧ୍ୟ ତାଙ୍କୁ ବେଶ୍ ସୁହାଉଛି ।

## ନନ୍ଦନକାନନର ଧଳା ବାଘ ସଂଖ୍ୟା : :

ବର୍ତ୍ତମାନ ସୁଦ୍ଧା ଏହି ପ୍ରାଣୀ ଉଦ୍ୟାନରେ ୨୫ଟି ଧଳା ବାଘ ରହିଛନ୍ତି । ତନ୍ମଧ୍ୟରୁ ୧୪ଟି ଧଳା ବାଘ ଓ ୧୧ଟି ଧଳା ବାଘୁଣୀ । ବର୍ତ୍ତମାନ ଦେଶର ଅନ୍ୟ କୌଣସି ଚିଡ଼ିଆଖାନାରେ ଏତେ ସଂଖ୍ୟକ ଧଳା ବାଘ ନାହାନ୍ତି । ଧଳା ବାଘଗୁଡ଼ିକର ନାମ ପିନାକୀ ସଂଗ୍ରାମ, ମହେଶ, ବିଶ୍ୱାମିତ୍ର, ଶ୍ୟାମ, ସୁକାନ୍ତ, ଗୌରବ, ରାକେଶ, ଶଙ୍କର, ସୁମନ, ରାଜେନ୍ଦ୍ର, ଜବାହର ହୋଇଥିବା ସ୍ଥଳେ ଧଳା ବାଘୁଣୀଗୁଡ଼ିକର ନାମ ଶୁଭ୍ରା, ଅଳକା, ଯମୁନା, କୃତ୍ତିକା, ଦୁର୍ଗା, ତାରିଣୀ, ଶ୍ରିୟା, ଉର୍ମିଳା ଓ ରୀନି ଅଟେ ।

## ଧଳା ବାଘ ବିକ୍ରି ଓ ବିତରଣ :

ଦେଶ ବିଦେଶର ପ୍ରମୁଖ ଚିଡ଼ିଆଖାନାମାନଙ୍କୁ ବିକ୍ରି ଓ ଆଦାନ ପ୍ରଦାନ ସୂତ୍ରରେ ଅଦ୍ୟାବଧି ୭ଟି ଧଳା ବାଘ ପ୍ରଦାନ କରାଯାଇଛି । ତନ୍ମଧ୍ୟରୁ ନିକଟରେ ଗତ ୧୯୯୨ ଜୁଲାଇ ମାସର ପ୍ରଥମ ସପ୍ତାହରେ ବୋକାରୋସ୍ଥିତ ଜବାହରଲାଲ ନେହେରୁ ଚିଡ଼ିଆଖାନା ୩ ଲକ୍ଷ ଟଙ୍କା ମୂଲ୍ୟ ବିନିମୟରେ ଓ ତଦନୁରୂପ ଭାବେ ୧୯୯୦ ନଭେମ୍ବରରେ ମହାରାଷ୍ଟ୍ରର ପୁନେ ଚିଡ଼ିଆଖାନା ୩ ଲକ୍ଷ ଟଙ୍କା ମୂଲ୍ୟ ଦେଇ ଏକ ଧଳା ବାଘ କ୍ରୟ ସୂତ୍ରରେ ନେଇଛନ୍ତି । ଆଦାନ ପ୍ରଦାନ ସୂତ୍ରରେ ଆମେରିକାସ୍ଥିତ ଟେକ୍ସାସ୍‌ର ଜାତୀୟ ଚିଡ଼ିଆଖାନାକୁ ଦୁଇଟି ଧଳା ବାଘୁଣୀ, ଆସାମର ଗୌହାଟୀସ୍ଥିତ ରାଜ୍ୟ ଚିଡ଼ିଆଖାନାକୁ ଗୋଟିଏ ଧଳା ବାଘ, ୧୯୯୧ରେ କଲିକତାସ୍ଥିତ ଆଲିପୁର ଚିଡ଼ିଆଖାନାକୁ ଗୋଟିଏ ଧଳା ବାଘୁଣୀ (ଗାୟତ୍ରୀ) ପ୍ରଦାନ କରାଯାଇଛି । ରାଜସ୍ଥାନର ଜୟପୁର ଓ ମଧ୍ୟପ୍ରଦେଶର ଭୋପାଳସ୍ଥିତ 'ବନ ବିହାର' ଚିଡ଼ିଆଖାନାକୁ ଗୋଟିଏ ଲେଖାଏଁ ଧଳା ବାଘ ପ୍ରଦାନ କରାଯାଇଛି । ନିକଟ ଭବିଷ୍ୟତରେ ଟାଟା ଷ୍ଟିଲ୍ କମ୍ପାନୀ ଜୁଲୋଜିକାଲ୍ ସୋସାଇଟି ଗୋଟିଏ ଧଳା ବାଘ କ୍ରୟ କରିବା ସହ ଦିଲ୍ଲୀସ୍ଥିତ ରାଷ୍ଟ୍ରୀୟ ଚିଡ଼ିଆଖାନା ପ୍ରଜନନ ନିମିତ୍ତ ଏକ ଧଳା ବାଘ ଚୁକ୍ତିନାମା (କୌଣସି କାରଣରୁ ମୃତ୍ୟୁବରଣ କଲେ କ୍ଷତିପୂରଣ ଦେବେ) ଭିତ୍ତିରେ ଦେବାକୁ ରାଜ୍ୟ ସରକାର ଅନୁମତି ପ୍ରଦାନ କରି ସାରିଛନ୍ତି ।

## ବିଶ୍ୱର ସର୍ବ ପ୍ରଥମ ଧଳା ବାଘ ସଫାରୀ : ନନ୍ଦନକାନନ

୧୯୯୧ ଅକ୍ଟୋବର ପହିଲା ଅପରାହ୍ନ ୩ଟାରେ ବନ୍ୟଜନ୍ତୁ ସଂରକ୍ଷଣ ସପ୍ତାହ ପାଳନର ପ୍ରଥମ ଦିବସରେ ରାଜ୍ୟ ଜଙ୍ଗଲ ଓ ପରିବେଶ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଦ୍ୱାରା ବିଶ୍ୱର ସର୍ବ ପ୍ରଥମ ଧଳା ବାଘ ସଫାରୀ ନନ୍ଦନକାନନ ପରିସରରେ ଉଦ୍‌ଘାଟିତ ହୋଇଯାଇଛି । ୧୨ ହେକ୍ଟର ଅର୍ଥାତ୍ ୩୦ ଏକର ପରିମିତ ସ୍ଥାନରେ ଚେନ୍‌ଲିଙ୍କ୍ ଘେରାଯାଇ ପ୍ରାୟ ୪୦ ଲକ୍ଷ ଟଙ୍କା ବ୍ୟୟରେ ଏହି ଧଳା ବାଘ ସଫାରୀ ନିର୍ମିତ ହୋଇଅଛି । ପ୍ରଥମ ପର୍ଯ୍ୟାୟରେ ଏହା ମଧ୍ୟରେ ୮ଟି ଧଳା ବାଘ ଛଡ଼ାଯାଇଛି । ଦର୍ଶକ ଓ ପର୍ଯ୍ୟଟକ ତଥା ଭ୍ରମଣକାରୀଙ୍କ ସକାଶେ ପର୍ଯ୍ୟଟନ ବିଭାଗ ଅନୁଦାନରେ ଇତିମଧ୍ୟରେ ଏକ 'ସ୍ୱରାଜ ମାଜ୍‌ଦା'ର ୨୬ ସିଟ୍ ବିଶିଷ୍ଟ ସ୍ୱତନ୍ତ୍ର ଯାତ୍ରୀବାହୀ ବସ୍ କିଣାଯାଇ ଭ୍ରମଣର ବନ୍ଦୋବସ୍ତ ହୋଇଛି । ନିକଟ ଭବିଷ୍ୟତରେ ଆଉ ଏକ ବସ୍ କିଣାଯିବାର ଯୋଜନା ଅଛି । ଧଳା ବାଘ ସଫାରୀ ମଧ୍ୟରେ ୨ କି:ମି: ସରଣୀ ଧଳା ବାଘଙ୍କ ମେଳରେ ଭ୍ରମଣ ହୋଇଥାଏ ।

ଓଡ଼ିଶା ଧଳା ବାଘ ଓ ଧଳା କୁମ୍ଭୀର ପାଇଁ ବିଶ୍ୱରେ ଲୋକପ୍ରିୟତାର ଶୀର୍ଷରେ । ଧଳା ବାଘ ମହାବଳ ବାଘଠାରୁ ଓଜନରେ ଅଧିକ । ଏହା ଦେଖିବାକୁ ଭାରି ସୁନ୍ଦର ଓ ଶୋଭନ । ବିରାଟ ବପୁ ସାଙ୍ଗକୁ ଶରୀରରେ ଧଳା ଚିକ୍କଣ (ମସୃଣ) ଲୋମ ଉପରେ କଳା ବା ଫିକା ବାଦାମୀ ରଙ୍ଗର ପଟା ପଟା ଦାଗ ଥାଏ । ପାଦ ରଙ୍ଗ ଫିକା ଗୋଲାପୀ । ଆଖି ସ୍ୱଚ୍ଛ ନୀଳାଭ – ତୁଷାର ବର୍ଣ୍ଣର ଓ ଅଧର ଜାମୁକୋଳିଆ ରଙ୍ଗର । ଧଳା ବାଘ ପ୍ରକୃତିର ଚିର ସବୁଜ ମନୋରମ ରାଜକୀୟ ପଶୁ ।

ମାର୍ଫତ୍–ବୈକୁଣ୍ଠନାଥ ଆଚାର୍ଯ୍ୟ,
ନନ୍ଦନକାନନ ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ,
ଶହୀଦ ନଗର, ଭୁବନେଶ୍ୱର–୭୫୧୦୦୭ ।

# ଓଡ଼ିଶାର ନୌ–ବାଣିଜ୍ୟ ଓ ବାଲିଯାତ୍ରା

● ଡଃ ହରିଶ୍ଚନ୍ଦ୍ର ଦାସ

ପ୍ରାଚୀନ ଓଡ଼ିଶା ବା ଓଡ୍ର–ଉତ୍କଳ–କଳିଙ୍ଗର ନୌ–ବାଣିଜ୍ୟ ପରମ୍ପରା ଭାରତ ଇତିହାସର ଏକ ଗୌରବମୟ ଓ ଉଜ୍ଜ୍ୱଳ ଅଧ୍ୟାୟ । ଏ ଅଞ୍ଚଳର ସାହସୀ ନାବିକମାନେ ସମୁଦ୍ର ବକ୍ଷରେ ବୋଇତ ନେଇ ଦକ୍ଷିଣ ଓ ଦକ୍ଷିଣ–ପୂର୍ବ ଏସିଆ ଦ୍ୱୀପପୁଞ୍ଜରେ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରି ଏ ଦେଶକୁ ସମୃଦ୍ଧ କରିଥିଲେ ଏବଂ କାଳକ୍ରମେ ସେଠାରେ ସାମ୍ରାଜ୍ୟ ବିସ୍ତାର କରିବାରେ ଅଗ୍ରଣୀ ହୋଇଥିଲେ । ପ୍ରତ୍ନତତ୍ତ୍ୱବିତ୍ ଓ ଐତିହାସିକମାନଙ୍କ ମତରେ ଭାରତୀୟ ନାବିକମାନଙ୍କ ମଧ୍ୟରେ କଳିଙ୍ଗର ଲୋକମାନେ ଥିଲେ ଧୁରିଣ ଓ ଅଗ୍ରଗାମୀ । ଗଙ୍ଗାଠାରୁ କଳିଙ୍ଗ ନଗର ପର୍ଯ୍ୟନ୍ତ ବିସ୍ତୃତ କଳିଙ୍ଗର ଉପକୂଳ, ପୁଣି ସୁଗଭୀର ନଦୀମାନଙ୍କ ଦ୍ୱାରା ସଂଯୁକ୍ତ ହୋଇ କଳିଙ୍ଗବାସୀଙ୍କୁ ନୌ–ସୃଜନା ପାଇଁ ବିଶେଷ ସୁଯୋଗ ଦେଇଥିଲା । କଳିଙ୍ଗର ପ୍ରଚୁର ବନ୍ୟ ସମ୍ପଦ, ପ୍ରାକୃତିକ ବିଭବ, ପାଟବସ୍ତ୍ର ପ୍ରଭୃତି ଦେଶ ବିଦେଶକୁ ରପ୍ତାନୀ କରିବା ପାଇଁ ନାବିକମାନଙ୍କୁ ପ୍ରେରଣା ଯୋଗାଇଥିଲା । ସୁଗଭୀର ନଦୀ ମୁହାଣମାନଙ୍କରେ ପ୍ରତିଷ୍ଠିତ ପୋତାଶ୍ରୟ ଏବଂ ବ୍ୟବହୃତ ବିଭିନ୍ନ ପ୍ରକାରର ପୋତ ତତ୍କାଳୀନ ଅଧିବାସୀମାନଙ୍କୁ ସାହସୀ ନାବିକ ହେବା ପାଇଁ ସାହାଯ୍ୟ କରୁଥିଲେ ।

ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ କଳିଙ୍ଗରେ ଅନେକ ବୃହତ ବନ୍ଦର ଥିଲା ଏବଂ ବହୁ ପ୍ରକାର ଜାହାଜ ତିଆରି ହେଉଥିଲା । ଯୁକ୍ତି କଳ୍ପତରୁ ଗ୍ରନ୍ଥରୁ ଜାହାଜରେ ବ୍ୟବହୃତ ନାନା ପ୍ରକାର କାଠ ଏବଂ ନାନା ପ୍ରକାର ଜାହାଜ ଓ ନୌକାର ନାମ ମିଳେ । ଭୋଜରାଜା ଜାହାଜ ନିର୍ମାଣ ସମ୍ବନ୍ଧରେ ଅନେକ ଜିନିଷ ଲେଖିଯାଇଛନ୍ତି । ନିମ୍ନୋକ୍ତ କେତୋଟି ଶ୍ଳୋକରୁ ଏହାର ପ୍ରମାଣ ମିଳେ ।

"କ୍ଷତ୍ରିୟ କାଷ୍ଠୈ ର୍ଘଟିତ ଭୋଜମତେ ସୁଖସମ୍ପଦ୍‌ନୌକା ।
ଅନ୍ୟେ ଲଘୁଭିଃ ସୁଦୃଢ଼ୈ ର୍ବିଦଧତି ଜଳଦୁସ୍ତରେ ନୌକାମ୍ ।
ବିଭିନ୍ନଜାତିଦ୍ୱୟକାଷ୍ଠଜାତ ନ ଶ୍ରେୟସେ ନାପି
ସୁଖାୟ ନୌକା ।
ନୈଷାଚିରଂତିଷ୍ଠତି ପଚ୍ୟତେ ଚ ବିଭିଦ୍ୟତେ ସଚିତି
ମଜ୍ଜତେ ଚ ।
ନ ସିନ୍ଧୁଗାଦ୍ୟାର୍ହତି ଲୌହ ବନ୍ଧନଂ ତ ଲ୍ଲୋହ କାନ୍ତୈ ହ୍ରିୟତେ
ହି ଲୌହଂ ।
ବିପଦ୍ୟତେ ତେନ ଯଲେଷୁ ନୌକା ଗୁଣେନ ବନ୍ଧଂ
ନିଜପାଦଭୋଜ" ।

ଯୁକ୍ତି କଳ୍ପତରୁ ଅନୁସାରେ ଜାହାଜ ୨ ପ୍ରକାର ଏବଂ ନୌକା ଦଶ ପ୍ରକାର । ଦୁଇ ପ୍ରକାର ଜାହାଜର ନାମ ସାମାନ୍ୟ ଏବଂ ବିଶେଷ ବା ଅର୍ଣ୍ଣବ ପୋତ । କ୍ଷୁଦ୍ର, ମଧ୍ୟମ, ଭୀମ, ଚପଳ, ପାଟଳ, ଦୀର୍ଘ, ଭୟା, ପତ୍ରପୁଟା, ଗର୍ଭରା ଓ ମନ୍ଥରା । ଏହିପରି ଦଶ ପ୍ରକାର ନୌକାର ନାମ । ବିଶେଷ ଶ୍ରେଣୀୟ ନୌକାଗୁଡ଼ିକ ସମୁଦ୍ର ଯାତ୍ରା ଉପଯୋଗୀ । ଏଗୁଡ଼ିକ ମଧ୍ୟ ସାଧାରଣତଃ ୨ ପ୍ରକାର ଯଥା – ଦୀର୍ଘା ଏବଂ ଉନ୍ନତା ଏବଂ ପ୍ରତ୍ୟେକଟିର ମଧ୍ୟ ନାନା ପ୍ରକାର ଅଛି । ଦୀର୍ଘା ୧୦ ପ୍ରକାର–ଦୀର୍ଘିକା, ତରଣୀ, ଲୋଳା, ଗତ୍ୱରା, ଗାମିନୀ, ତରୀ, ଜଙ୍ଘାଳା, ପ୍ଲାବିନୀ, ଧାରଣୀ ଓ ବେଗିନୀ । ସେହିପରି ଉନ୍ନତା ୫ ପ୍ରକାର ଯଥା –ଊର୍ଦ୍ଧ୍ୱା, ଅନୁର୍ଦ୍ଧ୍ୱା, ସ୍ୱର୍ଣ୍ଣମୁଖୀ, ଗର୍ଭିଣୀ ଓ ମନ୍ଥରା । ନାନା ପ୍ରକାର ଜିନିଷରେ ଜାହାଜ ସଜାଇବା ବିଧି ମଧ୍ୟ ରହିଥିଲା ଏବଂ ନାବିକ ତଥା ଯାତ୍ରୀମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ମଧ୍ୟ ଧ୍ୟାନ ଦିଆଯାଉଥିଲା । ସୁନା, ରୁପା ଓ ତମ୍ବା ମିଶ୍ରିତ ଧାତୁ ସଜାଇବାରେ ଏବଂ ଜାହାଜର ଆକୃତି ଓ ପ୍ରକାର ଅନୁସାରେ ରଙ୍ଗ ପ୍ରୟୋଗ କରାଯାଉଥିଲା । ଚାରି ମାସ୍ତୁଲ ବିଶିଷ୍ଟ ଜାହାଜ ଶ୍ୱେତ ବର୍ଣ୍ଣ, ତିନି ମାସ୍ତୁଲ ବିଶିଷ୍ଟ ଜାହାଜ ରକ୍ତବର୍ଣ୍ଣ, ଦୁଇ ମାସ୍ତୁଲ ବିଶିଷ୍ଟ ଜାହାଜ ପୀତ ବର୍ଣ୍ଣ ଏବଂ ଏକ ମାସ୍ତୁଲ ବିଶିଷ୍ଟ ଜାହାଜର ରଙ୍ଗଥିଲା ନୀଳବର୍ଣ୍ଣ । ଜାହାଜର ମୁହଁ ମଧ୍ୟ ନାନା ଆକୃତିର କରାଯାଉଥିଲା ।

କେଶରୀ ମହିଷୋ ନାଗୋ ଦ୍ୱିରଦୋ ବ୍ୟାଘ୍ର ଏବଚ ।
ପକ୍ଷୀ ଭେକୋ ମନଶ୍ଚୈଷ୍ଣ ଏତେଷାଂ ବଦନାଷ୍ଟକଂ ।
ନାନା ମୁଖେ ପରିନ୍ୟସ୍ୟ ଆଦିତ୍ୟାଦି ଦଶସ୍ଥୁକାମ୍ ।
ନୌକାସୁ ମଣି ବିନ୍ୟାସୋ ବିଶେଷୋ ନବଦ୍ରବ୍ୟବିତ୍ ।
ମୁକ୍ତା ସ୍ତବକୈ ର୍ଯୁକ୍ତା ନୌକାସ୍ୟାତ୍ ସର୍ବତୋଭଦ୍ରା ।

ତଳ ଉପର ପ୍ରକୋଷ୍ଠର ସଂଖ୍ୟା ଅନୁସାରେ ଜାହାଜ ୩ ପ୍ରକାର ବୋଲି ଉଲ୍ଲେଖ ରହିଛି, ଯଥା– ସର୍ବ ମନ୍ଦିରା, ମଧ୍ୟ ମନ୍ଦିରା ଓ ଅଗ୍ର ମନ୍ଦିରା । ଶାସ୍ତ୍ରର ବର୍ଣ୍ଣନା ଅନୁସାରେ ସର୍ବ ମନ୍ଦିରା ଜାହାଜରେ ରାଜକୋଷ, ଅଶ୍ୱ ଏବଂ ସ୍ତ୍ରୀମାନେ ଯାତାୟାତ କରୁଥିଲେ । ମଧ୍ୟ ମନ୍ଦିରା ପୋତରେ ରାଜାମାନେ ବିହାର କରିବା ପାଇଁ ଯାଉଥିଲେ ଏବଂ ଅଗ୍ର ମନ୍ଦିରା ଜାହାଜ ଯୁଦ୍ଧ ଓ ଦୂର ନୌ–ବାଣିଜ୍ୟ ପାଇଁ ବ୍ୟବହୃତ ହେଉଥିଲା । ବିଶେଷତଃ କଳିଙ୍ଗରେ ପୋତମାନଙ୍କର

[illegible]

ନାମ ଭିନ୍ନ ପ୍ରକାର ଥିଲା ଯଥା– ବାଣିଜ୍ୟ ପୋତ ଓ ସାମରିକ ପୋତ। ବହିତ୍ରେ, ଗାଣ୍ଡିଆ, ଶ୍ୱେତମୁଖୀ ଇତ୍ୟାଦି ବାଣିଜ୍ୟ ପୋତର ଅନ୍ତର୍ଗତ ଏବଂ ରାଜପୁରା, ଲାଞ୍ଜିଆ, ଖାଉଜଗା, ଗଙ୍ଗ, ପ୍ରସାଦ, ନଢ଼ିଆ, ଖୁନ୍ଥୁପ୍ ଓ ଗୁଡୁରୀ ଇତ୍ୟାଦି ସାମରିକ ପୋତ, ଏହାଛଡ଼ା ମୁଗତରୀ ବ୍ୟବହୃତ ହେଉଥିବାର ପ୍ରମାଣ ମଧ୍ୟ ରହିଛି।

ପ୍ରାଚୀନ ଗ୍ରନ୍ଥରେ କଳିଙ୍ଗର ଅନେକ ପ୍ରାଚୀନ ବନ୍ଦର ଏବଂ ନଗର ନାମ ଉଲ୍ଲେଖ କରାଯାଇଛି, ଯଥା– ନନିଗେନ (ପୁରୀ), କର୍କନ୍ଦମ (କଟକ), କୋଣଗର (କୋଣାର୍କ), କୌଶସ (ବାଲେଶ୍ୱର), ପଲୁରୁ (ଜଳେଶ୍ୱର), ମଜନ (ମହାନଦୀ), ତନ୍ଦିଗ (ବ୍ରାହ୍ମଣୀ), ଦୋଷରମ (ବୈତରଣୀ), ଅଦମଶ (ସୁବର୍ଣ୍ଣରେଖା), ତମ୍ରଲୁ (ତାମ୍ରଲିପ୍ତି) ଏବଂ ପାଲୁର (ଚିଲିକା ମୁହାଣ କିମ୍ବା ଋଷିକୁଲ୍ୟା ମୁହାଣ)। ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଲିଖିତ ଟୋଲେମିଙ୍କର ଭୂଗୋଳ ଗ୍ରନ୍ଥରେ ପାଲୁର କଳିଙ୍ଗର ସର୍ବଶ୍ରେଷ୍ଠ ବନ୍ଦର ହିସାବରେ ବର୍ଣ୍ଣନା କରାଯାଇଅଛି। ପେରିପ୍ଲସ ଗ୍ରନ୍ଥରୁ ଜଣାଯାଏ ଯେ ପ୍ରାଚୀନ କାଳରେ କଳିଙ୍ଗରେ ପ୍ରଚୁର ପରିମାଣରେ ହାତୀଦାନ୍ତ ଓ ସୂକ୍ଷ୍ମ ବସ୍ତ୍ର ମିଳୁଥିଲା ଏବଂ ଏଗୁଡ଼ିକ ପାଲୁର ଏବଂ ତାମ୍ରଲିପ୍ତ ବନ୍ଦରରୁ ଦେଶ ବିଦେଶକୁ ରପ୍ତାନୀ କରାଯାଉଥିଲା। କଳିଙ୍ଗର ସର୍ବଶ୍ରେଷ୍ଠ ହାତୀଖେଦା ଏବଂ ସୂକ୍ଷ୍ମ ବସ୍ତ୍ର ବିଷୟରେ କୌଟିଲ୍ୟ ତାଙ୍କର ଅର୍ଥଶାସ୍ତ୍ରରେ ବର୍ଣ୍ଣନା କରିଅଛନ୍ତି, ଯଥା– "କଳିଙ୍ଗାଙ୍ଗ କାର୍ପାସିକଂ ଶ୍ରେଷ୍ଠମିତେ", ଏବଂ କଳିଙ୍ଗାଙ୍ଗ ଗଜାଃ ଶ୍ରେଷ୍ଠାଃ, ଏ ଦେଶର ଜଙ୍ଗଲରେ ବହୁଳ ପରିମାଣରେ ହାତୀ ରହୁଥିଲେ। ତେଣୁ ବିଦେଶକୁ ହାତୀ ଦାନ୍ତ ରପ୍ତାନୀ କରିବା ଖୁବ୍ ସ୍ୱାଭାବିକ। ପରବର୍ତ୍ତୀ କାଳରେ ଓଡ଼ିଶାର ସୂକ୍ଷ୍ମ ବସ୍ତ୍ର ସମ୍ପର୍କରେ ବହୁ ବର୍ଣ୍ଣନା ଦେଖିବାକୁ ମିଳେ। ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସରେ ବାଉଁଶ ନଳୀରେ ସୂକ୍ଷ୍ମ ବସ୍ତ୍ର ରହିପାରୁଥିଲା ବୋଲି ଲେଖି ଅଛନ୍ତି। ସୂକ୍ଷ୍ମ ବସ୍ତ୍ର ତିଆରି ଓ ବାଣିଜ୍ୟ କରିବାରେ ତତ୍କାଳୀନ ମେଦିନୀପୁର, ଚନ୍ଦ୍ରସେଣା, ବାଲେଶ୍ୱର, ଭଦ୍ରକ, କେଦାରପୁର, ଯାଜପୁର, ହରିପୁର, କଟକର ଗୋପାଳପୁର, ଫୁଲନଗର କିଶୋରନଗର, ରଘୁନାଥପୁର, ହରିହରପୁର, କେନ୍ଦ୍ରାପଡ଼ା, ତିଗିରିଆ, ନୂଆପାଟଣା, ପୁରୀର ଓଳସିଂହ, ଘରୋଡ଼ିଆ, ବେଗୁନିଆ, ବୋଲଗଡ଼, ପିପିଲି, କାକଟପୁର, କଳାପଥର, ସମ୍ବଲପୁରର ବରଗଡ଼, ବରପାଲି ଓ ବଲାଙ୍ଗୀରର ସୋନପୁର ପ୍ରଭୃତି ସ୍ଥାନ ଏବେ ମଧ୍ୟ ସୂକ୍ଷ୍ମ ବସ୍ତ୍ର ପାଇଁ ପ୍ରସିଦ୍ଧ।

ମନରେ ସତତ ପ୍ରଶ୍ନ ଉଠେ, କଳିଙ୍ଗ ନୌ–ବାଣିଜ୍ୟ କେବେଠୁ ଆରମ୍ଭ କରାଯାଇଥିଲା। ପ୍ରାଚୀନ ସାହିତ୍ୟ ଧର୍ମଗ୍ରନ୍ଥ ଏବଂ ପ୍ରତ୍ନତତ୍ତ୍ୱ ଦୃଷ୍ଟିକୋଣରୁ ଭାରତର ନୌ–ବାଣିଜ୍ୟ ଆଦିମ କାଳରୁ ଆରମ୍ଭ ହୋଇଥିବାର ପ୍ରମାଣ ମିଳେ। ଭାରତ ତିନି ଦିଗରେ ସମୁଦ୍ର ଦ୍ୱାରା ପରିବେଷ୍ଟିତ। ତେଣୁ ସମୁଦ୍ର ଉପକୂଳ ଅଧିବାସୀମାନେ ବୋଇତ ଏବଂ ଜାହାଜରେ ଦୂର ଦେଶ ଏବଂ ଦ୍ୱୀପପୁଞ୍ଜ ସହିତ ପ୍ରାଚୀନ କାଳରୁ ବାଣିଜ୍ୟ ବ୍ୟବସାୟ କରୁଥିଲେ। ସମ୍ଭବତଃ ରାମାୟଣ ମହାଭାରତ ଯୁଗରୁ ବିଦେଶ ସହିତ ବାଣିଜ୍ୟ ବ୍ୟବସାୟ ପ୍ରତିଷ୍ଠିତ ହୋଇଥିଲା।

ମହାଭାରତ, ରାମାୟଣ, କାଳିଦାସଙ୍କର ରଘୁବଂଶ, ବ୍ରହ୍ମାଣ୍ଡ, ବାୟୁ, ମତ୍ସ୍ୟ, ସ୍କନ୍ଦ, ଗରୁଡ଼, ଅଗ୍ନି ଏବଂ ମାର୍କଣ୍ଡେୟ ପୁରାଣ, ବୌଦ୍ଧ ଜାତକ, ପ୍ରାଚୀନ ବୌଦ୍ଧ ଶାସ୍ତ୍ର, ମନସା ମଙ୍ଗଳ, ତରଙ୍ଗ ଲୋଲ, ମୃଚ୍ଛକଟିକ ସୁନ୍ଦରୀ, କଥା ସରିତ ସାଗର, ଦଶକୁମାର ଚରିତ, ଚୋଲେମି, ଫାହିୟାନ ଏବଂ ହୁଏନ୍‌ସାଙ୍ଗଙ୍କ ବିବରଣୀ ଏବଂ ଗ୍ରୀସୀୟ ଓ ଆରବୀୟ ଲେଖକମାନଙ୍କ ବିବରଣୀ ପ୍ରଭୃତି ବିଭିନ୍ନ ପ୍ରକାର ଗ୍ରନ୍ଥରେ କଳିଙ୍ଗର ନୌ–ବାଣିଜ୍ୟର ନିଖୁଣ ଚିତ୍ର ମିଳେ। ଏହାଛଡ଼ା ପୁରୀ, କୋଣାର୍କ ଓ ବୈତାଳ ମନ୍ଦିରରେ ନୌକାର ଚିତ୍ର ଗ୍ରନ୍ଥଗୁଡ଼ିକର ଉକ୍ତିର ସତ୍ୟତା ପ୍ରତିପାଦନ କରେ। ଯେଉଁ ଦ୍ୱୀପପୁଞ୍ଜ ସହିତ କଳିଙ୍ଗବାସୀମାନେ ନୌ–ବାଣିଜ୍ୟ ସମ୍ପର୍କ ସ୍ଥାପନ କରିଥିଲେ ସେଗୁଡ଼ିକ ଏକତ୍ରିତ ଭାବରେ ସୁବର୍ଣ୍ଣଭୂମି ବା ସୁବର୍ଣ୍ଣ ଦ୍ୱୀପ ନାମରେ ସାରା ପୃଥିବୀରେ ପରିଚିତ ଥିଲା। ଏହି ଦ୍ୱୀପ ପୁଞ୍ଜରେ ମାଳୟ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି ପ୍ରଭୃତି ଦ୍ୱୀପ ବାଣିଜ୍ୟ ପାଇଁ ଉତ୍କୃଷ୍ଟତମ ଥିଲା। ଏହି ସୁବର୍ଣ୍ଣ ଦ୍ୱୀପରୁ ବାଣିଜ୍ୟ ବ୍ୟବସାୟ ମାଧ୍ୟମରେ ଧନରତ୍ନ ଆମଦାନୀ କରିବା ବଣିକମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା। ଏହି ବିଷୟରେ ସମସ୍ତ ଗ୍ରନ୍ଥ ଏକମତ। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଜଣାଯାଏ ଯେ ଭାରତୀୟମାନେ ସୁବର୍ଣ୍ଣ ଭୂମିରୁ ପ୍ରଚୁର ପରିମାଣରେ ଅଗରୁ ଆମଦାନୀ କରୁଥିଲେ। ଜାହାଜ ଅଧିକାରୀମାନେ କର ଆଦାୟ କରି ଯଥେଷ୍ଟ ଧନରତ୍ନ ଆୟ କରୁଥିବାର ପ୍ରମାଣ ବୌଦ୍ଧ ଗ୍ରନ୍ଥ 'ମିଳିନ୍ଦ ପହ୍ନ'ରେ ଦେଖିବାକୁ ମିଳେ। ଥେରା ଉତ୍ତର ଏବଂ ଥେରା ସୋଣ ଧର୍ମ ପ୍ରଚାର କରିବା ପାଇଁ ସୁବର୍ଣ୍ଣ ଭୂମିକୁ ଯାଇଥିଲେ ବୋଲି ସିଂହଳର ମହାବଂଶରୁ ଜଣାପଡ଼େ। ସେତେବେଳେ ସୁବର୍ଣ୍ଣ ଭୂମିର ସମ୍ପଦର ପ୍ରାଚୁର୍ଯ୍ୟ ହେତୁ ଗ୍ରୀକ୍, ଲାଟିନ୍, ଆରବୀୟ ଏବଂ ଚୀନ୍ ଦେଶର ସାହିତ୍ୟରେ ବହୁଳ ଭାବରେ ବର୍ଣ୍ଣନା କରାଯାଇଛି। ଗ୍ରୀକ୍ ଭାଷାରେ ସୁବର୍ଣ୍ଣ ଦ୍ୱୀପର ନାମ ହେଉଛି କ୍ରାଇସେ (ସୁନା)। ପ୍ଲିନୀ, ଡାଇନୋସିୟସ୍, ପେରିଗେଟସ୍, ସୋଲିନାସ, କ୍ୟାପେଲା ପ୍ରଭୃତି ବିଦେଶୀୟ ଗବେଷକ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ସୁବର୍ଣ୍ଣ ଭୂମି ବିଷୟରେ ବହୁ ତଥ୍ୟ ପ୍ରଦାନ କରିଅଛନ୍ତି। ଟୋଲେମିଙ୍କର ସୁବର୍ଣ୍ଣ ଭୂମିର ବିବରଣୀ ଅତି ଉପାଦେୟ।

ସୁବର୍ଣ୍ଣ ଦ୍ୱୀପରେ ଭାରତୀୟମାନଙ୍କର ବାଣିଜ୍ୟ ଆରବୀୟ ଲେଖକମାନଙ୍କୁ ଅଜଣା ନଥିଲା। ଆଲ୍‌ବେରୁଣୀ ତାଙ୍କ ବିବରଣୀରେ ସୁବର୍ଣ୍ଣ ଦ୍ୱୀପକୁ ଜାବାଜ୍ ଦ୍ୱୀପ ବାଲିରୁ ସୁବର୍ଣ୍ଣ ଦ୍ୱୀପ ବୋଲି କହି ଅଛନ୍ତି। ଆରବୀୟ ଏବଂ ଚୀନ୍ ଦେଶର ଲେଖକମାନଙ୍କ ବିବରଣୀରୁ ଏବଂ ସୁମାତ୍ରାରୁ ମିଳିଥିବା ଅଭିଲେଖରୁ ଜଣାଯାଏ ଯେ, ମାଳଦ୍ୱୀପପୁଞ୍ଜର ନାମ ସୁବର୍ଣ୍ଣ ଭୂମି ଥିଲା। ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଭୂଖଣ୍ଡର ନାମ ସୁବର୍ଣ୍ଣ ଦ୍ୱୀପ ଥିଲା ବୋଲି ବୌଦ୍ଧ ସନ୍ନ୍ୟାସୀ ବୁଦ୍ଧଗୁପ୍ତଙ୍କର ବିବରଣୀରୁ ଜଣାପଡ଼େ।

ପୁରାଣ ଓ ବୌଦ୍ଧ ଗ୍ରନ୍ଥରେ ବହୁଦ୍ୱୀପର ନାମ ଦେଖିବାକୁ ମିଳେ। ନାରିକେଳ ଦ୍ୱୀପ (ବାଲି), କର୍ପୂର ଦ୍ୱୀପ, କଟାହ ଦ୍ୱୀପ, ସୁବର୍ଣ୍ଣ ଦ୍ୱୀପ ବିଷୟ କଥାସରିତ ସାଗରରେ ଲେଖା ଯାଇଛି। ବୋର୍ଣ୍ଣିଓକୁ କର୍ପୂର ଦ୍ୱୀପ ହିସାବରେ ଚିହ୍ନଟ କରାଯାଇଛି। ହୁଏନ୍‌ସାଙ୍ଗଙ୍କ ବିବରଣୀ ଅନୁସାରେ ନାରିକେଳ ଦ୍ୱୀପର ଲୋକମାନେ କେବଳ ନଡ଼ିଆଖାଇ ଜୀବନଧାରଣ କରୁଥିଲେ। ବାୟୁ ପୁରାଣରେ ୬ଟି ଦ୍ୱୀପର ନାମ ରହିଛି। ଯଥା– ଅଙ୍ଗ ଦ୍ୱୀପ,

ଯମଦ୍ୱୀପ, ମାଳୟ ଦ୍ୱୀପ, ଶଙ୍ଖ ଦ୍ୱୀପ ଏବଂ ବରାହ ଦ୍ୱୀପ, ମାଳୟ ଦ୍ୱୀପ ହିଁ ବରାହ ଦ୍ୱୀପ । ଏହା ପ୍ରଚୁର ସୁନା, ମୂଲ୍ୟବାନ ପ୍ରସ୍ତର ଏବଂ ଚନ୍ଦନ କାଠ ପାଇଁ ବିଖ୍ୟାତ । ଶଙ୍ଖ ଦ୍ୱୀପ ଶ୍ରୀ ବିଜୟ ସାମ୍ରାଜ୍ୟର ଶଙ୍ଖସ୍ଥ । ଏହିପରି ଭାବରେ ପୁରାଣୋକ୍ତ ଦ୍ୱୀପମାନ ଚିହ୍ନଟ କରାଯାଇଛି ।

ବୌଦ୍ଧ ସୁତ୍ର ସଦ୍ଧର୍ମ ସ୍ମୃତି ଏଂସ୍ଥାନରେ ଆମେ ସପ୍ତରାଜ୍ୟ ପରିଶୋଭିତ ଯବଦ୍ୱୀପ ଏବଂ ସୁବର୍ଣ୍ଣ ରୌପ୍ୟକ ଦ୍ୱୀପର ନାମ ଦେଖିବାକୁ ପାଉଁ ।

ଯହବନ୍ତୋ ଯବଦ୍ୱୀପଂ ସପ୍ତରାଜ୍ୟୋପଶୋଭିତମ୍,
ସୁବର୍ଣ୍ଣରୌପ୍ୟକଦ୍ୱୀପଂ ସୁବର୍ଣ୍ଣକରମଣ୍ଡିତମ୍ ।

ହରି ବଂଶରେ ମଧ୍ୟ ସୁବର୍ଣ୍ଣକର ମଣ୍ଡିତ ସୁବର୍ଣ୍ଣ ରୌପ୍ୟକ ଦ୍ୱୀପର ଉଲ୍ଲେଖ ରହିଛି । ବୌଦ୍ଧ ଗ୍ରନ୍ଥ 'ନିର୍ଦ୍ଦେଶ' ମଧ୍ୟ ସୁବର୍ଣ୍ଣ ଭୂମିର ପ୍ରଧାନ ପ୍ରଧାନ ସ୍ଥାନର ନାମ ଏବଂ ନାନା ପଥ ବିଷୟରେ ଆଲୋକପାତ କରେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଭାରତୀୟମାନେ ଦକ୍ଷିଣ ଓ ଦକ୍ଷିଣ ପୂର୍ବ ଏସିଆ ଦ୍ୱୀପପୁଞ୍ଜ ସହିତ ବହୁ ପ୍ରାଚୀନ କାଳରୁ ବାଣିଜ୍ୟ ସମ୍ପର୍କ ସ୍ଥାପନ କରିଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ ବାଣିଜ୍ୟ ସମ୍ପର୍କ ସୁପ୍ରତିଷ୍ଠିତ ହୋଇଥିଲା ବୋଲି ଆମେ ସ୍ପଷ୍ଟ ଭାବରେ ଜାତକ, ବୃହତ୍ କଥା, ଅର୍ଥଶାସ୍ତ୍ର ଏବଂ ମିଳିନ୍ଦ ପନ୍ହରୁ ଜାଣିପାରୁ । ବାଣିଜ୍ୟ ବ୍ୟବସାୟରୁ ଉପନିବେଶ ସ୍ଥାପନ ହେଲା ।

କୌଣ୍ଡିନ୍ୟ ଏବଂ କଳିଙ୍ଗବାସୀମାନେ ମାଳୟ ଦ୍ୱୀପପୁଞ୍ଜରେ ସର୍ବ ପ୍ରଥମେ ରାଜ୍ୟ ବିସ୍ତାର କରିଥିଲେ । କୌଣ୍ଡିନ୍ୟମାନେ ଫୁନାନ୍ ଓ କାଳିମନ୍ତନ୍‌ରେ ଏବଂ କଳିଙ୍ଗବାସୀମାନେ ମାଳୟ, ବାଲି ଓ ଜାଭା ଦ୍ୱୀପରେ ପ୍ରାୟ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ରାଜ୍ୟ ସ୍ଥାପନ କରିଥିଲେ । ପରବର୍ତ୍ତୀ କାଳରେ ଚୋଳ, ପାଣ୍ଡ୍ୟ ଓ ଅନ୍ୟାନ୍ୟ ତାମିଲ ଲୋକମାନେ ସୁମାତ୍ରାର ଦକ୍ଷିଣ ଅଞ୍ଚଳକୁ ଅଧିକାର କଲେ ।

ପ୍ରାଚୀନ ଚୀନ୍ ବିବରଣୀ କଳିଙ୍ଗର ଅଧିବାସୀମାନଙ୍କୁ କ୍ଲି-ଙନ୍-ଲୁନ୍ ବୋଲି କୁହାଯାଇଛି । ଏହି କଳିଙ୍ଗୀୟମାନେ ମାଳୟ ଦ୍ୱୀପପୁଞ୍ଜରେ ସର୍ବପ୍ରଥମେ ସଂସ୍କୃତିର ବିକାଶ କରିଥିଲେ । ଚୀନ୍ ସୂତ୍ରରୁ ଆହୁରି ଜଣାଯାଏ ଯେ କଳିଙ୍ଗର ସାହସୀ ନାବିକମାନେ ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ପାଲୁର ବନ୍ଦର ଦେଇ ମାଳୟ ଦ୍ୱୀପରେ ବାଣିଜ୍ୟ କରୁ କରୁ ବସତି ସ୍ଥାପନ କଲେ । ସାତ ବାହନ ଓ କ୍ଷତ୍ରପମାନଙ୍କ ମଧ୍ୟରେ ବାରମ୍ବାର ଯୁଦ୍ଧ ହେବାରୁ କଳିଙ୍ଗ ଓ ବିଦର୍ଭବାସୀମାନେ ବହୁ ସଂଖ୍ୟାରେ ଦକ୍ଷିଣ ଓ ଦକ୍ଷିଣ ପୂର୍ବ ଏସିଆ ଦ୍ୱୀପପୁଞ୍ଜକୁ ଚାଲି ଯାଇଥିଲେ । କଳିଙ୍ଗର ଜଣେ ରାଜା ମାଳୟ ଦ୍ୱୀପପୁଞ୍ଜରେ ପନ୍‌ପନ୍ ରାଜ୍ୟ ସ୍ଥାପନ କରିଥିଲେ । ଏହି ରାଜ୍ୟ ପ୍ରାୟ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ସୁରକ୍ଷିତ ଥିଲା । ଏହି ସମୟରେ ପନ୍‌ପନ୍ ଚୀନ୍ ସହିତ ରାଜନୈତିକ ସମ୍ପର୍କ ସ୍ଥାପନ କରିଥିଲା । ଖ୍ରୀଷ୍ଟୀୟ ୪୨୪-୪୫୩ ମଧ୍ୟରେ ପନ୍‌ପନ୍ ରାଜଧାନୀରୁ ରାଜଦୂତମାନଙ୍କୁ ପଠାଯାଉଥିଲା । ଆହୁରି ଜଣାଯାଏ ଯେ ସେ ରାଜ୍ୟରେ କଳିଙ୍ଗର ବ୍ରାହ୍ମଣ ବହୁ ସଂଖ୍ୟାରେ ବାସ କରୁଥିଲେ ଏବଂ ବିଭିନ୍ନ ରାଜକୀୟ ପଦପଦବୀରେ ବିଭୂଷିତ ହେଉଥିଲେ । ସେ ରାଜ୍ୟର ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀମାନେ ସମସ୍ତେ ଥିଲେ କଳିଙ୍ଗର ବ୍ରାହ୍ମଣ । ଚୀନ୍ ଦେଶର ପ୍ରାଚୀନ ବିବରଣୀରେ ସେମାନଙ୍କର ନାମରେ ଉଲ୍ଲେଖ ହୋଇଛି । ଯଥା- ପୋ-ଲଙ୍ଗ- ସୋ- ଲୀନ୍, କୁନ୍- ଲୁନ୍- ଲି- ଏ, କୁନ୍- ଲୁନ୍- ପୋ- ଓ, କୁନ୍- ଲୁନ୍- ପୋ- ଲି- ସୋ- କନ୍ ଇତ୍ୟାଦି, କୁନ୍- ଲୁନ୍ ଏବଂ କୁ- ଲୁଙ୍ଗର ଅର୍ଥ କ୍ଲିଙ୍ଗ କିମ୍ବା କଳିଙ୍ଗ ବୁଝାଏ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ସେ ରାଜ୍ୟରେ ଏତେଜଣ କଳିଙ୍ଗର ବ୍ରାହ୍ମଣ ମନ୍ତ୍ରୀ ଥିବାରୁ କଳିଙ୍ଗର ରାଜନୈତିକ ସମ୍ପର୍କ କେତେ ସୁଦୃଢ଼ ସ୍ପଷ୍ଟ ଭାବରେ ପ୍ରତୀୟମାନ ହୁଏ । ଚୀନ୍‌ର ସୁଇ ରାଜବଂଶ (୫୮୯-୬୧୮ ଏ.ଡ଼ି.)ର ଇତିହାସରୁ ଆମେ ଜାଣିପାରୁ ଯେ ଦରବାରରେ ଶହଶହ କଳିଙ୍ଗ ବ୍ରାହ୍ମଣ ରାଜ କାର୍ଯ୍ୟରେ ଭାଗ ନେଉଥିଲେ । ସେ ସମୟରେ ବ୍ୟବହୃତ ଲିପି (କୁନ୍-ଲନ୍-ଲୁନ୍) କଳିଙ୍ଗରୁ ଯାଇଥିବା ଅନୁମାନ କରାଯାଏ ।

ଏହାଛଡ଼ା ପ୍ରାଚୀନ କଳିଙ୍ଗୀୟମାନଙ୍କର ନୌବାଣିଜ୍ୟ ଏବଂ ବାଣିଜ୍ୟ-ବିସ୍ତାର ସମ୍ପର୍କରେ ମାଳୟ ଦ୍ୱୀପପୁଞ୍ଜରେ ବହୁ କିମ୍ବଦନ୍ତୀ ପ୍ରଚଳିତ । ଓଡ଼ିଆମାନଙ୍କର ମାଳୟ ଦ୍ୱୀପପୁଞ୍ଜରେ ବସତି ସ୍ଥାପନ ଏବଂ ରାଜ୍ୟ ବିସ୍ତାର ସମ୍ପର୍କରେ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ କଳିଙ୍ଗର ରାଜପୁତ୍ର ୨୦ ହଜାର ବ୍ରାହ୍ମଣ ପରିବାର ଜାଭା ଦ୍ୱୀପକୁ ପଠାଇଥିଲେ । କାଳକ୍ରମେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇଲା ଏବଂ କଥିତ ଅଛି ଯେ ଜାଭା ଅବ୍ଦ ୨୮୯ ପର୍ଯ୍ୟନ୍ତ ସେମାନେ ଅନୁନ୍ନତ ଅବସ୍ଥାରେ ଥିଲେ । ଭଗବାନଙ୍କ ଦୟାରୁ କାନୋ ନାମକ ଜଣେ ରାଜପୁତ୍ର ରାଜତ୍ୱ ଆରମ୍ଭ କଲେ । ଏଠାରେ ଏହି ବଂଶର ରାଜପୁତ୍ରମାନେ ୩ ପୁରୁଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ଆଉ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ ଏହି ସମୟରେ ଅସ୍ଥୀନା (ହସ୍ତୀନା) ନାମକ ଏକ ରାଜ ବଂଶର ଉଦ୍ଭବ ହେଲା । ଏହି ବଂଶର ପ୍ରଥମ ରାଜାଙ୍କ ନାମ ପୁଲଶତା ବା ପରାଶର । ତାଙ୍କ ପୁତ୍ରଙ୍କ ନାମ ଅବ୍ୟାଶ (ବ୍ୟାସ) ଏବଂ ତାଙ୍କ ପୁତ୍ରଙ୍କ ନାମ ପାଣ୍ଡଦେବ ଦାବ ଦାସ । ଏହି ତିନିଜଣ ରାଜା ପ୍ରାୟ ୧୦୦ ବର୍ଷ ରାଜତ୍ୱ କରିଥିଲେ । ଚତୁର୍ଥ ରାଜା ଜୟବସ ଅସ୍ତୀନାର ରାଜଧାନୀ କୋଦାରୀକୁ ଉଠାଇ ନେଇଥିଲେ । ଚୀନ୍‌ର ସାଙ୍ଗ୍ ରାଜବଂଶ (ଖ୍ରୀ୨୧୮-୯୦୬) ବିବରଣୀରେ ଜାଭା ରାଜ୍ୟକୁ ହୋଲିଙ୍ଗ ବୋଲି କୁହା ଯାଉଥିଲା । ହୋଲିଙ୍ଗ ହେଉଛି କଳିଙ୍ଗ ଏବଂ ଏହା କଳିଙ୍ଗବାସୀଙ୍କ ଦ୍ୱାରା ପ୍ରତିଷ୍ଠିତ । କାଳକ୍ରମେ ଜାଭା ଦ୍ୱୀପ କଳିଙ୍ଗ ଦ୍ୱୀପ ନାମରେ ଅଭିହିତ ହୋଇଥିଲା । ଏଥିରୁ ସ୍ପଷ୍ଟ ଭାବରେ ଜଣାପଡ଼େ ଯେ ଟାଙ୍ଗ୍ ରାଜ ବଂଶର ବହୁ ପୂର୍ବରୁ କଳିଙ୍ଗବାସୀମାନେ ସୁଦୃଢ଼ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ସ୍ଥାପନ କରିଥିଲେ । ଆଉ ଏକ କିମ୍ବଦନ୍ତୀରେ ବର୍ଣ୍ଣିତ ଅଛି ପାଣ୍ଡବମାନଙ୍କର ମହାମନ୍ତ୍ରୀ ଆଜିସକ ପ୍ରଥମ ଭାରତୀୟ ହିସାବରେ ଅସ୍ତିନାରେ ନିଜର ଆଧିପତ୍ୟ ବିସ୍ତାର କରିଥିଲେ ଏବଂ ଏହି ଦ୍ୱୀପର ନାମ ଜବ ଦ୍ୱୀପ ବୋଲି ପରିଚିତ କରାଇ ଥିଲେ । ଜବ ଦ୍ୱୀପ ହେଉଛି ଆଧୁନିକ ଜାଭା, କଳିଙ୍ଗ ରାଜ୍ୟ ସର୍ବ ପ୍ରଥମେ ମଧ୍ୟ ଜାଭାରେ ସ୍ଥାପିତ ହୋଇଥିଲା । ଯାହା ବର୍ତ୍ତମାନ ହୋ-ଲିଙ୍ଗ୍ ନାମରେ ପରିଚିତ ।

ସୁବର୍ଣ୍ଣ ଦ୍ୱୀପ ସହିତ କଳିଙ୍ଗର ସମ୍ପର୍କ ଯେ କେବଳ କିମ୍ବଦନ୍ତୀରେ ସୀମିତ ଥିଲା ତାହା ନୁହେଁ; ଅନେକ ଐତିହାସିକ ତଥ୍ୟ ମଧ୍ୟ କିମ୍ବଦନ୍ତୀର ଘଟଣାବଳୀକୁ ସମର୍ଥନ କରେ । ମଧ୍ୟ ଜାଭାର ତୁକ୍ ମାସ ନାମକ ସ୍ଥାନରୁ ଖ୍ରୀଃ ୭ମ ଶତାବ୍ଦୀର ଏକ ଶିଳାଲେଖ ବାହାରିଛି । ଏହା କଳିଙ୍ଗର ଲିପି ସଂସ୍କୃତ ଭାଷାରେ ଲେଖା ଯାଇଛି । ଏଥିରେ ଶିବ ଓ ବିଷ୍ଣୁଙ୍କ ପୂଜା ବିଧି ଲେଖାଯାଇଛି ଏବଂ ତୁକ୍ ମାସ ପ୍ରସ୍ରବଣକୁ ପବିତ୍ର ଗଙ୍ଗା ସହିତ ଏକ ସ୍ତୁତିରେ ତୁଳନା କରାଯାଇଛି ।

ଅଷ୍ଟମ ଶତାବ୍ଦୀର ଶେଷଭାଗରେ ସଂସ୍କୃତରେ ରଚିତ ଆର୍ଯ୍ୟ ମଞ୍ଜୁଶ୍ରୀ ମୂଳକଳ୍ପ ଦକ୍ଷିଣପୂର୍ବ ଏସିଆର ଅନେକ ଅଞ୍ଚଳର ନାମ ଉଲ୍ଲେଖ କରିଛି,ଏକ ଶ୍ଳୋକରେ ଲେଖାଯାଇଛି ଦ୍ୱୀପସ୍ୟେବଚ ସର୍ବତ୍ର କଳିଙ୍ଗଦ୍ରେସୁ ଏବଂ କଳିଙ୍ଗ ସମୁଦ୍ର ମଧ୍ୟ ଉଲ୍ଲେଖ ଏଥିରେ ଅଛି ଇନ୍ଦ୍ରନାମକ ଜଣେ ବୌଦ୍ଧ ରାଜା ଜାଭା–ମାଳୟ ଦ୍ୱୀପରେ ରାଜତ୍ୱ କରୁଥିଲେ । କଳସ ନାମକ ସ୍ଥାନରେ ବୌଦ୍ଧଦେବୀ ତାରା ରାଜକୀୟ ଢାଞ୍ଚାରେ ପୂଜିତ ହେଉଥିଲେ । ଏହି ତାରା ଦେବୀ ଜାଭାର ବିଖ୍ୟାତ କଳସାନ ମନ୍ଦିରରେ ପୂଜିତା ତାରାଦେବୀ । ଏ ରାଜା ପନଗକରଣ ୭୭୮ ଖ୍ରୀଷ୍ଟାବ୍ଦରେ ତାରା ଦେବୀଙ୍କୁ ପ୍ରତିଷ୍ଠିତ କରିଥିଲେ ବୋଲି କେଲୁରକ ଶିଳାଲିପିରୁ ଜଣାଯାଏ ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ସର୍ବଶକ୍ତିମାନ ଶୈଳେନ୍ଦ୍ର ରାଜବଂଶର ଶାସନ ଆରମ୍ଭହୁଏ । ଏହି ଶତାବ୍ଦୀର ଶେଷ ବେଳକୁ ଜାଭା, ସୁମାତ୍ରା ଓ ମାଳୟ ଦ୍ୱୀପପୁଞ୍ଜର ସମସ୍ତ ହିନ୍ଦୁରାଜା ଶୈଳେନ୍ଦ୍ରମାନଙ୍କର ଅନୁଗତ ହେବାକୁ ବାଧ୍ୟ ହୋଇଥିଲେ । ସେମାନଙ୍କର ଏକଛତ୍ର ଶାସନ ଫଳରେ ସୁବର୍ଣ୍ଣ ଦ୍ୱୀପରେ ରାଜନୈତିକ ଏକତା ସ୍ଥାପିତ ହେଲା ଏବଂ ନୂତନ ସଭ୍ୟତାର ଅଭ୍ୟୁଦୟ ହେଲା,କଳା, ସ୍ଥାପତ୍ୟ, ଧର୍ମ, ସମାଜ ଓ ଶାସନ ଅବସ୍ଥା ଚରମ ଉତ୍କର୍ଷ ଲାଭ କରିଥିଲା, ବୌଦ୍ଧଧର୍ମ ଥିଲା ରାଜକୀୟ ଓ ସର୍ବସାଧାରଣଙ୍କ ଧର୍ମ । ପୃଥିବୀ ବିଖ୍ୟାତ ବରବୁଦର ଓ ଚଣ୍ଡୀକଳସାନ ଶୈଳେନ୍ଦ୍ରମାନଙ୍କର ଶ୍ରେଷ୍ଠ କୀର୍ତ୍ତି, ଲିଗର ଶିଳାଲେଖ (୭୭୫ ଖ୍ରୀ:) କଳସାନ ଅଭିଲେଖ (ଖ୍ରୀ: ୭୭୮) କଲୁରକ ଅଭିଲେଖ (ଖ୍ରୀ: ୭୮୨) ରୁ ଶୈଳେନ୍ଦ୍ର ରାଜାମାନଙ୍କର ବିଷୟରେ ସବିଶେଷ ବିବରଣୀ ମିଳେ । ବରବୁଦର ବୌଦ୍ଧକୀର୍ତ୍ତିର ଶିଳ୍ପ ଭାସ୍କର୍ଯ୍ୟ ବର୍ଣ୍ଣନା କରି ଡ଼ଃରମେଶ ଚନ୍ଦ୍ର ମଜୁମଦାର ଲେଖିଛନ୍ତି–

"The artistic conception of Barbuddar is thus transparent and sublime and gives a vivid expression to the most abstract and profound philosophy of the Buddhists. If the excellence of art consists in giving a beautiful visual expression to a nobel and lifty ideal, Barbuddar must be accorded the highest rank among the monuments of the world. A new kind of script (which has been called the pre-Nagari script) were introduced in the island during the rule of the Sailendras. The entire Malayasia was called Kalinga at least by the foreigners when the Sailendra dynasty was in power.

ଭାରତରୁ ମିଳୁଥିବା ଶୈଳେନ୍ଦ୍ରମାନଙ୍କର ଅଭିଲେଖରୁ ଜଣାଯାଏ ଯେ, ରାଜା ବାଳପୁତ୍ରଦେବ ନାଳନ୍ଦାରେ ଏକ ବିରାଟ ବିହାର ଏବଂ ନାଗପଟ୍ଟମ୍‌ଠାରେ ଏକ ମହାବିହାର (Monastery) ନିର୍ମାଣ କରିଥିଲେ । ଶୈଳେନ୍ଦ୍ରମାନେ ଏକ ପ୍ରକାର ନୂଆ ଲିପିର ପ୍ରଚଳନ କରିଥିଲେ । ସମ୍ଭବତଃ ଏହା କଳିଙ୍ଗର ଲିପି । ଆରବୀୟ ବିବରଣୀରୁ ଜଣାଯାଏ ଯେ ଏ ସମୟରେ ସମସ୍ତ ସୁବର୍ଣ୍ଣ ଦ୍ୱୀପ କଳିଙ୍ଗ ନାମରେ ସର୍ବତ୍ର ପରିଚିତ ହେଲା । ଶୈଳେନ୍ଦ୍ରମାନଙ୍କର ରାଜଧାନୀ ଥିଲା ଜାଭାରେ, ଯାହାକୁ ଆରବ ଲେଖକମାନେ ମହାରାଜାଙ୍କ ରାଜ୍ୟ ବା ଜାବାଜ୍ ବୋଲି ବର୍ଣ୍ଣନା କରିଅଛନ୍ତି । ଏହି ରାଜ୍ୟମାନଙ୍କର କର୍ତ୍ତୃତ୍ୱ ସମଗ୍ର ମାଳୟ ଦ୍ୱୀପପୁଞ୍ଜ ଏବଂ ପଡ଼ୋଶୀ କାମ୍ବୋଜ ଓ ଚମ୍ପା (ଅନ୍ନମ)ରେ ରହିଥିବାର ପ୍ରମାଣ ଅଭିଲେଖ କିମ୍ବଦନ୍ତୀ ଏବଂ ସେମାନଙ୍କର କୀର୍ତ୍ତିରୁ ଜଣାପଡ଼େ । ଏମାନଙ୍କର ସାମ୍ରାଜ୍ୟ ନବମ ଶତାବ୍ଦୀର ଶେଷ ଆଡ଼କୁ ଦୁର୍ବଳ ହୋଇପଡ଼ିଲା ।

ପ୍ରଥମ ଅବସ୍ଥାରେ ଶୈଳେନ୍ଦ୍ରମାନଙ୍କର ଆନ୍ଧ୍ରର ଚୋଳ ରାଜବଂଶ ସହିତ ସଦ୍‌ଭାବ ରହିଥିଲା । ରାଜେନ୍ଦ୍ର ଚୋଳ (ଖ୍ରୀ: ୧୦୧୦–୧୦୪୧) ସୁବର୍ଣ୍ଣ ଦ୍ୱୀପ ଆକ୍ରମଣ କରି ଶୈଳେନ୍ଦ୍ରମାନଙ୍କୁ ପରାସ୍ତ କରିଥିଲେ । ରାଜେନ୍ଦ୍ର ଚୋଳଙ୍କ ପରେ ତାଙ୍କର ପରବର୍ତ୍ତୀ ରାଜାମାନେ ସୁଦୂର ସୁବର୍ଣ୍ଣ ଦ୍ୱୀପକୁ ନିଜର ଅଧିକାରରେ ରଖିପାରିଲେ ନାହିଁ, କାରଣ ସେମାନେ ପଡ଼ୋଶୀ ରାଜ୍ୟମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ରହିବାକୁ ବାଧ୍ୟ କଲେ । ଚୋଳ ରାଜା ବୀର ରାଜେନ୍ଦ୍ର ଶୈଳେନ୍ଦ୍ରମାନଙ୍କର ଶକ୍ତି ପରାହତ କରିଥିଲେ । ମାତ୍ର ସେ ବିଜୟ ବେଶୀ ଦିନ ସ୍ଥାୟୀ ହେଲା ନାହିଁ । ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଶେଷ ବେଳକୁ ଚୋଳମାନେ ସୁବର୍ଣ୍ଣ ଭୂମି ହରାଇଲେ । ଦ୍ୱାଦଶ ଶତାବ୍ଦୀର ୧ମ ଭାଗରେ ଶୈଳେନ୍ଦ୍ର ରାଜବଂଶ ପ୍ରାୟ ଲୋପ ପାଇଗଲା । ତାଙ୍କର ଇତିହାସ କିଛି ମିଳେ ନାହିଁ ।

ଐତିହାସିକମାନଙ୍କ ମତରେ ଓଡ଼ିଶାର କଙ୍ଗୋଦ ମଣ୍ଡଳର ଶୈଳୋଦ୍ଭବମାନେ ଉତ୍ତରରେ ଭୌମ ଓ ଦକ୍ଷିଣରେ ଗଙ୍ଗମାନଙ୍କର ପରାକ୍ରମ ଓ ରାଜନୈତିକ ଚାପରେ ଉଦ୍‌ବିଗ୍ନ ହୋଇ ନୌ–ବାହିନୀ ସହ ପାଲୁର ବନ୍ଦର ଦେଇ ସୁବର୍ଣ୍ଣ ଦ୍ୱୀପକୁ ଚାଲିଯାଇଥିଲେ ଏବଂ ସେଠାରେ ଶୈଳେନ୍ଦ୍ର ରାଜବଂଶ ସ୍ଥାପନ କରିଥିଲେ । ଏମାନଙ୍କ ପୂର୍ବରୁ ଅନେକ କଳିଙ୍ଗବାସୀ ସୁବର୍ଣ୍ଣ ଭୂମିରେ ବସବାସ କରି କଳିଙ୍ଗର ସଂସ୍କୃତିକୁ ପ୍ରସାର କରିଥିଲେ । ଶୈଳୋଦ୍ଭବମାନେ ସେ ଦ୍ୱୀପପୁଞ୍ଜରେ ପହଞ୍ଚିବା ପରେ କଳିଙ୍ଗବାସୀମାନେ ଉତ୍ସାହିତ

ହୋଇ ପ୍ରଥମେ ରାଜ୍ୟ ଓ ପରେ ସାମ୍ରାଜ୍ୟ ବିସ୍ତାର କରିବା ପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ।

ଶୈଲୋଦ୍ଭବମାନେ ଥିଲେ ବ୍ରାହ୍ମଣ୍ୟ ଧର୍ମର ପୃଷ୍ଠପୋଷକ ମାତ୍ର ବୌଦ୍ଧ ବିଦ୍ୱେଷୀ ନଥିଲେ। ସେମାନେ ସୁବର୍ଣ୍ଣ ଦ୍ୱୀପରେ ପହଞ୍ଚିବା ବେଳକୁ ବୌଦ୍ଧ ଧର୍ମ ଖୁବ୍ ପ୍ରସାର ଲାଭ କରି ସାରିଥିଲେ। ଅବସ୍ଥା ଚକ୍ରରେ ଶୈଳେନ୍ଦ୍ରମାନେ ପ୍ରାୟ ବୌଦ୍ଧ ଧର୍ମର ପୃଷ୍ଠପୋଷକ ହେବା ସ୍ୱାଭାବିକ। ଏ ସମ୍ପର୍କରେ ପ୍ରଶ୍ନ ଉଠିପାରେ ଯେ ଶୈଳେନ୍ଦ୍ରମାନେ ଭାରତର ନାଳନ୍ଦା, ନାଗପଟ୍ଟମ୍ ପ୍ରଭୃତି ସ୍ଥାନରେ ବିରାଟ କୀର୍ତ୍ତିରାଜି ଉତ୍ତୋଳନ କଲେ, ମାତ୍ର ନିଜ ମାତୃଭୂମିରେ କୀର୍ତ୍ତି କାହିଁକି ଗଢ଼ିଲେ ନାହିଁ। ଗଙ୍ଗ, ଭୌମ ଓ କେଶରୀମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ଶୈଲୋଦ୍ଭବମାନେ ନିଜ ମାତୃଭୂମି ଛାଡ଼ିବାକୁ ବାଧ୍ୟ ହୋଇଥିଲେ। ପରେ କଳିଙ୍ଗ ସହିତ ସମ୍ପର୍କ ରଖିବା ସମ୍ଭବ ହୋଇନାହିଁ ରାଜନୈତିକ କାରଣରୁ।

ମାଳୟ ଦ୍ୱୀପପୁଞ୍ଜର ସବୁ ଅଞ୍ଚଳ ଅପେକ୍ଷା କଳିଙ୍ଗର ବାଲିଦ୍ୱୀପ ସହିତ ସାଂସ୍କୃତିକ ଓ ବାଣିଜ୍ୟିକ ସମ୍ପର୍କ ଥିଲା ଅତି ଘନିଷ୍ଠ। ଏହି ସମ୍ପର୍କ ସାରା ପୃଥିବୀରେ ଏତେ ବିଖ୍ୟାତ ଥିଲା ଯେ ଦକ୍ଷିଣ ଓ ଦକ୍ଷିଣ-ପୂର୍ବ ଏସିଆର ଯେ କୌଣସି ଦ୍ୱୀପକୁ ବାଣିଜ୍ୟ କରିବା ପାଇଁ ଯାତ୍ରା "ବାଲିଯାତ୍ରା" ନାମରେ ଖ୍ୟାତିଲାଭ କରିଥିଲା। ଅବଶ୍ୟ ବାଲି ସହିତ କଳିଙ୍ଗର ସମ୍ପର୍କ ଅତି ପ୍ରାଚୀନ। ଏହି ସମ୍ପର୍କ ଅନ୍ୟୂନ ଦୁଇ ହଜାର ବର୍ଷ ପୂର୍ବେ ସ୍ଥାପିତ ହୋଇଥିଲେ ମଧ୍ୟ ବାଲିରେ କଳିଙ୍ଗର ହିନ୍ଦୁ ସଭ୍ୟତା ଏବେ ମଧ୍ୟ ପ୍ରଚଳିତ। ମାଳୟ ଦ୍ୱୀପପୁଞ୍ଜରେ କେତେ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ବିବର୍ତ୍ତନ ଘଟିଛି ଦୀର୍ଘ ଦୁଇ ହଜାର ବର୍ଷ ମଧ୍ୟରେ। ମାତ୍ର ଆଶ୍ଚର୍ଯ୍ୟର କଥା ମୁସଲିମ୍ ଓ ପର୍ତ୍ତୁଗୀଜ ପ୍ରଭାବ ମଧ୍ୟ ବାଲିର ହିନ୍ଦୁ ସଭ୍ୟତାକୁ ଲୋପ କରିପାରି ନାହିଁ।

ବାଲି, ଇଣ୍ଡୋନେସିଆ ଦେଶର ଏକ କ୍ଷୁଦ୍ର ଦ୍ୱୀପ। ଏହାର ଦୀର୍ଘ ୮୦ ମାଇଲ ଏବଂ ପ୍ରସ୍ଥ ପ୍ରାୟ ୫୦ ମାଇଲ। ଜାଭା ଓ ଭାରତୀୟ ମହାସାଗର ଦ୍ୱାରା ଉତ୍ତର ଓ ଦକ୍ଷିଣରେ ପରିବେଷ୍ଟିତ। ବାଲିରେ ଅନେକ ଆଗ୍ନେୟଗିରି ରହିଛି। ସେଥିରୁ କେତେଗୁଡ଼ିଏ ଏବେ ମଧ୍ୟ ସକ୍ରିୟ। ବାଲି ଅଧିବାସୀମାନେ ବିଶ୍ୱାସ କରନ୍ତି ଯେ ଦେବତା ରୁଷ୍ଟ ହେଲେ ଆଗ୍ନେୟଗିରିର ଉଦ୍‌ଗୀରଣ ହୁଏ। ଏହି ଦ୍ୱୀପର ଦୃଶ୍ୟ ଅତି ମନୋରମ। ସମୁଦ୍ର, ବାଲୁକା ତଟ, ନାରିକେଳ କୁଞ୍ଜ, ବଣ, ପାହାଡ଼, ନଦୀ ସୃଷ୍ଟି କରନ୍ତି ଅନୁପମ ପ୍ରାକୃତିକ ଦୃଶ୍ୟ। ପୂର୍ବେ କୁହାଯାଇଛି, ଏହି ଦ୍ୱୀପର କଳିଙ୍ଗ ସହିତ ପ୍ରାଚୀନ ସମ୍ପର୍କ ଅତି ଘନିଷ୍ଠ। ପ୍ରାଚୀନ କାଳରୁ ପ୍ରାୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଦ୍ୱୀପର ନାମ ଥିଲା ନାରିକେଳ ଦ୍ୱୀପ। "ବାଲି" ନାମ ସର୍ବପ୍ରଥମେ ଦେଖିବାକୁ ପାଉ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ରଚିତ ମଞ୍ଜୁଶ୍ରୀ ମୂଳକଳ୍ପ ଗ୍ରନ୍ଥରେ। ଏକ ଶ୍ଳୋକରୁ ଜଣାଯାଏ :-

ଦ୍ୱୀପେ ବରୁସକେ ଚିହବା ନଗ୍ନବାଲି ସମୁଦ୍‌ଭବେ
ଯବ ଦ୍ୱୀପେ ବା ସଦ୍ୱେସୁ ତ ଦନ୍ୟ ଦ୍ୱୀପ ସମୁଦ୍‌ଭବେ
ବାଗ୍ନ ରକାର ବହୁଳା ତୋ ବାଚଦ୍ ଅସ୍ଫୁଟତାନ୍ ଗଣ।

ଏହି ଶ୍ଳୋକରେ ବରୁସକ (ସୁମାତ୍ରା), ନଗ୍ନଦ୍ୱୀପ (ନିକୋବର) ଜାଭା ଓ ବାଲି ଦ୍ୱୀପର ନାମ ଉଲ୍ଲେଖ କରାଯାଇଛି। ବାଲିରେ ହିନ୍ଦୁ ସଭ୍ୟତାର ବିକାଶ ପାଇଁ କଳିଙ୍ଗର ଦାନ ଅତୁଳନୀୟ। ସେମାନଙ୍କର ବେଶଭୂଷା, ଆଚାର ବ୍ୟବହାର, ଦେହରେ ଚିତ୍ରକର ପରିପାଟୀ, ପୂଜାବିଧି, ପର୍ବପର୍ବାଣୀ, ଖାଦ୍ୟ ସାମଗ୍ରୀ ଓଡ଼ିଶା ସହ ଯଥେଷ୍ଟ ସାମଞ୍ଜସ୍ୟ ଏବେ ମଧ୍ୟ ରହିଛି। ଏଗୁଡ଼ିକ ଯେ ପ୍ରାଚୀନ କାଳରୁ ଓଡ଼ିଶାରୁ ପରିବ୍ୟାପ୍ତ ହୋଇଛି ଏଥିରେ ସନ୍ଦେହ ନାହିଁ। ବାଲି ଅଧିବାସୀ "ମା"କୁ ସମ୍ବୋଧନ କରନ୍ତି "ବୁ" ଏବଂ ଓଡ଼ିଆରେ କହନ୍ତି "ବୋଉ"। ଆମ ରାଜ୍ୟର "ଗୁଆ" ବାଲିରେ "ବୁଆ" ନାମରେ ପରିଚିତ। ଆମର "ଚିନାବାଦାମ" ବାଲିରେ "ଚିନା"।

ଖାଦ୍ୟ ସାମଗ୍ରୀରେ ଓଡ଼ିଶା ଓ ବାଲି ଅଧିବାସୀଙ୍କର ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ। ଶାଗ ବିଶେଷ କରି ସଜନା ଶାଗ ଦୁଇ ଦେଶର ଲୋକମାନଙ୍କର ଅତି ପ୍ରିୟ ଖାଦ୍ୟ। କଦଳୀ, ମଞ୍ଜା ଓ ଭଣ୍ଡା ପ୍ରଭୃତିରେ ଓଡ଼ିଆ ଓ ବାଲିର ଲୋକଙ୍କର ଭାରି ଆଗ୍ରହ। ବାଲିର ଲୋକମାନେ ଓଡ଼ିଆଙ୍କ ପରି ବହୁ ପ୍ରକାର ପିଠା ତିଆରି କରନ୍ତି। ଆମର ମଣ୍ଡା ଓ ଏଣ୍ଡୁରି ପିଠା ବାଲି ଭାଷାରେ ସାମ୍ପିଙ୍ଗ୍।

ପୂଜା ପଦ୍ଧତି ଓ ଦେବଦେବୀଙ୍କର ନାମ ପ୍ରାୟ ସମାନ। ଲକ୍ଷ୍ମୀ ଓ ଶ୍ରୀଦେବୀଙ୍କର ପୂଜା ଉଭୟ ଦେଶରେ ଅତି ପ୍ରିୟ। ମାଣବସା ପର୍ବରେ ଧାନକେଣ୍ଡାର ପୂଜା ପଦ୍ଧତି ପ୍ରାୟ ସମାନ। ଓଡ଼ିଶାର ମହେନ୍ଦ୍ର ତନୟା ଓ ବାଲିର ମହେନ୍ଦ୍ର ତନୟା ସର୍ବଶ୍ରେଷ୍ଠ। ପବିତ୍ର ନଦୀ ଏବଂ ଏମାନଙ୍କ କୂଳରେ ଅନେକ ଧର୍ମକୀର୍ତ୍ତି ଓ ତୀର୍ଥ ସ୍ଥାନ ଏବେ ମଧ୍ୟ ରହିଛି।

ଓଡ଼ିଶା ସହିତ ଆଉ ଏକ ସାମଞ୍ଜସ୍ୟ ହେଉଛି ଟେକ୍ସଟାଇଲ ଲୁଗା। ଆମର ସମ୍ବଲପୁରୀ ଓ ବ୍ରହ୍ମପୁରୀ ପାଟର କାରୁକାର୍ଯ୍ୟ ସହିତ ବାଲିର ପାଟୋଳା ଟଣ୍ଡ ବୁଣା ଲୁଗା ପ୍ରାୟ ସମାନ। ଗବେଷଣା ମାଧ୍ୟମରେ ଅନୁଧ୍ୟାନ କରିବାର କଥା ଯେ ଆମର କାରୁକାର୍ଯ୍ୟ ମଣ୍ଡିତ ଟଣ୍ଡ ଲୁଗା ତିଆରି କରିବାର ପ୍ରଣାଳୀ ବାଲିରେ କଳିଙ୍ଗବାସୀମାନେ ଆରମ୍ଭ କରିଥିଲେ କିମ୍ବା ବାଲିରେ ଏହା ନିଜସ୍ୱ। ଆଉ ଏକ ବିଷୟରେ କଳିଙ୍ଗର ପ୍ରଭାବ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା। ବାଲିର କରଙ୍ଗସେମ୍ ଜିଲ୍ଲାରେ ଅନେକ ଲୋକ ବ୍ରାହ୍ମଣ-ଶୈବ-କଳିଙ୍ଗ ହିସାବରେ ପରିଚିତ। କଳିଙ୍ଗର ଅଧିବାସୀମାନେ ବାଲିରେ ବସତି ସ୍ଥାପନ କରି ଆସିଥିବା ଦିନଠାରୁ ଏ ପରମ୍ପରା ରହି ଆସିଛି।

ବାଲିର ଅଧିବାସୀମାନେ ସାଧାରଣତଃ ହିନ୍ଦୁ। ସେମାନେ ସାମାଜିକ ଓ ସାଂସ୍କୃତିକ ବିବର୍ତ୍ତନକୁ ସହଜରେ ଗ୍ରହଣ କରନ୍ତି ନାହିଁ। ନୂତନ ଉପାଦାନ ପ୍ରାଚୀନ ପ୍ରଥା ସହିତ ସଂହତି ଘଟିଛି। ଏହା ହିଁ ହେଉଛି ବାଲି ସଭ୍ୟତାର ବିଶେଷତ୍ୱ।

ଓଡ଼ିଶାର ପ୍ରାଚୀନ ନୌ-ବାଣିଜ୍ୟ ଆଜି କିମ୍ବଦନ୍ତୀର ବିଷୟବସ୍ତୁ ଓ ଐତିହାସିକ ଘଟଣା। ଏହି ପ୍ରାଚୀନ ପରମ୍ପରାର ସ୍ମୃତି ଉଦ୍ଦେଶ୍ୟରେ କାର୍ତ୍ତିକ ପୂର୍ଣ୍ଣମୀ ଦିନ ବୋଇତ ଭସାଣି ଉତ୍ସବ

[illegible]

ପାଳନ କରାଯାଏ । ଅତୀତ ସ୍ମୃତିକୁ ପୁନରୁଦ୍ଧାର କରି ବାଲି ସହିତ ସାଂସ୍କୃତିକ ସମ୍ପର୍କରେ ପୁନରୁତ୍ଥାନ ନିମିତ୍ତ ଓଡ଼ିଶା ସରକାରଙ୍କର ପର୍ଯ୍ୟଟନ ଓ ସଂସ୍କୃତି ବିଭାଗ ଆନୁକୂଲ୍ୟରେ ବାଲିରେ ଏକ ଉତ୍ସବ ୧୯୯୩ ମସିହା ଜାନୁଆରୀ ମାସରେ ପାଳନ କରାଯିବାର ଯୋଜନା ଚାଲିଛି । ଏହି ଉତ୍ସବ ପାଳିତ ହେଲେ ଉଭୟ ଦେଶର ସାଂସ୍କୃତିକ ଓ ବାଣିଜ୍ୟିକ ସମ୍ପର୍କ ପୁନଃ ପ୍ରତିଷ୍ଠିତ ହୋଇପାରିବ ଏବଂ ଦୁଇ ଦେଶର ଗବେଷକ, ଐତିହାସିକ ଓ ନୃତତ୍ତ୍ୱବିତ୍‌ମାନଙ୍କର ଗବେଷଣା ନିମିତ୍ତ ପଥ ଉନ୍ମୁକ୍ତ ଓ ସୁଗମ ହୋଇପାରିବ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ,
ଭୁବନେଶ୍ୱର ।



ବଲାଙ୍ଗୀର ଗାନ୍ଧୀ ଭବନଠାରେ ଅନୁଷ୍ଠିତ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶରେ ମୁଖ୍ୟ ସମ୍ପାଦକ ଶ୍ରୀ ସତୀଶ ପାଡ଼ି । ମୁଖ୍ୟ ସମ୍ପାଦକଙ୍କ ବାମ ପାର୍ଶ୍ୱରେ ପୂର୍ବତନ ପାର୍ଲାମେଣ୍ଟ ସଦସ୍ୟ ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡା ଓ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଶ୍ରୀ ଶଶାଙ୍କ ଶେଖର ପଣ୍ଡା ଏବଂ ଡାହାଣରେ ଜିଲ୍ଲା ମୁଖ୍ୟ ଯୋଜନା ଅଧିକାରୀ ଶ୍ରୀ ସୂର୍ଯ୍ୟନାରାୟଣ ପଣ୍ଡା ଏବଂ ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ମୁରଲୀଧର ପାଢ଼ୀ ।

# ଯେବେ ହେବି ମୁଁ ବଡ଼



● ଶ୍ରୀ ବ୍ରଜସୁନ୍ଦର ମହାପାତ୍ର

ମନେ ମୋର ଆଶା ରଖୁଛି ଯେବେ ହେବି ମୁଁ ବଡ଼,
ଜ୍ଞାନ ଅର୍ଜି କାମ କରିବି କ୍ଷଣେ ନ ହେବି ଜଡ଼ ।
ହୋଇବି ବିଜ୍ଞାନୀ ବିରାଟ ଦେଶେ କରିବି ନାଆଁ
ଏହି ମୋ ଉତ୍କଳ ଜନନୀ ପାଇଁ ପାତିବି ବାହା ।
ଯେଉଁ ରାଜ୍ୟ ଦିନେ ଥିଲା ମୋ ଶସ୍ୟ ଶ୍ୟାମଳ ଭୂଇଁ,
ଯାହାର ମନ୍ଦିର କେତନ ଥିଲା ସରଗ ଛୁଇଁ,
ଯାହାର ସାହସୀ ପାଇକ ଥିଲେ ଜିଣି କାବେରୀ,
ଜାହ୍ନବୀ ତରଙ୍ଗେ ଥରାଇ ଥିଲେ ବଜାଇ ତୁରୀ;
ସୁମାତ୍ରା, ମାଳୟ, ସିଂହଳ, ଜାଭା, ବୋର୍ଣ୍ଣିଓ, ବାଲି–
ଦରିଆ ସେପାଖେ ମିଳଇ ଯା'ର ଚରଣ ଧୂଳି,
ସେହି ରାଜ୍ୟ ବୁକେ ଲଭିଛି ଯେଣୁ ମୁହିଁ ଜନମ
ତାହାରି ପାଇଁକି ଜୀବନ ଦେବା ମୋର କରମ ।
ପ୍ରତି ଗୋଡ଼ି ମାଟି ଯାହାର ଅଛି ବିଭବେ ପୂରି,
ଯତନ ଅଭାବୁ ହୋଇଛି ସିନା ସେ ହତ ଶିରି !
ହଜି ଯାଇଥିବା କୀରତି ଫେରି ଆଣିବା ଲାଗି
ଜୀବନ ଢାଳିବି, ହୋଇବି ସୁଖ ସରାଗ ତ୍ୟାଗୀ ।
ହୀରାକୁଦ ବୁକୁ କରିବି ହୀରା ବାହାର ମୁହିଁ,
ମହାନଦୀ ଜଳେ ରଚିବି କେତେ ଶ୍ୟାମଳ ଭୂଇଁ ।
ପ୍ରତି ଗାଆଁ ଗଣ୍ଡା ସହର–ସାରା ଓଡ଼ିଶା ବୁକେ
ପ୍ରତି ଘରେ ଘରେ ବିଜୁଳି ଯିବ ଛୁଟି ଚମକେ ।
କାହିଁ କେତେ ଭରି ରହିଛି ଲୁହା, କୋଇଲା ଦେଶେ
ମାଙ୍ଗାନିଜ, ସୁନା, ଗେଲୁଟି ଅବା ଅଭ୍ର ବିଶେଷେ;
ଗୋଟି ଗୋଟି କରି କରିବି ମାଟି ତଳୁ ବାହାର
ଯାହା ବିନିଯୋଗେ ଓଡ଼ିଶା ହେବ ଶିଳ୍ପ ଭଣ୍ଡାର ।
ଶିଳ୍ପ ଚାତୁରୀରେ ନିପୁଣ ହୋଇ ମୋ ରାଜ୍ୟ ଭାଇ
ଆଗ ପରି ଯେବେ ବିଦେଶେ ଯିବେ ବୋଇତ ବାହି
ବଣିକ ବେପାରେ ଆଣିବେ ମଣି ମାଣିକ୍ୟ ବୋହି
ସାର୍ଥକ ହୋଇଲା ଜ୍ଞାନ ମୋ ଯାଇଁ ମଣିବି ମୁହିଁ ।
ଶିକ୍ଷୋନ୍ନତ କରି ଉତ୍କଳେ ହେବି ଜନତା ସେବୀ
ଦୁଃଖୀ, ରୋଗୀ, ଶୋକାତୁରର ପାଇଁ ଜୀବନ ଦେବି ।
ଲକ୍ଷ୍ୟ ରଖି ସଦା ଚାଲିବି ସାରା ଭାରତୁଁ ମୋର
ରୋଗ, ଶୋକ, ଦୁଃଖ, ଅଭାବ ଯେମନ୍ତେ କରିବି ଦୂର ।
ଉଚ୍ଚ ନୀଚ ଛୁଆଁ ଅଛୁଆଁ ଭେଦ ବିଭେଦ ଭୁଲି
ଅନାଥ ଶିଶୁରେ ଆନନ୍ଦେ ନେବି ବୁକୁରେ ତୋଳି ।
ଭାରତୀୟ ମନୁଁ ବିଭେଦ ଭାବ ଦେବି ଉଭାଇ
ପ୍ରତି ଜନ ହୃଦେ ସେନେହ ମନ୍ଦାକିନୀ ବୁହାଇ ।
ସଂକୀର୍ଣ୍ଣତା ମନୁଁ ମୋହର ଯେତେ ପାରିବି ଛାଡ଼ି
ସାରା ବିଶ୍ୱ ପାଇଁ ପୀରତି ସେତେ ପାରିବି ବାଢ଼ି !
ପ୍ରତି ବିଶ୍ୱଜନେ ମଣିବି ଏକ ମାନବ ଜାତି
ସ୍ନେହ ଶ୍ରଦ୍ଧା ପ୍ରୀତି ସେବାରେ ରଖୁଥିବି ମୋ ମତି,
ଉତ୍କଳୁଁ ଭାରତ, ଜଗତ ମଣି ଆପଣା ଘର
ପ୍ରତିଟି ସେବାରେ ବିତାଇ ଦେବି ଜୀବନ ମୋର ।

ବୀର ନରସିଂହପୁର, ପୁରୀ ।



ସ୍ନେହମୟୀ ଜନନୀର କେତେ ଦୁଃଖ କଷ୍ଟରେ,
ଜନ୍ମେ ଯେଉଁ ଶିଶୁ ପ୍ରାଣ ଧରିତ୍ରୀର-ଅଙ୍ଗନେ ।
ନଫୁଟନ୍ତୁ ଜ୍ଞାନ ପୁଷ୍ପ ତା' ମାନସ–ସଲିଳେ,
କିପରି ଚିହ୍ନିବା କହ ସେ ପ୍ରତିଭା କମଳେ !
ଆଜି ଯେ ଅଜ୍ଞାନ ଶିଶୁ କାଲି ହେଲେ ଯୁବକ,
କାହିଁକି ନହେବ କହ ଏ ଜାତିର ଶୁଳକ ?

*[illegible] "ସୁରଭି"*
*[illegible]*
*ରଚିତ "ଆଜି ଯେ ଶିଶୁ"ରୁ [illegible] ।*








ସମ୍ବଲପୁର ଜିଲ୍ଲାର କୋଲାବିରା ପଞ୍ଚାୟତ ସମିତି ଅନ୍ତର୍ଗତ ପରମାଣପୁର ଗ୍ରାମ ପଞ୍ଚାୟତର ଗିରିଆପାଲି ଗ୍ରାମର ଶ୍ରୀଯୁକ୍ତ ପଦ୍ମଲୋଚନ ପଟେଲ ଜଣେ ଉନ୍ନତ କ୍ଷୁଦ୍ର ଚାଷୀ ଅଛନ୍ତି । ଖରାଟିଆ ଚାଷ କରିବା ପାଇଁ ସେ ତିନି ଅଶ୍ୱଶକ୍ତି (ସି ଏଚ୍.ପି.) ପାଣି ପମ୍ପ କିଣିବା ପାଇଁ କୋଲାବିରା ବି.ଡି.ଓ.ଙ୍କୁ ଆବେଦନ କରିଥିଲେ । ଏହି ଋଣ ଆଇ.ଆର୍.ଡି.ପି. ଯୋଜନାରେ ମଞ୍ଜୁର କରାଯାଇଥିଲା ଓ ଝାରସୁଗୁଡ଼ା ଭୂ-ଉନ୍ନୟନ ବ୍ୟାଙ୍କ ଜରିଆରେ ୧୦,୫୦୦ ଟଙ୍କା (ଦଶ ହଜାର ପାଞ୍ଚଶହ ଟଙ୍କା) ପାଣି ପମ୍ପ କିଣିବା ପାଇଁ ପାଇଥିଲେ ଏହି ପାଣି ପମ୍ପକୁ ସେ କୁଚିନ୍ଦାରୁ କିଣିଥିଲେ

ପାଣି ପମ୍ପ କିଣିବା ପୂର୍ବରୁ ପାଣି ଅଭାବରୁ ତାଙ୍କର ରବି ଫସଲ ସୋରିଷ, ମୁଗ, ଗହମ, କୋବି ଇତ୍ୟାଦି ମରି ଯାଉଥିଲା ଓ ବାର୍ଷିକ ମାତ୍ର ୧,୦୦୦ ଟଙ୍କା ପର୍ଯ୍ୟନ୍ତ ଆଦାୟ ପାଉଥିଲେ । କିନ୍ତୁ ବର୍ତ୍ତମାନ ତାଙ୍କର ପାଣି ପାଇଁ ଆଉ ଚିନ୍ତା ନାହିଁ । ସେ ୩ ଏକର ଜମିରେ ସୋରିଷ, ୨ ଏକର ଜମିରେ ବନ୍ଧା କୋବି ଏବଂ ୨ ଏକର ଜମିରେ ଆଳୁ ଚାଷ କରି ବାର୍ଷିକ ସମୁଦାୟ ପ୍ରାୟ ୧୨,୦୦୦ (ବାର ହଜାର ଟଙ୍କା) ଆଦାୟ କରୁଛନ୍ତି । ବର୍ତ୍ତମାନ ଟଙ୍କା ସଞ୍ଚୟ କରିବା ସହିତ ପମ୍ପ ପାଇଁ ଯେଉଁ ଋଣ କରିଥିଲେ ତାହିଁର ଅଧା ପରିଶୋଧ କରି ଦେଲେ ପମ୍ପର ଋଣ ପାଇଁ ୨୫% ରିହାତି ମଧ୍ୟ ପାଇ ଥିଲେ । ସେ ଆଗ ଅପେକ୍ଷା ବର୍ତ୍ତମାନ ବେଶ୍ ସୁଖରେ ଚଳୁଛନ୍ତି ।

ସେ ଗୋଟିଏ ସାକ୍ଷାତ୍‌କାରରେ କହନ୍ତି ଯେ କ୍ଷୁଦ୍ର ଚାଷୀମାନଙ୍କ ପାଇଁ ସରକାରଙ୍କ ଏହି ଯୋଜନା ଅତ୍ୟନ୍ତ ଫଳପ୍ରଦ । "ମୁଁ ଆଶା କରୁଛି ସରକାରଙ୍କ ଏହି ଯୋଜନାରୁ ଅନ୍ୟ ଚାଷୀମାନେ ଋଣ ନେଇ ତା'ର ଠିକ୍ ଭାବରେ ବିନିଯୋଗ କଲେ ନିଶ୍ଚୟ ଭାବରେ ଉପକୃତ ହୋଇପାରିବେ ।

---

ଶମ୍ଭୁ ଶରଣ ଗୋସ୍ୱାମୀ,
ମଣ୍ଡଳ ସଙ୍ଗଠକ,
ପଲ୍ଲୀ ଶ୍ରୋତା ମଣ୍ଡଳୀ ସମୂହ,
ସମ୍ବଲପୁର ।




କେନିଲ୍‌ୱାର୍ଥ ହୋଟେଲରେ ଅନୁଷ୍ଠିତ ହୋଟେଲ ଏବଂ ରେଷ୍ଟୁରାଣ୍ଟ ସଙ୍ଘର ଏକ ଉତ୍ସବରେ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ଅଭିଭାଷଣ ।

# ସମ୍ବାଦ ପରିକ୍ରମା

## ରାଜ୍ୟସ୍ତରୀୟ ଗାନ୍ଧୀ ଜୟନ୍ତୀ ଉତ୍ସବ ପାଳନ – ବିଧାନସଭା ପ୍ରାଙ୍ଗଣରେ ରାଜ୍ୟପାଳ, ମନ୍ତ୍ରୀଗଣ ଓ ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ଦ୍ୱାରା ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତିରେ ଶ୍ରଦ୍ଧାସୁମନ ଅର୍ପଣ

ଗତ ଅକ୍ଟୋବର ଦୁଇତାରିଖ ଦିନ ରାଜ୍ୟ ବିଧାନସଭା ପ୍ରାଙ୍ଗଣରେ ମହାମାନବ ମହାତ୍ମାଗାନ୍ଧୀଙ୍କ ୧୩୩ ତମ ପବିତ୍ର ଜୟନ୍ତୀ ଅବସରରେ ରାଜ୍ୟପାଳ ଶ୍ରୀ ଶର୍ମା, ରାଜ୍ୟମନ୍ତ୍ରୀମଣ୍ଡଳର ସଦସ୍ୟ, ବିଧାନସଭା ସଦସ୍ୟଗଣ, ବହୁ ବରିଷ୍ଠସରକାରୀ କର୍ମଚାରୀ, ସାମ୍ବାଦିକ ଓ ବହୁଗଣ୍ୟମାନ୍ୟ ବ୍ୟକ୍ତି ଜାତିର ଜନକ ଗାନ୍ଧୀଜୀଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ କରି ସ୍ୱାଧୀନତା ସଂଗ୍ରାମର ଏହି ମହାନ ରଥୀଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ । ତାପରେ ରାମଧୂନ ଓ ଗାନ୍ଧୀଭଜନମାନ ଗାନ କରାଯାଇଥିଲା ।

ପୃଥିବୀରେ ସତ୍ୟାଗ୍ରହ ଓ ଅହିଂସା ଆନ୍ଦୋଳନର ପ୍ରବର୍ତ୍ତକ ମହାତ୍ମାଗାନ୍ଧୀ ସରଳଜୀବନ ତଥା ଉଚ୍ଚବିଚାରର ମୂର୍ତ୍ତିମାନ୍ ପ୍ରତୀକ ଥିଲେବୋଲି ମାନ୍ୟବର ରାଜ୍ୟପାଳ ଶ୍ରୀ ଶର୍ମା ପ୍ରକାଶ କରିଥିଲେ । ସତ୍ୟର ଏକନିଷ୍ଠ ପୂଜାରୀ ମହାତ୍ମାଗାନ୍ଧୀ "କର ବା ମର"ର ଉଦ୍‌ଘୋଷ ଦ୍ୱାରା ପ୍ରବଳ ପରାକ୍ରମୀ ବ୍ରିଟିଶ୍ ସରକାରର ଶୃଙ୍ଖଳରୁ ଭାରତକୁ ମୁକ୍ତ କରି ସ୍ୱାଧୀନତା ଆଣି ଦେଇଥିଲେ । ଅହିଂସା ଓ ସତ୍ୟ ପାଇଁ ନୈତିକ ସଂଗ୍ରାମ ଏବଂ ତ୍ୟାଗପୂତ ଦୃଢ଼ ଆତ୍ମବଳୀରେ ଅସୀମ ମାନସିକ ଶକ୍ତିସମ୍ପନ୍ନ ଗାନ୍ଧିଜୀ ଯେଉଁ ଅଭୂତପୂର୍ବ କଲ୍ୟାଣକର କାର୍ଯ୍ୟ କରିଗଲେ ତାହା ସାରା ପୃଥିବୀର ଜନତାଙ୍କୁ ବିସ୍ମୟାଭିଭୂତ କରିଦେଇଥିଲା, ବୋଲି ଶ୍ରୀ ଶର୍ମା ବର୍ଣ୍ଣନା କରିଥିଲେ । ଗାନ୍ଧୀଜୀ ତାଙ୍କର ସ୍ୱପ୍ନର ଭାରତ "ରାମରାଜ୍ୟ"ରେ ପରିଣତ ହେବା ବିଷୟରେ ସ୍ୱପ୍ନ ଦେଖିଥିଲେ ତାହା ଆଜି ସ୍ମରଣ କଲାବେଳେ ସାମ୍ପ୍ରତିକ ଦେଶର ଅବସ୍ଥା ଦେଖି ଘୋର ଦୁଃଖ, ନୈରାଶ୍ୟ ଓ ଆତ୍ମଗ୍ଲାନିରେ ହୃଦୟ ବିଦୀର୍ଣ୍ଣ ହୋଇଯାଉଛି ବୋଲି ଶ୍ରୀ ଶର୍ମା କ୍ଷୋଭ ପ୍ରକାଶ କରି କହିଥିଲେ ଯେ ହିଂସା, ଅସୂୟା, ବିଦ୍ୱେଷ ମଧ୍ୟରେ ନିମଜ୍ଜିତ ଏହି ଅଧୋଗାମୀ ସମାଜକୁ ଅମୃତର ସ୍ପର୍ଶ, ଶାନ୍ତିର ମାର୍ଗ ମିଳୁ ବୋଲି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ସେହି ମହାମାନବଙ୍କର ବାଣୀକୁ ଶୁଦ୍ଧ ଅନ୍ତଃକରଣରେ ପାଳନ କରିବାକୁ ଶ୍ରୀ –ଶର୍ମା ପରାମର୍ଶ ଦେଇଥିଲେ ।

ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର ବଳିଷ୍ଠ, ସମ୍ବେଦନଶୀଳ, ତ୍ୟାଗଦୀପ୍ତ ଏହି ମହାନ୍ ଆତ୍ମାଙ୍କ ନିକଟରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣ କରି ଜାତିର ଜନକ ମହାତ୍ମାଗାନ୍ଧୀ, ବୁଦ୍ଧ ଓ ଯୀଶୁଙ୍କ ସହ ତୁଳନୀୟ ବୋଲି ପ୍ରକାଶ କରିଥିଲେ । ମହାତ୍ମାଙ୍କ ଜୀବନର ଦୀକ୍ଷା ଥିଲା ସତ୍ୟର ଉପାସନା, ଜୀବନର ଧ୍ୟେୟ ଥିଲା ଶାନ୍ତି ଓ ଅହିଂସା । ଆଚରଣଶୁଦ୍ଧ ସରଳ ଜୀବନଯାପନ କରି ଭାରତୀୟ ଜନସାଧାରଣଙ୍କୁ ମାନବିକତାର ମହାମନ୍ତ୍ରରେ ଦୀକ୍ଷିତ କରିବା ପାଇଁ ଏହି କାଳଜୟୀ ମହାପୁରୁଷ ଆଜୀବନ ସାଧନା କରିଯାଇଥିଲେ ବୋଲି ଶ୍ରୀ କର କହିଥିଲେ । ତାଙ୍କର ନୀତି ଓ ଆଦର୍ଶକୁ ଜୀବନରେ ଅନୁସରଣ କରିବା ପାଇଁ ଓ ଦେଶରେ ଶାନ୍ତି, ସଂହତି ଓ ଐକ୍ୟ ସ୍ଥାପନ କରିବା ପାଇଁ ଆଜି ଦେଶବାସୀ ତାଙ୍କର ଆଶୀର୍ବାଦ ଭିକ୍ଷା କରନ୍ତି ବୋଲି ଶ୍ରୀ କର ପ୍ରକାଶ କରିଥିଲେ ।

ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ, ଶିକ୍ଷାମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ, ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ସାମିରାମ ମାଝୀ, ବିଧାନସଭାର ବହୁ ସଦସ୍ୟ, ରାଜ୍ୟସରକାରଙ୍କ ବରିଷ୍ଠ କର୍ମକର୍ତ୍ତାଗଣ, ବହୁଗଣ୍ୟମାନ୍ୟ ବ୍ୟକ୍ତି, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ ଏହି ଉତ୍ସବରେ ଯୋଗ ଦେଇ ମହାତ୍ମା ଗାନ୍ଧୀଙ୍କ ପ୍ରତିମୂର୍ତ୍ତିରେ ଭକ୍ତିପୁଷ୍ପ ଅର୍ପଣ କରିଥିଲେ ।

## ୪୩ ତମ ଯକ୍ଷ୍ମା ଷ୍ଟାମ୍ପ ବିକ୍ରୟ ଅଭିଯାନ ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଘାଟିତ

ସମ୍ପ୍ରତି ରାଜ୍ୟରେ ଗାନ୍ଧୀଜୟନ୍ତୀ ପାଳିତ ହେଉଥିବା ଅବସରରେ ରାଜଭବନ ପରିସର ମଧ୍ୟରେ ୪୩ ତମ ଯକ୍ଷ୍ମା ଷ୍ଟାମ୍ପ ବିକ୍ରୟ ଅଭିଯାନକୁ ରାଜ୍ୟପାଳ ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମା ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି ।

ଓଡ଼ିଶା ରାଜ୍ୟ ଯକ୍ଷ୍ମା ଆସୋସିଏସନ୍ ଆନୁକୂଲ୍ୟରେ ରାଜଭବନଠାରେ ଏହି ଅଭିଯାନର ଉଦ୍‌ଘାଟନୀ ଉତ୍ସବ ଆୟୋଜିତ ହୋଇଥିଲା । ପ୍ରତିବର୍ଷ ପରି ଚଳିତ ବର୍ଷ ମଧ୍ୟ ରାଜ୍ୟରେ ଯକ୍ଷ୍ମା ଷ୍ଟାମ୍ପ ବିକ୍ରୟକରି ତଦ୍‌ଲବ୍ଧ ଧନକୁ ଯକ୍ଷ୍ମାରୋଗ ନିରାକରଣ ପାଇଁ ବିଭିନ୍ନ କାର୍ଯ୍ୟକ୍ରମରେ ବିନିଯୋଗ କରାଯିବା ହେଉଛି ଏହାର ଲକ୍ଷ୍ୟ । ସମାଜରୁ ଯକ୍ଷ୍ମାରୋଗର ସମ୍ପୂର୍ଣ୍ଣ ନିରାକରଣ ନିମନ୍ତେ ରାଜ୍ୟସରକାର, ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କର ଆକୁଣ୍ଠ ସହଯୋଗ କାମନାକରି ଶ୍ରୀ ଶର୍ମା କହିଥିଲେ ଯେ, ସ୍ୱାସ୍ଥ୍ୟସେବା ପ୍ରତି ଅଗ୍ରାଧିକାର ଦିଆନଗଲେ ଦାରିଦ୍ର୍ୟର ସୀମାରେଖାତଳେ ରହିଥିବା ଜନସାଧାରଣଙ୍କୁ ଯକ୍ଷ୍ମାପରି ଏକ ବ୍ୟାଧିରୁ ରକ୍ଷା କରିବା ଅତି କଷ୍ଟକର ବ୍ୟାପାର ହେବ । ବିକାଶଶୀଳ ରାଷ୍ଟ୍ରରେ ଅର୍ଥନୈତିକ ଅବସ୍ଥାର ଅଭିବୃଦ୍ଧି ପାଇଁ ଶିକ୍ଷାର ପ୍ରସାର ଓ ମାନବର ଆତ୍ମକୈନ୍ଦ୍ରିକ ଭାବନା ଦ୍ୱାରା ପରିବେଶର ପ୍ରଦୂଷଣ ତଥା ପୁଷ୍ଟିକର ଖାଦ୍ୟର ଅଭାବ ଯୋଗୁଁ ସାଧାରଣତଃ ଯକ୍ଷ୍ମାରୋଗ ବ୍ୟାପିଥାଏ । ଏହାର ପ୍ରତିକାର ନିମନ୍ତେ ଯୋଜନାବଦ୍ଧ କାର୍ଯ୍ୟକ୍ରମଗୁଡ଼ିକୁ ଅର୍ଥାଭାବରୁ ମୁକ୍ତରଖିବାକୁ ମାନ୍ୟବର ରାଜ୍ୟପାଳ ପରାମର୍ଶ ଦେଇଥିଲେ । ଏଭଳି ଏକ ମହାନ୍ କାର୍ଯ୍ୟ ନିମନ୍ତେ ଅର୍ଥାଭାବ ଆଦୌ ପ୍ରତିବନ୍ଧକ ହେବ ନାହିଁ ବୋଲି ସେ ଆଶାପୋଷଣ କରିବା ସହିତ ଦୃଢ଼ ମନୋବଳ ଓ ସେବା ମନୋଭାବର ଅଭାବ ଯେ ବିଶେଷ ଭାବେ ଆଜି ପରିଲକ୍ଷିତ ହେଉଛି । ସେଥିପ୍ରତି ଦୃଷ୍ଟି ଦେଇ, ଜନଚେତନା ସୃଷ୍ଟି କରିବାକୁ ଶ୍ରୀ ଶର୍ମା ପରାମର୍ଶ ଦେଇଥିଲେ । ଦେଶରେ ମିଳୁଥିବା ଔଷଧିଗୁଣଯୁକ୍ତ ତରୁଲତା ଗୁଳ୍ମର ସଦ୍‌ବ୍ୟବହାର କରି ବିଭିନ୍ନ ରୋଗ ପାଇଁ ଔଷଧ ପ୍ରସ୍ତୁତ କରାଯାଇପାରିଲେ ରୋଗୀମାନଙ୍କୁ ଅପେକ୍ଷାକୃତ କମ୍ ମୂଲ୍ୟରେ ଔଷଧ ଯୋଗାଇବା ସମ୍ଭବ ହୋଇପାରିବ ବୋଲି ସେ ପରାମର୍ଶ ଦେଇଥିଲେ ।

ରାଜ୍ୟ ଯକ୍ଷ୍ମା ଆସୋସିଏସନ୍‌ର ସଚିବ ଡକ୍ଟର ଏସ୍: ଏନ୍: ତ୍ରିପାଠୀ ଆସୋସିଏସନ୍‌ର ବାର୍ଷିକ ବିବରଣୀ ପ୍ରଦାନ କରିବା ସହ ଜିଲ୍ଲା ହେଡ୍‌କ୍ୱାର୍ଟର ଡାକ୍ତରଖାନା ଗୁଡ଼ିକରେ ଯକ୍ଷ୍ମା ରୋଗୀଙ୍କ ପାଇଁ ଅଧିକ ଶଯ୍ୟାର ବ୍ୟବସ୍ଥା କରିବା ଓ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକରେ ରୋଗ ନିରୂପଣ ନିମନ୍ତେ ପରୀକ୍ଷାଗାରଗୁଡ଼ିକୁ ଆଧୁନିକ ଯନ୍ତ୍ରପାତି ଯୋଗାଇଦେବା ନିତ୍ୟାନ୍ତ ଆବଶ୍ୟକ ବୋଲି ମତବ୍ୟକ୍ତ କରିଥିଲେ । ରାଜ୍ୟରେ ବର୍ତ୍ତମାନ ପ୍ରାୟ ୮ ଲକ୍ଷରୁ ଅଧିକ ଯକ୍ଷ୍ମାରୋଗୀ ରହିଥିବାରୁ ଓ ସେମାନଙ୍କ ମଧ୍ୟରୁ ପ୍ରାୟ ଶତକଡା ୨୫ ଭାଗ ରୋଗ ସଂକ୍ରମଣକ୍ଷମ ହୋଇଥିବାରୁ ଏ ଦିଗରେ ଫଳପ୍ରଦ ଚିକିତ୍ସା ପାଇଁ ଅଧିକ ଅର୍ଥ ବିନିଯୋଗ କରିବାକୁ ସେ ଅନୁରୋଧ କରିଥିଲେ ।

## ପୋଲିସ ପ୍ରଶିକ୍ଷଣ ଅନୁଷ୍ଠାନ ମୁଖ୍ୟମାନଙ୍କର ୨୧ତମ ଆଲୋଚନା ଚକ୍ର ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଯାପିତ

ରାଜନୈତିକ ଅସ୍ଥିରତା, ସାମାଜିକ ବ୍ୟାଧି ଓ ହିଂସାପୂର୍ଣ୍ଣ ବାତାବରଣ ସମ୍ବଳର ଅଭାବ ସତ୍ତ୍ୱେ ପୋଲିସ୍ ନିଜର ଯୋଗ୍ୟତା, ନିଷ୍ଠା ଓ କାର୍ଯ୍ୟଦକ୍ଷତାକୁ ବଜାୟ ରଖିବା ପାଇଁ ଅବିରତ ଉଦ୍ୟମ ଅବ୍ୟାହତ ରଖୁ ବୋଲି ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗତକାଲି ପୋଲିସ୍ ବାହିନୀକୁ ଆହ୍ୱାନ ଦେଇଛନ୍ତି ।

ରାଜ୍ୟ ସୂଚନା ଭବନଠାରେ ଓଡ଼ିଶାରେ ପ୍ରଥମ ଥର ପାଇଁ ହେଉଥିବା ୩ ଦିନ ବ୍ୟାପୀ ପୋଲିସ୍ ପ୍ରଶିକ୍ଷଣ ଅନୁଷ୍ଠାନ ମୁଖ୍ୟମାନଙ୍କର ୨୧ତମ ଆଲୋଚନା ଚକ୍ର ଉଦ୍‌ଯାପନୀ ଉତ୍ସବରେ ମାନ୍ୟବର ରାଜ୍ୟପାଳ ମୁଖ୍ୟ ଅତିଥି ଭାବେ ଯୋଗଦାନ କରିଥିଲେ । ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାରେ ପୋଲିସକୁ ଆଭ୍ୟନ୍ତରୀଣ ସୁରକ୍ଷା, ଧନଜୀବନ ଏବଂ ଶାନ୍ତିଶୃଙ୍ଖଳା ରକ୍ଷାର ଜାଗ୍ରତ ପ୍ରହରୀ ବୋଲି ଅଭିହିତ କରି ହିଂସା, ଦ୍ୱେଷ ଓ ଅସୂୟାର କଳୁଷିତ ଅଧୋଗାମୀ ବାତାବରଣ ମଧ୍ୟରେ ପୋଲିସର ଗୁରୁଦାୟିତ୍ୱ କ୍ରମଶଃ କଠିନରୁ କଠିନତର ହୋଇଯାଉଛି ବୋଲି ଶ୍ରୀ ଶର୍ମା ମତବ୍ୟକ୍ତ କରିଥିଲେ । ବିଂଶ ଶତାବ୍ଦୀକୁ ଏକ ଚେତନାର ଶତାବ୍ଦୀ ଓ ବିଜ୍ଞାନର ବିସ୍ଫୋରଣରେ ଉଦ୍‌ଭାସିତ ଏହି ଶତାବ୍ଦୀରେ ପୋଲିସ ବାହିନୀକୁ ଉପଯୁକ୍ତ ପ୍ରଶିକ୍ଷଣ ଓ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରାଯାଇ ପାରିଲେ ସେମାନେ ଅପରାଧ ଓ ଅପରାଧୀଙ୍କ ବିରୁଦ୍ଧରେ ସମୁଚିତ କାର୍ଯ୍ୟାନୁଷ୍ଠାନ କରିବାକୁ ସକ୍ଷମ ହୋଇ ପାରିବେ ବୋଲି ଶ୍ରୀ ଶର୍ମା ପରାମର୍ଶ ଦେଇଥିଲେ । ପରିତାପର ବିଷୟ ଯେ ଅନେକ କ୍ଷେତ୍ରରେ ପୋଲିସର କାର୍ଯ୍ୟଦକ୍ଷତା ଅହେତୁକ ରାଜନୈତିକ ଚାପର ସମ୍ମୁଖୀନ ହେବାଦ୍ୱାରା ବାଧାପ୍ରାପ୍ତ ହୋଇପଡୁଛି ବୋଲି ରାଜ୍ୟପାଳ କ୍ଷୋଭ ପ୍ରକାଶ କରିଥିଲେ । ରାଜନୈତିକ ଅସ୍ଥିରତା ମଧ୍ୟ ଅନେକ ସମୟରେ ପୋଲିସ୍ ବାହିନୀକୁ ସଫଳ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଆବଶ୍ୟକ ମାନସିକ ସଙ୍କଳ୍ପ ଓ ଦୃଢ଼ତାର ପ୍ରତିବନ୍ଧକ ହୋଇଥାଏ ବୋଲି ଶ୍ରୀ ଶର୍ମା ପ୍ରକାଶ କରିବା ସହିତ ସୁଯୋଗ୍ୟ ପୋଲିସ୍ ଅଧିକାରୀ ସୃଷ୍ଟି କରି ଭବିଷ୍ୟତ ଦାୟାଦଙ୍କୁ ସୁରକ୍ଷା ପ୍ରଦାନ କରିବାକୁ ଉପସ୍ଥିତ ପୋଲିସ ଉଚ୍ଚ ପଦାଧିକାରୀ ବୃନ୍ଦଙ୍କୁ ପରାମର୍ଶ ଦେଇଥିଲେ ।

ଓଡ଼ିଶା ପୋଲିସ୍ ବିଭାଗର ଡାଇରେକ୍ଟର ଜେନେରାଲ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ରଥ ଆଜିର ହିଂସାପୂର୍ଣ୍ଣ ବାତାବରଣରେ ସୁଦକ୍ଷ ପୋଲିସ୍ ବାହିନୀପାଇଁ ପ୍ରଶିକ୍ଷଣ ଓ ଅସ୍ତ୍ରଶସ୍ତ୍ରର ଅତ୍ୟାଧୁନୀକରଣ ଯେ ଅପରିହାର୍ଯ୍ୟ ଏହା ସୂଚାଇ ଦେଇ ଆର୍ଥିକ ସମ୍ବଳର ଅଭାବ କିପରି ଭାବେ ଏହି କାର୍ଯ୍ୟକ୍ରମକୁ ସଂକୁଚିତ କରି ଦେଉଛି ତାହା ପ୍ରକାଶ କରିଥିଲେ ।

ଏହି ଆଲୋଚନା ଚକ୍ରରେ ପ୍ରଶିକ୍ଷଣ, ସଂଯୋଜନା ଓ ରାଜ୍ୟ ପୋଲିସ୍ ଏକାଡ଼େମୀର ଅଧକ୍ଷ ତଥା ଅତିରିକ୍ତ ଡ଼ି:ଜି: ଶ୍ରୀ ଏସ୍:ଏଫ୍: ରସୁଲ, ମହାରାଷ୍ଟ୍ରର ଅତିରିକ୍ତ ଡ଼ି:ଜି: ତଥା ପ୍ରଶିକ୍ଷଣ ବିଶେଷ ଶାଖାର ଅଧକ୍ଷ ଶ୍ରୀ ଏସ୍:ଏମ୍: ପଠାଣିଆ, ସୀମାନ୍ତ ସୁରକ୍ଷା ବାହୀନୀ ଏକାଡ଼େମୀର ନିର୍ଦ୍ଦେଶକ ଶ୍ରୀ ଚମନ ଲାଲ, ପୋଲିସ୍ ଗବେଷଣା ଓ ଉନ୍ନୟନ ପ୍ରତିଷ୍ଠାନର ନିର୍ଦ୍ଦେଶକ ଶ୍ରୀ ଡି:ଏସ୍: ଅଗ୍ରୱାଲ ଏବଂ ଏହି ଅନୁଷ୍ଠାନର ସଚିବ ତଥା ଡ଼ି:ଆଇ:ଜି: ଶ୍ରୀ ବି:ଆର୍: ଦାଶ ଏହି ଉଦ୍‌ଘାଟନୀ ଉତ୍ସବରେ ଅଂଶ ଗ୍ରହଣ କରି ସେମାନଙ୍କର ସୁଚିନ୍ତିତ ପରାମର୍ଶ ଓ ମତାମତ ବ୍ୟକ୍ତ କରିଥିଲେ ।




**ଶ୍ରୀ କେଶବ ଭୋଇ (ଶିକ୍ଷକ),**
**ଗ୍ରାମ–ଭୋଇପାଲି, ପୋ: ଅ:–ବୁଢ଼ାପାଲି,**
**ଜିଲ୍ଲା–ବଲାଙ୍ଗୀର–୭୬୭୦୨୪ ।**

* ମୁଁ ଉତ୍କଳ ପ୍ରସଙ୍ଗର ଗ୍ରାହକ ଭାବରେ ଅନ୍ତର୍ଭୁକ୍ତ ହୋଇଛି । କିନ୍ତୁ ସଂଖ୍ୟାଗୁଡ଼ିକ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ପାଉନାହିଁ । ଗତ ମେ, ଜୁନ୍, ଜୁଲାଇ ସଂଖ୍ୟାଗୁଡ଼ିକ ଅଗଷ୍ଟ ପ୍ରଥମ ସପ୍ତାହରେ ପାଇଲି । ଯାହାଦ୍ୱାରା ନିୟମିତ ପଢ଼ିବାର ସୁଯୋଗ ମିଳୁନାହିଁ । ତେଣୁ ପ୍ରତି ସଂଖ୍ୟା ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ପଠାଇବାର ବ୍ୟବସ୍ଥା କରିବା ହେବେ । କୁପନଗୁଡ଼ିକ ପଛପଟେ ଖାଲିସ୍ଥାନ ରହିବା ଉଚିତ । ଠିକ୍ ତାରିଖ ପୂର୍ବରୁ ଉତ୍କଳ ପ୍ରସଙ୍ଗ ପାଇଲେ ମତାମତ ବା ପ୍ରଶ୍ନ ପଠାଇବାର ସୁଯୋଗ ପାଇବୁ ।

** ପତ୍ରିକା ପଠାଇବାରେ ବିଳମ୍ବ ପାଇଁ ଦୁଃଖ ପ୍ରକାଶ କରୁଛୁ ଏବଂ ଏହା ସୁଧାରିବା ପାଇଁ ପଦକ୍ଷେପ ନେଉଛୁ ।

**ଗଗନ ବିହାରୀ ସାହୁ,**
**ପାଇକରାପୁର, ପୋଷ୍ଟ–ଦୌଲତାବାଦ,**
**ଜିଲ୍ଲା–କଟକ–୭୫୪୦୨୬ ।**

* ଜୁନ୍ ୧୯୯୨ ସଂଖ୍ୟାରେ ଶ୍ରୀ ଉଦୟନାଥ ରଥଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ "ବାଳ ଅପରାଧର ପାରିବାରିକ ପ୍ରତିକାର" ପ୍ରବନ୍ଧଟି ଶିକ୍ଷଣୀୟ ହୋଇଛି । ଏହିଭଳି ପ୍ରବନ୍ଧ ମାଧ୍ୟମରେ ଶିକ୍ଷା ପ୍ରଦାନ କରାଗଲେ ବାଳ ଅପରାଧ ଭଳି ଅନେକ ସାମାଜିକ ବ୍ୟାଧି ଦୂର ହୋଇ ପାରିବ । ଏ କ୍ଷେତ୍ରରେ ଉତ୍କଳ ପ୍ରସଙ୍ଗ ତଥା ତାହାର ସମ୍ପାଦକ ଶ୍ରୀ ସତୀଶ ପାଢ଼ୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ବାଳ ଅପରାଧ ଦୂରୀକରଣରେ ପ୍ରାଥମିକ ଶିକ୍ଷକମାନଙ୍କ ଦାୟିତ୍ୱ ଶୀର୍ଷକ ପ୍ରବନ୍ଧ ଆହ୍ୱାନ କରାଯାଇ ଶ୍ରେଷ୍ଠ ପ୍ରବନ୍ଧ ନିର୍ବାଚନ କରି ପ୍ରକାଶ କଲେ ଭଲ ହୁଅନ୍ତା ।

** ଆପଣଙ୍କ ଅନୁରୋଧକୁ ଆଗାମୀ ଦିନରେ କାର୍ଯ୍ୟକାରୀ କରିବୁ ।

**ସଂଗ୍ରାମ କେଶରୀ ପୃଷ୍ଟି,**
**ମାର୍ଫତ୍–ପ୍ରଫୁଲ୍ଲ କୁମାର ପୃଷ୍ଟି,**
**ସା/ପୋ: ଅ:–ରାଜ କିଶୋର ନଗର,**
**(ହାଇସ୍କୁଲ କଲୋନୀ),**
**ଜିଲ୍ଲା–ଢେଙ୍କାନାଳ–୭୫୯୧୨୬ ।**

* ଉତ୍କଳ ପ୍ରସଙ୍ଗ ସ୍ୱାଧୀନତା ଦିବସ ବିଶେଷାଙ୍କଟି ପଢ଼ିଲି । ବହୁତ ଭଲ ଲାଗିଲା । ଏଥିରେ ଗୋଟିଏ ହେଲେ ବି କବିତା ସ୍ଥାନ ପାଇନି । ଭବିଷ୍ୟତରେ ଉତ୍କଳ ପ୍ରସଙ୍ଗର ପ୍ରତି ସଂଖ୍ୟାରେ କବିତା ପ୍ରକାଶ କରିବାକୁ ଅନୁରୋଧ । ଉତ୍କଳ ପ୍ରସଙ୍ଗ ପତ୍ରିକାରେ ଶିଶୁମାନଙ୍କ ପାଇଁ ଏକସ୍ୱତନ୍ତ୍ର ବିଭାଗ ଖୋଲିଲେ ବହୁତ ଭଲ ହୁଅନ୍ତା ।

** ଏ ସଂଖ୍ୟାରେ ଶିଶୁମାନଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ପ୍ରବନ୍ଧ ଅଛି । କବିତା ମଧ୍ୟ ଅଛି ।

**ସୌଭାଗ୍ୟରଞ୍ଜନ ଜେନା,**
**ଡି/୫୨–ପ୍ରୋଭିଡେଣ୍ଟ ଫଣ୍ଡ କଲୋନୀ (୨),**
**ଶହୀଦନଗର, ଭୁବନେଶ୍ୱର, ପୁରୀ ।**

* ଆପଣଙ୍କ ଦ୍ୱାରା ସମ୍ପାଦିତ ଅଗଷ୍ଟ '୯୨ ସଂଖ୍ୟାରେ ଶ୍ରୀ ବରଦା ପ୍ରସନ୍ନ ଦାସଙ୍କ ଲିଖିତ 'ରାଜ୍ୟ ସୂଚନା କେନ୍ଦ୍ର ଏକ ଦୃଷ୍ଟିପାତ' ପଢ଼ି ଯାହାହେଉ 'ସୂଚନା ଭବନ' ଉପରେ ସମ୍ୟକ୍ ସୂଚନା ପାଇଲି । ମୋ ତରଫରୁ ଶ୍ରୀ ବରଦା ପ୍ରସନ୍ନ ଦାସଙ୍କୁ ନିଜସ୍ୱ ଅଭିନନ୍ଦନ ଜଣାଇବେ ବୋଲି ଆଶା ।

** ଏହି ପତ୍ରିକା ମାଧ୍ୟମରେ ଶ୍ରୀ ବରଦା ପ୍ରସନ୍ନ ଦାସଙ୍କୁ ଆପଣଙ୍କ ଅଭିନନ୍ଦନ୍ ଜଣାଇଦେଉଛୁ ।

**ଜ୍ୟୋତି ପ୍ରକାଶ ସାହୁ,**
**କ୍ୱାର୍ଟର ନଂ–୯୧, ପୋଷ୍ଟାଲ୍ କଲୋନୀ,**
**ୟୁନିଟ–୪, ଭୁବନେଶ୍ୱର, ପୁରୀ ।**

* ଅଗଷ୍ଟ ମାସରେ ପ୍ରକାଶିତ ସ୍ୱାଧୀନତା ଦିବସ ବିଶେଷାଙ୍କଟି ଖୁବ୍ ଉଚ୍ଚକୋଟୀର । ବିଶେଷ କରି ଶରତ କରଙ୍କ ଲିଖିତ "ଆମେ ଓଡ଼ିଆ" ଏବଂ ଦଣ୍ଡପାଣି ବେହେରାଙ୍କ "ସ୍ୱାଧୀନତା ସଂଗ୍ରାମୀ ଚକରା ବିଶୋୟୀ" ପ୍ରବନ୍ଧ ଅତ୍ୟନ୍ତ ଶିକ୍ଷଣୀୟ ଓ ମନୋଗ୍ରାହକର । ଉତ୍କଳ ପ୍ରସଙ୍ଗ ମାଧ୍ୟମରେ ଆପଣ ଯଦି ଓଡ଼ିଶାର ଖ୍ୟାତିସମ୍ପନ୍ନ କ୍ରୀଡ଼ାବିତ୍, କଳାକାର ଆଦିଙ୍କ ସାକ୍ଷାତକାର ପ୍ରକାଶିତ କରାନ୍ତେ ତେବେ ଏହି ପତ୍ରିକା ଆହୁରି ଲୋକପ୍ରିୟ ଏବଂ ଗ୍ରହଣୀୟ ହୋଇ ପାରନ୍ତା । ଓଡ଼ିଶାର ଫିଲ୍ମ ଶିଳ୍ପ ଉପରେ ଲେଖା ପ୍ରକାଶିତ କରିବାକୁ ଅନୁରୋଧ ।

** ମତାମତ ପାଇଁ ଧନ୍ୟବାଦ । ଉକ୍ତବିଷ ବିଭାଗ ପାଇଁ ସ୍ୱତନ୍ତ୍ର ପୃଷ୍ଠା କରାଗଲେ ଆପଣଙ୍କ ଅନୁରୋଧକୁ କାର୍ଯ୍ୟକାରୀ କରିବୁ ।

## ପ୍ରଶ୍ନ କର୍ତ୍ତାଙ୍କ ପାଇଁ କୁପନ

------------------ CUT HERE ------------------

**ପ୍ରଶ୍ନ କର୍ତ୍ତାଙ୍କ ଠିକଣା**

ନାମ ..................................

ଗ୍ରାମ ..................................

ପୋଷ୍ଟ ..................................

ଜିଲ୍ଲା .................. ପିନ୍ ..................

କେବଳ ୩୧/୧୨/୧୯୯୨ ପୂର୍ବରୁ ବ୍ୟବହାର ପାଇଁ

**ମତାମତ ବା ପ୍ରଶ୍ନ**

..................................................................

..................................................................

..................................................................

..................................................................

..................................................................

..................................................................

..................................................................

..................................................................

..................................................................

..................................................................

..................................................................

..................................................................

ସ୍ୱାକ୍ଷର



–MP–PTS (I&PR) 44–10,000–30-10-1992

